ଶିକ୍ଷକ-ଶିକ୍ଷାବିତ୍

# ଇନ୍ଦୁଭୂଷଣ ମିଶ୍ର

ଆତ୍ମଜୀବନୀ ଓ ଅନ୍ୟାନ୍ୟ ଆଲେଖ୍ୟ




# ଶିକ୍ଷକ-ଶିକ୍ଷାବିତ୍
# ଇନ୍ଦୁଭୂଷଣ ମିଶ୍ର

(ଆତ୍ମଜୀବନୀ ଓ ଅନ୍ୟାନ୍ୟ ଆଲେଖ୍ୟ)

ସଂପାଦନା

ମନ୍ମଥ କୁଣ୍ଡୁ

ସହଯୋଗୀ

କମଳା ମିଶ୍ର  ବିଭୂତି ମିଶ୍ର

ବିଜୟ ଉପାଧ୍ୟାୟ  ରଘୁନାଥ ପୂଜାରୀ



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ

ବାଲେଶ୍ୱର

# ଶିକ୍ଷକ-ଶିକ୍ଷାବିତ୍
# ଇନ୍ଦୁଭୂଷଣ ମିଶ୍ର
(ଆତ୍ମଜୀବନୀ ଓ ଅନ୍ୟାନ୍ୟ ଆଲେଖ୍ୟ)

ସଂପାଦନା
ମନ୍ମଥ କୁଣ୍ଡୁ

ସହଯୋଗୀ
କମଳା ମିଶ୍ର
ବିଭୂତି ମିଶ୍ର
ବିଜୟ ଉପାଧ୍ୟାୟ
ରଘୁନାଥ ପୂଜାରୀ

ପ୍ରକାଶକ
କାଳୀପଦ ପଣ୍ଡା
ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ଶ୍ରୀକଣ୍ଠପୁର, ବାଲେଶ୍ୱର
ମୋ.: ୯୪୩୭୦୮୯୨୪୧

ପ୍ରଚ୍ଛଦ
ବିଜୟ କୁମାର ପ୍ରଧାନ

ପ୍ରକାଶ କାଳ
୧୨ ଅକ୍ଟୋବର-୨୦୧୩

ମୂଲ୍ୟ
ଟ. ୨୦୦/-

**SHIKHYAKA-SHIKHYABIT**
**INDUBHUSAN MISHRA**
**(Autobiography & other Writings)**

*Edited by*
Manmatha Kundu

*Associate Editors*
Kamala Mishra
Bibhuti Mishra
Bijay Upadhya
Raghunath Pujari

*Publisher*
Kalipada Panda
Subarnashree Prakashini
Shreekanthapur, Balasore, Odisha
Mob.: 9437089241

*Cover Design*
Bijay Kumar Pradhan

*First Edition*
12th October - 2013

*Price*
Rs. 200/-

# ପ୍ରସ୍ତୁତି ବେଳର....

କାହିଁକି କେଜାଣି ଓଡ଼ିଶାର ଶିକ୍ଷା ଏବଂ ଶିକ୍ଷା ସଂପର୍କିତ କ୍ଷେତ୍ରରେ ଯେଉଁମାନେ ପିତାମହ ଭୀଷ୍ମ ସାଦୃଶ୍ୟ ସେମାନଙ୍କ ସହ ମୋର ବ୍ୟକ୍ତିଗତ ପରିଚୟ ହୋଇଛି ବେଶ୍ ଡେରିରେ । ସେମାନଙ୍କର ସେତେବେଳେ ଜୀବନର ଶେଷ ପର୍ଯ୍ୟାୟ - ଶେଷ ଦଶବର୍ଷ । ଯାହା ହୋଇଥିଲା ଚିତ୍ତଭାଇ (ଚିତ୍ତରଂଜନ ଦାସ)ଙ୍କ କ୍ଷେତ୍ରରେ ଠିକ୍ ସେଇଆ ହୋଇଥିଲା ଇନ୍ଦୁସାର୍ (ଇନ୍ଦୁଭୂଷଣ ମିଶ୍ର)ଙ୍କ ସହ । ଇନ୍ଦୁସାର୍‌ଙ୍କ ସହ ମୋର ସାକ୍ଷାତ ହୁଏ ୧୯୯୦ ବେଳକୁ ପୂଜାରୀବାବୁଙ୍କ ମାଧ୍ୟମରେ । ସେତେବେଳେ ତାଙ୍କର ବାହାର କେଉଁ ପ୍ରୋଗ୍ରାମ୍‌କୁ ଯିବାଉପରେ ଅଙ୍କୁଶ ଲାଗି ସାରିଥାଏ । Writer's Cramp ରୋଗରେ ତାଙ୍କ ହାତଥରିବା ଆରମ୍ଭ ହୋଇ ସାରିଥାଏ । କେବଳ କଥାରେ କଥାରେ ଯିଏ ତାଙ୍କ ପାଖକୁ ଯାଉଥାଏ ତାଙ୍କୁ କହୁଥାଆନ୍ତି ଆମ ରାଜ୍ୟର ଶିକ୍ଷା ଏବଂ ସମାଜର ପରିବର୍ତ୍ତନ ଆଣିବାପାଇଁ । ଯିଏ ତାଙ୍କ ପାଖକୁ ଯିବ ନିଶ୍ଚିତଭାବେ ରିଚ୍ଚର୍ଜ ହୋଇ ଆସିବ ରାଜ୍ୟର ଉନ୍ନତିପାଇଁ କିଛି କରିବାକୁ । ମୁଁ ସେତେବେଳେ ସେ ଯେଉଁ ପ୍ରକାରର କାମକରିବା ପାଇଁ ଚାହିଁଥିଲେ ସେପ୍ରକାର କାମରେ ବ୍ୟସ୍ତ ଥାଏଁ । ତେଣୁ ମଝିରେ ମଝିରେ ହତାଶ ହୋଇପଡ଼ିଲେ ତାଙ୍କ ପାଖକୁ ଯାଉଥାଏ ନିଜକୁ ରିଚ୍ଚର୍ଜ କରିବା ପାଇଁ । ସେଇ ସମୟରେ ସାତ କି ଆଠ ବର୍ଷ ମୋ ପାଇଁ କାମ କରିବାର ବ୍ୟସ୍ତବହୁଳ ବର୍ଷ । ତିନିବର୍ଷ ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀର ନିର୍ଦ୍ଦେଶକ ଏବଂ ତା ପରେପରେ ଚାରିବର୍ଷ ସମସ୍ୟା ବହୁଳ ରାଜଧାନୀ କଲେଜର ଅଧ୍ୟକ୍ଷ । ସେ ସମୟରେ ମୋର କାମ ଆରମ୍ଭ ହୁଏ ସକାଳ ସାତ କି ଆଠ । ଶେଷହେଲା ବେଳକୁ ରାତି ଆଠ । ପୁଣି ରାତିରେ ଚିନ୍ତା, ପରଦିନ କ'ଣ କ'ଣ କରାଯିବ । ରବିବାରରେ ବି ଛୁଟି ନଥାଏ । ତେଣୁ ସମୟ ପାଇ ନଥିଲି ତାଙ୍କ ପାଖକୁ ଯିବାପାଇଁ ।

ହଠାତ୍ ଦିନେ ସମ୍ବଲପୁରରୁ ପୂଜାରୀବାବୁଙ୍କ ଠାରୁ ଫୋନ୍ ପାଇଲି "ଇନ୍ଦୁସାର୍ ଖରାପ ହୋଇଗଲେ ।" 'ଖରାପ'ର ଅର୍ଥ ବୁଝିବାପାଇଁ ମୋତେ ଟିକିଏ ସମୟ ଲାଗିଲା । ଦୌଡ଼ିଲି ତାଙ୍କଘରକୁ ମୋ ସ୍ତ୍ରୀକୁ ସାଥୀରେ ଧରି ଶେଷଦର୍ଶନ ପାଇଁ । ଘର ତାଙ୍କର ଲୋକାରଣ୍ୟ । ତାଙ୍କ ଘର ଆଗ ରାସ୍ତାରେ ସୋରିଷଟେ ପକାଇବାର ସ୍ଥାନ ନଥାଏ । କେତେ ବଡ଼ବଡ଼ ଲୋକଙ୍କ ଭିଡ଼ । ତାଙ୍କ ମରଶରୀର ଉପରେ ଫୁଲ କିଛି ପକାଇ ଆମେ ଦୁହେଁ ଘରକୁ ଫେରିଲୁ । ଫେରିଲାବେଳେ ପଚାରି ବୁଝି ଆସିଲି କେଉଁଠି କେତେବେଳେ

ଶବସତ୍କାର ହେବ । ସତ୍ୟନଗର ଶ୍ମଶାନରେ ନିରବରେ ବସିରହିଲି ଶବସତ୍କାରର ଶେଷପର୍ଯ୍ୟନ୍ତ । ଫେରିଲାବେଳକୁ ଅନ୍ଧାର । ଘରକୁ ନଯାଇ ସିଧାଗଲି ଟଙ୍କପାଣି ରୋଡ଼ ଶିରିଡ଼ିସାଇ ମନ୍ଦିର ପାଖରେ ଥିବା ମୋ ବଗିଚାକୁ । ତାଙ୍କ ନାମରେ, ବାଡ଼ିରେ ପୂର୍ବରୁ ଥିବା, ନଡ଼ିଆ ଗଛଟେ ଲଗାଇ ଗାଧୁଆ ପାଧୁଆ ହୋଇ ଘରକୁ ଫେରିଲି । ତାଙ୍କ ମୃତ୍ୟୁର ବର୍ଷଥିଲା ମୋ ଅବସର ନେବାର ବର୍ଷ । ଆଉ ବର୍ଷଟେ ସେ ବଞ୍ଚିଥାଆନ୍ତେ କି ?

ଇନ୍ଦୁସାର୍‌ଙ୍କ ମୃତ୍ୟୁର ପ୍ରଥମ ବାର୍ଷିକୀ ବେଳକୁ ସ୍ମରଣିକାଟେ ବାହାରିଲା । ମୁଁ ସେତେବେଳକୁ ଥାଏ ୟେମେନ୍‌ରେ । ଲେଖାଟେ ଲେଖିପାରିଲି ନା ସେ ଫଙ୍କସନ୍‌ରେ ଯୋଗଦେଇ ପାରିଲି । ତାଙ୍କ ସହ ଯେ ସାତଆଠ ବର୍ଷ ଦେଖା କରିପାରି ନଥିଲି ଏବଂ ତାଙ୍କ ସ୍ମରଣିକା ପାଇଁ ଲେଖାଟେ ଲେଖି ନଥିଲି ସେସବୁ ବାକିକାମ ମୋ ଉପରେ ଥାଇ ଚକ୍ରବୃଦ୍ଧି ସୁଧ ଆକାରରେ ବଢୁଥାଏ । ତାର ପ୍ରାୟଶ୍ଚିତ୍ତ ହିସାବରେ ମୋ ପାଖକୁ ଆସିଲା ତାଙ୍କ ଜୀବନୀ ଲେଖା କାମ ।

ଦିନେ ପୂଜାରୀବାବୁ ଇନ୍ଦୁସାର୍‌ଙ୍କ ପୁଅ ବିଭୁତିବାବୁଙ୍କ ସହ ଡି.ଟି.ପି. ହୋଇଥିବା ଜୀବନୀ ଧରି ମୋ ପାଖରେ ପହଞ୍ଚିଲେ । ବହିଟିକୁ ଦେଖି ସଜାଡ଼ି ଦେବାକୁ । ବଳିଷ୍ଠ ବିଷୟବସ୍ତୁ, ନିହାତି ଅସଜଡ଼ା ଅବସ୍ଥାରେ । ସେତେବେଳେ ମାଲ୍‌କାନ୍‌ଗିରିରେ ଆଦିବାସୀ ଓ ଦଳିତ ଛାତ୍ରଛାତ୍ରୀମାନଙ୍କ ପାଇଁ ଆମର ସ୍କୁଲ ମୋର ସବୁ ସମୟତକ ନେଇ ଯାଉଥାଏ । ସେଇ ଇନ୍ଦୁସାର୍ ଛାଡ଼ିଦେଇ ଯାଇଥିବା ଗରିବ ପିଲାଙ୍କ ପାଇଁ କାମ । ସେ ସଦାବେଳେ ଚାହୁଁଥିଲେ ସେମିତିକା କାମସବୁ ହେଉ । ଆଉ ସେଇସବୁ କାମ ଜୋରଦାର୍ କରିବାପାଇଁ ଆବଶ୍ୟକ ତାଙ୍କର ଏଇ ଜୀବନୀ । ତାଙ୍କ ଅବର୍ତ୍ତମାନରେ ଆମ୍ଭମାନଙ୍କୁ ରିଚାର୍ଜ କରିବାପାଇଁ କାମଟି ହାତକୁ ନେଲି । କିନ୍ତୁ ସେମିତି ପଡ଼ିରହିଲା ତିନି କି ଚାରିମାସ ।

ଆଉ ଦିନେ ଘରେ ପହଞ୍ଚିଲେ ପୁଣି ସେଇ ଦୁଇଜଣ । “ଅକ୍ଟୋବର ଦଶତାରିଖ ଆଡ଼କୁ ହେବ ତାଙ୍କ ମୃତ୍ୟୁବାର୍ଷିକୀ । ବହିଟି ସେତେବେଳକୁ ହେବା ଦରକାର ।” ବିଭୁତିବାବୁ ଯୋଗକଲେ “ମାଆଙ୍କ ଦେହ ଭଲ ରହୁନି । ସେ ଚାହୁଁଛନ୍ତି ବାପାଙ୍କ ମୃତ୍ୟୁବାର୍ଷିକୀ ବେଳକୁ ବାପାଙ୍କ ଜୀବନୀଟି ହେବାପାଇଁ ।” ଆଉ ଡେରିକରି ହେବନି । ହାତରେ ସମୟ କେବଳ ମାସଟେ । ବହିଟି ଭିତରେ ଯେତିକି ଯେତିକି ପ୍ରବେଶକଲି ସେତିକି ସେତିକି ଅଛିଡ଼ା ଖିଅ । ଚାରି କି ପାଞ୍ଚବର୍ଷ ଧରି ଇନ୍ଦୁସାର୍ ତାଙ୍କ ଜୀବନୀ ଡକାଇଛନ୍ତି ପୂଜାରୀବାବୁଙ୍କୁ । ସେ ପୁଣି ବର୍ଷକୁ ମାତ୍ର ଦୁଇ କି ତିନିଥର ଲେଖାଯାଏ । ଯେତେବେଳେ ପୂଜାରୀବାବୁ କିଛି କାମରେ ଭୁବନେଶ୍ୱର ଆସି ରୁହନ୍ତି ଇନ୍ଦୁସାର୍‌ଙ୍କ ଘରେ ।

ଜଣଙ୍କ ଦ୍ୱାରା ଏତେ ଅଳ୍ପ ସମୟ ମଧ୍ୟରେ ଏ କାମ ସମ୍ଭବ ନୁହେଁ । ତେଣୁ ବିଜୟବାବୁଙ୍କୁ ଡକାଇଲି ମାଲ୍‌କାନ୍‌ଗିରିରୁ । ଦୁଇଜଣ ମିଶିଲୁ ବାଲେଶ୍ୱରର ସୁବର୍ଣ୍ଣଶ୍ରୀ

ପ୍ରକାଶିନୀର ଯୁବ ପ୍ରକାଶକ କାଳୀପଦ ସହ । ଋଦ୍ଧଦ୍ୱାର ବୈଠକରେ କାମହେବ କାଳୀପଦର ଅଫିସ୍ ଘରେ । ତିନିଜଣ ତିନିଦିନ ଧରି ବାହାର ଚନ୍ଦ୍ର ସୂର୍ଯ୍ୟ ନଦେଖି ଋଦ୍ଧ ଘରେ ବସି ବହିଟି ଦେଖିଲା ପରେ ଆବଂଶ୍ୟକ ପଡ଼ିଲା ପୂଜାରୀବାବୁଙ୍କର । ବେଶ୍ କିଛି ଜିନିଷ ଅବୁଝା ରହୁଛି । We should hear from the horse's mouth. ଦିନ ଦୁଇଟାରେ ଫୋନ୍‌କଲି ପୂଜାରୀବାବୁଙ୍କୁ ସମ୍ବଲପୁରରୁ ବାଲେଶ୍ୱର ଆସିବାପାଇଁ । ଦୋଷୀ ଦୋଷୀ ଲାଗୁଥାଏ । ତାଙ୍କର ଅଠସ୍ତରୀ ବର୍ଷ । ଚାଲିବାକୁ ହେଲେ ଆବଶ୍ୟକ ପଡୁଛି ବାଡ଼ିର । ଘଣ୍ଟାଏ ପରେ ଫୋନ୍‌କଲେ 'ସାର୍ ଟିକେଟ୍ ହୋଇଗଲା । ରାତି ସାତଟା ବସ୍‌ରେ ଯାଇ ସକାଳ ଚାରିଟାରେ ବାଲେଶ୍ୱର ପହଞ୍ଚିବି ।' ସକାଳ ପାଞ୍ଚଟାରେ ଯାଇ ତାଙ୍କୁ ବସ୍‌ଷ୍ଟାଣ୍ଡରୁ ଆଣିଲି । ପୁଣି ଚାରିଜଣିଆ ଋଦ୍ଧଦ୍ୱାର ବୈଠକ ସକାଳ ଛ'ଟାରୁ ଦିନ ବାରଟା ପର୍ଯ୍ୟନ୍ତ । ଅଛିଡ଼ା ଖିଅ ଛିଡ଼ିଲାପରି ଲାଗିଲା । ଖିଆପିଆ ସାରି ପୂଜାରୀବାବୁ ଟ୍ୟାକ୍‌ସିଟି କରି କ୍ଷୀରଚୋରା ଗୋପୀନାଥ ଏବଂ ଚାନ୍ଦିପୁର ଗଲେ । "ବାଲେଶ୍ୱର କେବେ ଆସି ନଥିଲି କି ଆସି ନଥାନ୍ତି । ଇନ୍ଦୁସାର୍ ମୋତେ ଅଣାଇଲେ ।" ସେହିଦିନ ରାତିରେ ସେ ଫେରିଗେଲ ସମ୍ବଲପୁର । ଆଉ ଦୁଇ କି ତିନିଦିନ କାମକଲା ପରେ ଆଉ ଧୈର୍ଯ୍ୟ ରହିଲାନି କାମ କରିବାକୁ । ଭୁବନେଶ୍ୱର ଫେରିଲି ମୋ ଘର ଏବଂ ବଗିଚାରେ ଥିବା ଜୀବଜନ୍ତୁ ପାଖକୁ ରିଚାର୍ଜ ହେବାପାଇଁ । ତିନି ଚାରିଦିନ ପରେ ପୁଣି ବ୍ୟାକ୍ ବାଲେଶ୍ୱର । ସେତେବେଳକୁ କେବଳ ଆମେ ଦୁଇଜଣ । ବିଜୟ ଫେରିଯାଇଥାଏ ମାଲ୍‌କାନ୍‌ଗିରି ।

ଲେଖା ଏବଂ ଲେଖାର କ୍ରମରେ ଆହୁରି ଅଡୁଆତଡୁଆ । ପ୍ରତ୍ୟେକ ଚ୍ୟାପ୍‌ଟର୍‌ରେ ହେଡିଂ, ସବ୍‌ହେଡିଂ ଏବଂ ସବ୍‌ସବ୍ ହେଡିଂର ଶୀର୍ଷକର ଆବଶ୍ୟକ । ତାହାହିଁ ଥିଲା ମୋ ପାଇଁ ସବୁଠାରୁ କଷ୍ଟକାମ । ଠିକ୍ ଗୋଟିଏ ଡକ୍ଟରେଟ୍ ଥେସିସ୍‌ଟେ ଲେଖିଲା ପରି । ସମସ୍ତଙ୍କୁ ବ୍ୟସ୍ତହୋଇ ଫୋନ୍ କରୁଥାଏ । ମାତ୍ର କାମଟି କେବଳ ମୋ ଦ୍ୱାରା ହିଁ ସମ୍ଭବ । ଜୀବନକାଳରେ ପନ୍ଦର କୋଡ଼ିଏଟି ଡକ୍ଟରେଟ୍ କାମ ଗାଇଡ୍ କରିଥିବାର ଅନୁଭୂତି ସବୁ ପ୍ରୟୋଗକରି ଦୁଇ ତିନିଦିନରେ ସେସବୁ ଅଡୁଆ ସୂତାଖିଅ ସଜାଡ଼ିଲି । କଷ୍ଟ ହେଉଥାଏ । ଆନନ୍ଦ ବି ମିଳୁଥାଏ । ସେସବୁ ଦିନଯାକ ଇନ୍ଦୁସାର୍ ସବାର ହୋଇଥାନ୍ତି ମୋ ଉପରେ । ସଦାବେଳେ ତାଙ୍କ ସହ କଥାବାର୍ତ୍ତା ହେଲାପରି ଲାଗୁଥାଏ । ତାଙ୍କ ଢକାଇଥିବା ଜୀବନର ଘଟଣାଗୁଡ଼ିକ ତାଙ୍କ ମୁହଁରୁ ଶୁଣିଲା ପରି ଲାଗୁଥାଏ । ସେଇ କେତୋଟି ଦିନ ମୁଁ ତାଙ୍କ ସହ ଥିଲି, ଆଉ ଗୋଟିଏ ରାଜ୍ୟରେ । ସେଇଥିରେ ଥିଲା ଆନନ୍ଦ ।

ଗଲା ଚାରିବର୍ଷ ମୋ ପାଇଁ ଥିଲା ବହିପତ୍ର ପ୍ରକାଶ କରିବା ଦୃଷ୍ଟିରୁ ମରୁଡ଼ିର ବର୍ଷ । ପ୍ରତ୍ୟେକ ନବବର୍ଷ ଦିନ ଲେଖାହୁଏ ଡାଏରୀରେ ତିନିଚାରି ବହି ପ୍ରକାଶ ପାଇଁ । ଗୋଟିଏ ବି ହୋଇ ପାରେନି । ସେମିତି କଟିଗଲା ଚାରିଚାରି ବର୍ଷ । ଶେଷରେ ଆସିଲା

ଇନ୍ଦୁସାର୍‌ଙ୍କ ଜୀବନୀ କାମ । ସେ କାମପାଇଁ ବାଲେଶ୍ୱର ଆସିଲାବେଳେ ମୋ ବ୍ୟାଗ୍‌ରେ ମାନକୁ ମନ ଚାଲିଆସିଲା ଭଳି ଆସିଗଲା ମୋର ଦଶ କି ପନ୍ଦରବର୍ଷ ତଳେ ଡି.ଟି.ପି. ହୋଇ ପଡ଼ି ରହିଥିବା ବହିଟେ । ଇନ୍ଦୁସାର୍‌ଙ୍କ ବହିଟି ସଜାଡୁ ସଜାଡୁ ନୂଆକରି ଡି.ଟି.ପି. ହୋଇଗଲା ସେ ବହି । ଏବେ ସାର୍‌ଙ୍କ ବହି ପରେପରେ ତାହା ପ୍ରକାଶପାଇଁ ପ୍ରସ୍ତୁତ । ଏତିକିବେଳେ ମୋର ପୁରୁଣା ପ୍ରକାଶକ, ଚାରିବର୍ଷର ବ୍ୟବଧାନ ପରେ, ଫୋନ୍‌କଲେ "ସାର୍ କିଛି ବହିଥିଲେ ଦିଅନ୍ତୁ" । ଇନ୍ଦୁସାର୍‌ଙ୍କ ବହି ହେଉହେଉ ମୋ ବହିମାନଙ୍କ ପାଇଁ ବାଟ ଖୋଲିଯାଉଛି । ଯେମିତି ସାର୍‌ଙ୍କର ସେ ବହିଟି କହୁଛି "ମୋତେ ଆଗ ସାର । ତାପରେ ତୁମକାମ ଆପେଆପେ ହେବ ।" ମୋର ଦୃଢ଼ ଅନୁଭବ । ଏବେ ମୋ ବହିମାନଙ୍କର ପ୍ରକାଶ ପାଇଁ ବାଟ ଖୋଲିଗଲା ।

ଆମେ ତିନିଜଣ ସେଇ ରୁଦ୍ଧଦ୍ୱାର ବୈଠକରେ ନିଷ୍ପତ୍ତି ନେଇଥିଲୁ ବହିଟିର ବିଷୟବସ୍ତୁ ସଂପର୍କରେ । କେବଳ ତାଙ୍କ ଜୀବନୀ ନା ତା ସହିତ ଆଉ କିଛି । ଜୀବନୀଟି ବେଶ୍ ଶକ୍ତିଶାଳୀ ମାତ୍ର ଛୋଟ । ଏତେବଡ଼ ଲୋକ, ଏତେ ବେଶି କାମ କରିଥିବା ଲୋକଙ୍କ ଜୀବନୀ ଏତେ ଛୋଟ ହେବାର କାରଣ କ'ଣ ? ନିଜେ ନଲେଖି ପାରୁଥିବା ହେତୁ ନା ଆଉ କ'ଣ ? ସତରେ ଜଣେ ସାଧାସିଧା, ସତ କହୁଥିବା, ଆତ୍ମପ୍ରଚାର ବିମୁଖ ଲୋକର ଆତ୍ମଜୀବନୀ ଛୋଟ ହେବାକୁ ବାଧ୍ୟ । ଆଉ ସେସବୁ ଲୋକମାନଙ୍କର ଆତ୍ମଜୀବନୀ ସହ ଜୀବନୀ (ଅନ୍ୟମାନଙ୍କ ଦ୍ୱାରା) ଲେଖାଯିବାର ଆବଶ୍ୟକ ଥାଏ । ଜୀବନୀଟି ଆତ୍ମ ଜୀବନୀର ପରିପୂରକ ଭଳି କାମ କରେ । ଇନ୍ଦୁସାର୍‌ଙ୍କ କ୍ଷେତ୍ରରେ ତାହାହିଁ ଥିଲା ଆମ୍ଭମାନଙ୍କର ଅନୁଭବ । ଇନ୍ଦୁସାର୍‌ଙ୍କ ପାଇଁ ଉଦ୍ଦିଷ୍ଟ ସ୍ମରଣିକାଟିରେ ଲେଖାଗୁଡ଼ିକ ତାଙ୍କ ଆତ୍ମଜୀବନୀର ପରିପୂରକ ହିସାବରେ ଭୂମିକା ଥାଏ ଗୁରୁତ୍ୱପୂର୍ଣ୍ଣ । ତେଣୁ ସେସବୁକୁ ତାଙ୍କ ଜୀବନୀ ସହ ଯୋଗ କରିବାର ଆବଶ୍ୟକ ପଡ଼ିଲା । ଏଠାରେ ଇନ୍ଦୁସାର୍‌ଙ୍କ ଉପରେ ସାରଦାବାବୁଙ୍କ ଲେଖାଟିର ଉଦାହରଣ ନିଆଯାଉ । ସାରଦା ସାର୍‌ଙ୍କ ଘର ପୋଡ଼ି ଯାଇଥାଏ । ତା' ସହିତ ତାଙ୍କର ବହି ଏବଂ ଆସବାବପତ୍ର । ଇନ୍ଦୁସାର୍ ଦିନେ ତାଙ୍କୁ ଘରକୁ ଡାକି ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ ତାଙ୍କୁ ଦେଇଥିବା ମଠାକନାଟି ସାରଦା ବାବୁଙ୍କୁ ଦେଇ କହିଲେ, "ସାରଦାବାବୁ ମୁଁ ଜାଣେ ଘରପୋଡ଼ି ଠାରୁ ବିପତ୍ତି ନାହିଁ । ଏଇ ମଠାକନାଟିକୁ ମୋତେ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ ଦେଇଥିଲେ । ଏଇଟିକୁ ମୁଁ ଆପଣଙ୍କୁ ଉପହାର ଦେଉଛି । ଏଥିରେ ଗୋଟିଏ କୁରୁତା କରି ପିନ୍ଧିବେ ।"

ଏ କଥାଟି କ'ଣ ଇନ୍ଦୁସାର୍ ତାଙ୍କ ଆତ୍ମଜୀବନୀରେ ଲେଖିପାରିବେ ? ନାଁ ଏକଥାଟି ତାଙ୍କ ସମ୍ବନ୍ଧରେ ଲେଖାଟିରେ ନିହାତି ଲେଖାଯିବା ଦରକାର । ସେଥିପାଇଁ

ଭଲ ଲୋକମାନଙ୍କର autobiography ସହ ଲେଖାଯିବାର ଆବଶ୍ୟକ ଅଛି ସେମାନଙ୍କ biography. One complements the other.

ତାପରେ ଭାବିଲୁ ତାଙ୍କ ଲେଖା ବହିପତ୍ର ମଧ୍ୟ ବହିଟିରେ ସାମିଲ୍ କରିବୁ । ଖୋଳତାଡ଼ କରିବାରୁ କେତେ କ'ଣ ଲେଖା । କିଛି ଅଛି, କିଛି ନାହିଁ । ଭାବିଲୁ ପରେ ତାଙ୍କର ଗୋଟିଏ ଗ୍ରନ୍ଥାବଳୀଟେ କରିବୁ । ମୋର ସନ୍ଦେହ ହେଲା ମୁଁ ସେତେବେଳକୁ ଥିବି କି ନାହିଁ । ବା ଯଦି ଥିବି କେଉଁ ଅବସ୍ଥାରେ ଥିବି । ତେଣୁ ନିଷ୍ପତ୍ତି ନେଲୁ କିଛି ବହିମାନଙ୍କର କିଛି ଅଂଶ ଦେବୁ । ଇନ୍ଦୁସାରଙ୍କ ଆତ୍ମଜୀବନୀ ବ୍ୟତୀତ ମୋ ପାଖରେ ତାଙ୍କର ଚାରିପାଞ୍ଚଟି ବେଶ୍ ବଡ଼ବଡ଼ ଲେଖାଥାଏ । ସେସବୁକୁ କେଉଁଠି ସ୍ଥାନିତ କରିବୁ ? ସେସବୁକୁ ସେ ତାଙ୍କ ଜୀବନର ଶେଷଆଡ଼କୁ ଲେଖିଛନ୍ତି । ତାଙ୍କ ଆତ୍ମଜୀବନୀରେ ଯୋଡ଼ିବା ସମ୍ଭବ ନୁହେଁ । ସେଇଥିପାଇଁ ବହିଟିର ଆଉ ଗୋଟିଏ ଚ୍ୟାପ୍‌ଟାର ଯୋଗ କରିବାର ଆବଶ୍ୟକ ପଡ଼ିଲା । ଯାହାର ଶୀର୍ଷକ ହେବ 'ଜୀବନ ଓ ଶିକ୍ଷା ଦର୍ଶନ' ।

ବହିଟିର କଳେବର ବଢ଼ି ଯାଉଥାଏ । ତା ସହ ପ୍ରକାଶନ ଖର୍ଚ୍ଚର ଆକଳନ । ମନରେ ପ୍ରଶ୍ନ ଉଠୁଥାଏ, ବହିଟି କିଏ ପଢ଼ିବ ? କାହିଁକି ପଢ଼ିବ ? ପଢ଼ିବା ଦ୍ୱାରା ପାଠକର କି ଉପକାରରେ ଆସିବ ? ବହିଟିର ପ୍ରଚାର ଓ ପ୍ରସାର ଆମେ କେଉଁ ଉପାୟରେ କରିପାରିବା ? ଇତ୍ୟାଦି ଇତ୍ୟାଦି ।

ଶିକ୍ଷା ଆଜି ବିପଥଗାମୀ । ଯେଉଁମାନେ ପାଠର 'ପ' ଅକ୍ଷର ଜାଣିନାହାଁନ୍ତି ସେମାନେ ହେଇଛନ୍ତି ଶିକ୍ଷାବିତ୍ । ଶିକ୍ଷା ହୋଇଛି ଏକ ବଡ଼ ବ୍ୟବସାୟ । ସେଇ ଶିକ୍ଷା ବ୍ୟବସାୟୀମାନଙ୍କୁ ସରକାର ଲୋଡ଼ୁଛନ୍ତି ଦେଶର ଶିକ୍ଷାଯୋଜନା କରିବାକୁ । ଇନ୍ଦୁସାର୍ ଯେଉଁ ଶିକ୍ଷାକଥା କହୁଥିଲେ ସେ ଶିକ୍ଷା ସାହାଯ୍ୟ କରୁନି ଶିକ୍ଷା ବ୍ୟବସାୟୀ କରଣରେ । ଆମେ ଯେଉଁମାନେ ଚିତ୍ତଭାଇ ଓ ଇନ୍ଦୁସାରଙ୍କ ଚେଲା ସେମାନଙ୍କର ଶିକ୍ଷା ଚଳାଇଛୁ ଯାଇ ମାଲ୍‌କାନ୍‌ଗିରିରେ । ପିଲା ପାଠ ନିଜେ ପଢ଼ିବେ । ଖୁସିରେ ପଢ଼ିବେ । ପାଠବହି ବ୍ୟତୀତ ଅନ୍ୟ ବହି ପଢ଼ିବେ । ତଳ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କର ଦକ୍ଷତା ଥିବ ଉପରଶ୍ରେଣୀର । ଦରକାର ନଥିବ 'ସହଜ' remediation କ୍ଲାସ୍‌ର, ଟିଉସନ୍ ସାରଙ୍କ ବା ପାଠ ଦୋକାନ, କୋଚିଂସେଣ୍ଟାରର । ପାଠ କ'ଣ ସବୁଦିନ ଏମିତି ବିପଥଗାମୀ ହୋଇ ରହିଥିବ ? ଲୋକେ କ'ଣ ଦିନେ ବୁଝିବେ ନାହିଁ ପ୍ରକୃତ ଶିକ୍ଷାର ଅର୍ଥ କ'ଣ ? You can cheat some people for some time, but not all people for all time. ପରିବର୍ତ୍ତନ ନିଶ୍ଚୟ ଆସିବ । ପରିବର୍ତ୍ତନ ପାଇଁ ଦରକାର ଇନ୍ଦୁସାରଙ୍କ ଜୀବନୀ । ସେଥିରୁ ଜାଣିବାର ଅଛି ସେ ସମୟର କେତେ ନୂଆନୂଆ ତଥ୍ୟ ଓ ଘଟଣା । ସେତେବେଳେ ଗାଁ କେମିତି ଥିଲା ? ଗାଁର ସ୍କୁଲ କେମିତି ଥିଲା ? ଶିକ୍ଷକ ଶିକ୍ଷୟିତ୍ରୀ

କିମିତିକା ଥିଲେ ? ପାଠପଢ଼ା କେମିତି ହେଉଥିଲା ? ଇନ୍ଦୁସାରଙ୍କ କର୍ମକ୍ଷେତ୍ର, ଶିକ୍ଷା ଓ ପ୍ରଶିକ୍ଷଣ କ୍ଷେତ୍ର ଥିଲା ବ୍ୟାପକ । ଓଡ଼ିଶାର ପୁରୀ, କଟକ, ଫୁଲବାଣୀ, ଗଞ୍ଜାମ, ବରପାଲିଠାରୁ ଲମ୍ବି ଯାଇଥିଲା ଗାନ୍ଧୀଙ୍କ ସେବାଗ୍ରାମ ଆଶ୍ରମ ପର୍ଯ୍ୟନ୍ତ । ସେମିତି ବ୍ୟାପକ ଥିଲା ଯେଉଁ ଲୋକମାନଙ୍କ ସହ ସେ କାମ କରିଥିଲେ ବା ସଂପର୍କରେ ଆସିଥିଲେ ସେମାନଙ୍କର ପ୍ରକାରଭେଦ । ତାଙ୍କ ଜୀବନୀରେ ଥିବା ଐତିହାସିକ ମୂଲ୍ୟ ଯୋଗୁଁ ତାହା ପଢ଼ିବାର ଆବଶ୍ୟକ ଅଛି । ତାଙ୍କ ଚରିତ୍ର ମାଧ୍ୟମରେ ଜଣେ ଆଦର୍ଶ ଲୋକର ନଜିର୍ ଦେଖି ଆମ୍ଭମାନଙ୍କର ଶିଖିବାର ଅଛି । ସେମିତି ଲେଖିବାର ଅଛି ସେ ଚାକିରି କାଳରେ ଅତି ସଫଳ ଭାବେ ଲିଭାଇଥିବା ତାଙ୍କର ଭୂମିକାମାନଙ୍କରୁ । କଷ୍ଟ ଏବଂ ପ୍ରତିକୂଳ ପରିପ୍ରେକ୍ଷୀରେ କାର୍ଯ୍ୟକରି ସଫଳ ହେବାର ସନ୍ଦେଶ ଅଛି ତାଙ୍କ ଜୀବନୀରେ ଆମ ସମସ୍ତଙ୍କ ପାଇଁ । ସନ୍ଦେଶ ଅଛି ଭଲ ମଣିଷ, ଶିକ୍ଷକ, ପ୍ରଶିକ୍ଷକ, ପ୍ରଧାନଶିକ୍ଷକ ଓ ଶିକ୍ଷା ପ୍ରଶାସକ ହେବାପାଇଁ ଏ ବହିଟି ଯେ ସମସ୍ତ ଶିକ୍ଷାପ୍ରେମୀମାନଙ୍କ ଦ୍ୱାରା ଆଦୃତ ହେବ ସେ ସନ୍ଦେଶ ମୁଁ ପାଇଥିଲି ପ୍ରସ୍ତୁତି ବେଳୁ । ବିଜୟବାବୁ ଜାଣିଥିଲେ 'ଫୁଲଚାଙ୍ଗୁଡ଼ି' ବହି ସମ୍ବନ୍ଧରେ । ମାତ୍ର ଜାଣିନଥିଲେ ଲେଖକଙ୍କୁ । ଏ ବହିଟିର ପ୍ରସ୍ତୁତିରେ ସାମିଲ୍ ହୋଇ ଇନ୍ଦୁସାରଙ୍କ ଆତ୍ମଜୀବନୀ ଏବଂ ତାଙ୍କ ଉପରେ ସ୍ମରଣିକାଟି ପଢ଼ିଲାପରେ ଏତେ ପ୍ରଭାବିତ ହୋଇଗଲେ ଯେ ପୂଜାରୀବାବୁଙ୍କର ସାକ୍ଷାତ୍କାର ନେଇ ଲେଖିଲେ ଗୋଟିଏ ଲେଖା । ତା ପରେପରେ ଆଉ ଗୋଟିଏ । ଏବଂ କହିଲେ 'ଏ ବହିର ଦୁଇ ତିନିଶହ କପି ମୁଁ ବିକ୍ରି କରାଇଦେବି ।' From all these points of view the book is a must read for all the teachers, teacher trainers, educational administrators and those woh are concerned with education, especially, with pre-primary, primary, basic and adult education.

ଇନ୍ଦୁସାର୍ ଥିଲେ ଓଡ଼ିଶାର ଶିକ୍ଷା ଓ ଶିକ୍ଷାସମସ୍ୟାକୁ ଠିକ୍‌ଭାବରେ ବୁଝିଥିବା ଏକମାତ୍ର ବ୍ୟକ୍ତି । ତାଙ୍କ ବ୍ୟତୀତ ଓଡ଼ିଶାର ଆଉ କେଉଁ ବ୍ୟକ୍ତି ସେକଥା ବୁଝିଥିଲେ କି ଭବିଷ୍ୟତରେ ବୁଝିବେ ସେଥିରେ ମୋର ସନ୍ଦେହ ଅଛି । ସେ ମହାନ୍ ବ୍ୟକ୍ତିଙ୍କ ଅବର୍ତ୍ତମାନରେ ଲେଖାଯାଉଛି ତାଙ୍କ ଆତ୍ମଜୀବନୀ । ତାଙ୍କ ବର୍ତ୍ତମାନରେ ହୋଇଥିଲେ କେତେ ଖୁସି ସେ ହୋଇନଥାନ୍ତେ ।

ମନ୍ମଥ କୁଣ୍ଡୁ



ସହଧର୍ମିଣୀ କମଳାଙ୍କ ସହ



ସ୍ତ୍ରୀ କମଳା, ପୁଅ ବିଭୁତି, ବୋହୂ ମିନୁ, ନାତି ଗିଟୁ ଓ ରାଜା ସହ



ପରିବାରବର୍ଗଙ୍କ ସହ



ବାସଭବନରେ ୭୮ ବର୍ଷ ବୟସରେ 'ନାଟ୍ୟଚେତନା' ଅନୁଷ୍ଠାନ ପକ୍ଷରୁ କଣ୍ଠଦାନ କରିବା ଅବସରରେ

# ସୂଚିପତ୍ର

## ଆତ୍ମଜୀବନୀ

## ଅନ୍ୟମାନେ ଯାହା କହିଥିଲେ ୯୪-୧୭୦

# ପ୍ରଥମ ଅଧ୍ୟାୟ

## ମୋ ଗାଁ ଓ ବାଲ୍ୟ ଜୀବନ

### ଗାଁ କିମ୍ବଦନ୍ତୀରୁ କିଛି

ସାକ୍ଷୀଗୋପାଳ ଓ ପୁରୀ ମଧ୍ୟରେ ଭାର୍ଗବୀ ନଦୀ କୂଳରେ ବୀରନରସିଂହପୁର ଶାସନ। ନରସିଂହ ଦେବ କାନ୍ୟକୁବଜରୁ ବ୍ରାହ୍ମଣମାନଙ୍କୁ ଆଣି ବସାଇଥିବା ଷୋହଳ ଶାସନ ମଧ୍ୟରୁ ବୀରନରସିଂହପୁର ଅନ୍ୟତମ। ବ୍ରାହ୍ମଣମାନେ ନିଷ୍କର ଜମି ନେବା ପାଇଁ ମନାକରି କର ସ୍ୱରୂପ ଗୋଟିଏ ଟଙ୍କା ରାଜାଙ୍କୁ ଦେଉଥିଲେ।

ଏଇ ଗ୍ରାମର କୌଣସି ବାହନୀପତି ସଂଜ୍ଞାଧାରୀ ପୁରୀ ରାଜାଙ୍କର ରାଜଗୁରୁ ଥିଲେ। ଥରେ ରାଜା ତାଙ୍କୁ ଅମାବାସ୍ୟା କେଉଁଦିନ ପଡ଼ିବ ବୋଲି ପଚାରିବାରୁ, ସେ ଗୋଟିଏ ଦିନ ଭୁଲରେ କହି ଦେଲେ, ଯେଉଁଦିନଟି ପୂର୍ଣ୍ଣିମା ଥିଲା । ବାହିନୀପତି ନିଜର ଭୁଲ ବୁଝିପାରି ସେଦିନି ତାଙ୍କର ଯୋଗ ବଳରେ ଚନ୍ଦ୍ରକୁ ଘୋଡାଇ ରଖି ଅମାବସ୍ୟା ରାତିର ରୂପ ପ୍ରକଟ କରିଦେଲେ। ସେହିଦିନ ଠାରୁ ସେ ଚନ୍ଦ୍ରଚ୍ଛେର ବାହିନୀପତି ବୋଲି ଅଭିହିତ ହେଲେ। ଏହି ଗ୍ରାମର ଆଉ ଜଣେ ରାଜଗୁରୁ ତତ୍କାଳୀନ ଉତ୍କଳର ରାଜା ବିକୃତ ମସ୍ତିଷ୍କ ହୋଇ ଯାଇଥିବାରୁ ତାଙ୍କର ପୁତ୍ରକୁ ରାଜଗାଦିରେ ବସାଇଥିବା ପାଇଁ ମରହଟ୍ଟା ରାଜାଙ୍କର ଅନୁମତି ଆଣିବା ଲାଗି ଯାଇଥିଲେ । ସେଠାରେ ସେ ରାଜଦରବାରରେ ପହଞ୍ଚି ସେଠାକାର ବିଧି ଅନୁଯାୟୀ ରାଜାଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ଘଣ୍ଟି ବଜାଇଲେ। ସେ ଆଠଥର ଘଣ୍ଟି ବଜାଉଥିବା ବେଳେ ତାକୁ ଜଣେ ପ୍ରହରୀ ଆସି ଘଣ୍ଟି ବଜାଇବା ବନ୍ଦ କରାଇଦେଲେ। ରାଜଗୁରୁ ଜାଣିଲେ ଯେ, ଏହି ଘଣ୍ଟିଟି କେବଳ ଜ୍ଞାନୀ, ପଣ୍ଡିତମାନଙ୍କ ପାଇଁ । ଯେଉଁ ପଣ୍ଡିତ ଯେତୋଟି ବିଦ୍ୟାରେ ପାରଙ୍ଗମ, ସେ ସେତିକି ଥର ଘଣ୍ଟି ବଜାଇବାର ନିୟମ ଥିଲା। ସୁତରାଂ ରାଜଗୁରୁଙ୍କୁ ଆଠଟି ବିଦ୍ୟାରେ ତାଙ୍କର ନୈପୁଣ୍ୟ ପ୍ରତିପାଦିତ କରିବାକୁ ପଡ଼ିଥିଲା। ସେ ସାଂଖ୍ୟ, ଯୋଗ, ଗଣିତ, ଦର୍ଶନ ଇତ୍ୟାଦି ଆଠଟି ବିଦ୍ୟାରେ ପେଶବାଙ୍କ ଆଗରେ ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରି ପ୍ରଶଂସିତ ହୋଇଥିଲେ ଏବଂ ମରହଟ୍ଟା ରାଜା ପେଶବା ପୁରୀର ଯୁବରାଜାଙ୍କୁ ରାଜଗାଦିରେ ଅଭିଷିକ୍ତ କରିବା ପାଇଁ ଅନୁମତି ଦେଇଥିଲେ। ସେ କାଳର ଏ ଦୁଇଟି

କଥା ପୁରୀର ପୁରାତନ ଓକିଲ ଜଗବନ୍ଧୁ ସିଂହଙ୍କର ଉତ୍କଳ ଇତିହାସରେ ଲିପିବଦ୍ଧ ହୋଇଅଛି।

ସେଇ ବୀର ନରସିଂହପୁର ଶାସନରେ ମୋର ଜନ୍ମ ୧୯୧୭ ମସିହା ନଭେମ୍ବର ୨୬ ତାରିଖ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀରେ। ମୋର ବାଲ୍ୟାବସ୍ଥା କାଳକୁ ଶାସନ ମାନଙ୍କରେ ବ୍ରାହ୍ମଣମାନଙ୍କର ବହୁ ଅଧୋଗତି ଘଟିଥିଲା। ରାଜଗୁରୁ ବଂଶ ଲୋପ ପାଇଯାଇଥିଲା। ସଂସ୍କୃତ ଅଧ୍ୟୟନ କେବଳ ପରମ୍ପରା ସହିତ ଘରେ ଘରେ ଥିଲା ଏବଂ ମୁଷ୍ଟିମେୟ ଲୋକ ପୁରୀ ସଂସ୍କୃତ କଲେଜକୁ ବିଦ୍ୟାଧ୍ୟୟନ ପାଇଁ ଯାଉଥିଲେ।

## ଗୋଟିଏ ଦିନର ଘଟଣା

ଥରେ ତତ୍କାଳୀନ ସ୍କୁଲ ଇନିସପେକ୍ଟର ରାଧାନାଥ ରାୟ ଗାଁଦାଣ୍ଡରେ ଚାଲି ଯାଉଥିବା ସମୟରେ ଜଣେ ଗ୍ରାମବାସୀ ବାରଣ୍ଡାରେ ବସି ତିନି ଚାରିଜଣ ପିଲାଙ୍କୁ ସଂସ୍କୃତ ପଢାଉଥିବାର ଦେଖିଲେ। ଦାଣ୍ଡରେ ଟିକିଏ ଅଟକି ଯାଇ ପଣ୍ଡିତଙ୍କର ସଂସ୍କୃତ ଉଚ୍ଚାରଣ ଶୁଣି ବାରଣ୍ଡାକୁ ଉଠିଯାଇ ପଣ୍ଡିତଙ୍କ ପାଖରେ ବସିଲେ ଏବଂ ତାଙ୍କୁ ତାଙ୍କର ସଂସ୍କୃତ ବିଦ୍ୟାରେ ଯୋଗ୍ୟତା ସମ୍ବନ୍ଧରେ ପଚାରିବାରୁ ରାମଚନ୍ଦ୍ର ମିଶ୍ର ନାମଧେୟ ସେହି ବ୍ୟକ୍ତି କହିଲେ ଯେ, ତାଙ୍କର ସଂସ୍କୃତ ବିଦ୍ୟାରେ କୌଣସି ଉପାଧି ନଥିଲା ବୋଲି। ସେ କେବଳ ଘରେ ଘରେ ତାଙ୍କର ପିତା ଓ ଅନ୍ୟାନ୍ୟ ଗ୍ରାମବାସୀଙ୍କ ଠାରୁ ସଂସ୍କୃତ ଶିକ୍ଷାଲାଭ କରିଥିଲେ। ଏଇ ପିଲାମାନଙ୍କର ଆଗ୍ରହ ଦେଖି ସେ ସମୟ ସମୟରେ ସେମାନଙ୍କୁ ସଂସ୍କୃତ ଶିକ୍ଷା ଦେଉଥିଲେ। ତତ୍ପରେ ରାଧାନାଥ ରାୟ ରାମ ମିଶ୍ରଙ୍କୁ ଗୋଟିଏ ସଂସ୍କୃତ ଟୋଲ କରି ପିଲାମାନଙ୍କୁ ପଢାଇବାକୁ କହିଲେ ଏବଂ ଏଥି ନିମିତ୍ତ ସରକାରଙ୍କୁ ଗୋଟିଏ ଆବେଦନପତ୍ର ଲେଖିବା ପାଇଁ ପରାମର୍ଶ ଦେଲେ। କିନ୍ତୁ ରାମ ମିଶ୍ରେ ଏଥିରେ ରାଜି ନ ହେବାରୁ ରାଧାନାଥ ତାଙ୍କୁ ବାଧ୍ୟକରି ଦରଖାସ୍ତଟିଏ ଲେଖାଇ ନେଇ ଯାଇଥିଲେ। ପ୍ରାୟ ବର୍ଷକ ପରେ ରାମଚନ୍ଦ୍ର ମିଶ୍ରଙ୍କ ନାମରେ ୪୦ଟଙ୍କା ମନିଅର୍ଡର ଆସିଲା। ଏହିକଥା ଦେଖି କେତେଲୋକ ଜମା ହୋଇଗଲେ ଏବଂ ରାମ ମିଶ୍ରଙ୍କୁ କହିଲେ, "ହଇରେ ରାମ ତୁ ଏ କିରସ୍ତାନ ଟଙ୍କା ରଖିବୁ କି ରେ?" ତହୁଁ ରାମ ମିଶ୍ରେ ସେ ଟଙ୍କା ରଖିଲେ ନାହିଁ ଏବଂ ସେ ଟଙ୍କା ଫେରି ଗଲା। ଏ ଘଟଣା ଟି ମୋର ଜନ୍ମର କେତେକ ବର୍ଷ ପୂର୍ବର ଘଟଣା। ମୁଁ ସେଠାରେ ପ୍ରଥମ ଶ୍ରେଣୀ ପାଠ ପଢ଼ିଥିଲି।

## ଆମ ପିଲାବେଳ ଗାଁ

ମୁଁ ଏବଂ ମୋର ଉପର ଭାଇ ଶଶୀଭୂଷଣଙ୍କର ଏକ ସାଙ୍ଗରେ ଗାଁରେ ବ୍ରତଘର ହୋଇଥିଲା। ସେ କାଳରେ ସାଧାରଣତଃ ଛଅବର୍ଷରୁ ଦଶବର୍ଷ ଭିତରେ ବ୍ରତୋପନୟନ କାର୍ଯ୍ୟ ସମାପିତ ହେଉଥିଲା। ତା ପୂର୍ବରୁ କର୍ଣ୍ଣଭେଦ ସବୁ ପୁଅ ପିଲାଙ୍କର ମଧ୍ୟ

କରାଯାଉଥିଲା। ବ୍ରତୋପନୟନ ପରେ ପିଲାମାନେ ସନ୍ଧ୍ୟା ଚଳୁ, ଓ ଗାୟତ୍ରୀ ମନ୍ତ୍ର ଶିଖୁଥିଲେ। ତା'ଛଡ଼ା ଶିବସ୍ତୋତ୍ର, ବିଷ୍ଣୁସ୍ତୋତ୍ର ଏବଂ ଗୀତ ଗୋବିନ୍ଦ ଆଦି ଶିଖୁଥିଲେ। ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ଦେବାଳୟ ନିକଟସ୍ଥ ପୋଖରୀରେ ସ୍ନାନାନ୍ତେ ସନ୍ଧ୍ୟାମନ୍ତ୍ର ପାଠକରି ଦେବାଳୟରେ ଶିବସ୍ତୋତ୍ର ବୋଲି ଘରକୁ ଆସୁଥିଲେ। ପ୍ରତିଦିନ ସନ୍ଧ୍ୟା ସମୟରେ ପିଲାମାନେ ନିଜନିଜ ଦାଣ୍ଡପିଣ୍ଡାରେ ବସି ନାନା ଶ୍ଳୋକମାନ ଆବୃତ୍ତି କରୁଥିଲେ । ଏହି ଶ୍ଳୋକଗୁଡ଼ିକ ସେମାନେ ପରିବାରର ବୟସ୍କ ଲୋକମାନଙ୍କୁ ଠାରୁ, ଗାଁର ଲୋକଙ୍କଠାରୁ ବା ସ୍କୁଲରେ ସାଧାରଣତଃ ଶିକ୍ଷା କରୁଥିଲେ।

ପିଲାବେଳେ ଆମେମାନେ ଡୁଡୁ, ବହୁଚୋରୀ, ଖୁଙ୍କୁବାଟୀ (ତାଳମଞ୍ଜି) ଓ ମାର୍ବଲ ଏବଂ କାଚବାଟି ଖେଳୁଥିଲୁ। ରାତିରେ ଆମେ ନାନାଗଛ ବିଶେଷତଃ ନଡ଼ିଆ ଗଛରେ ଚଢ଼ି, ଗଛତଳେ ଲୁଚି, କହାଟମାରି ଖେଳୁଥିଲୁ । ପିଲାମାନେ ସାଙ୍ଗହୋଇ ନଈ, ପୋଖରୀ ଓ ଗଡ଼ିଆରୁ ଅନେକ ସମୟରେ ମାଛ ଧରୁଥିଲେ। ସେ କାଳରେ ଏ ସବୁ ଜଳାଶୟରେ ନାନାଜାତିର ମାଛଥିଲେ। ଆଜିକାଲି କଉ, ରଡା, ମାଗୁର,ଜରାଳି, କିଆକେରାଣ୍ଡି, ମୁଣ୍ଡିଗାଗର, ବୋମି, ସିଂହି, ଶାଳ, ଚିତଳ, ଆଡ଼ି, ଗଣ୍ଡିଅଳ ଆଦି ମାଛ ଗୁଡ଼ିକର ନା ଶୁଣିବାକୁ ମିଳୁନାହିଁ। ସେତେବେଳେ ୨୦/୨୫ ସେର ଓଜନର ବାଳିଆ, ଶେଉଳ ଓ ଚିତଳ ଧରାଯିବାର ମୁଁ ଦେଖିଛି।

ଆମେ ପିଲାଏ ନଈରୁ ବାଲିଗେରେଡା ଓ ବାଇଝାଲି ମାଛ ଧରୁଥିଲୁ। ସେତେବେଳେ ବେଶି ବର୍ଷା ହେଲେ ବେଳେବେଳେ ଗାଁଦାଣ୍ଡରେ ପାଣି ଚାଲୁଥିଲା ଏବଂ ପୋଖରୀରେ ମଧ୍ୟ ପାଣି ପଶୁଥିଲା। ଅନେକ ସମୟରେ ଏଇ ସ୍ରୋତର ବିପରୀତ ଦିଗରୁ ମାଛ ସବୁ ଉଠି ଆସୁଥିଲେ ଏବଂ ଆମେ ପିଲେ କଉତୁକର ସହିତ ଅତି ସହଜରେ ମାଛ ଧରି ପାରୁଥିଲେ। ଖରାଦିନେ ପିଲାଏ ପୋଖରୀରେ ବୁଡ଼ି ପଙ୍କରୁ ବଡ଼ ବଡ଼ ଚୁଙ୍ଗୁଡ଼ି ସଂଗ୍ରହ କରୁଥିଲେ।

ଦୁର୍ଗାପୂଜା ସମୟରେ ଗାଁର ସାଧାରଣ ଦୁର୍ଗାପୂଜା ଛାଡ଼ି ଅନେକ ଲୋକ ଘରେ ଘରେ ମଧ୍ୟ ଦୁର୍ଗାପୂଜା କରନ୍ତି ଏବଂ ସେମାନେ କେହି କେହି ଷୋହଳ ପୂଜା ଅର୍ଥାତ ଷୋହଳଦିନ, ନଅଦିନ ଓ ତିନିଦିନ ପୂଜା କରନ୍ତି । ସେମାନଙ୍କ ଘରେ ପିତଳର ଦୁର୍ଗାମୂର୍ତ୍ତିମାନ ଥାଏ। ସେମାନେ ଭାତ, ଡ଼ାଲି ଓ ନାନାପ୍ରକାର ବ୍ୟଞ୍ଜନ, ଖିରି, କାକରା କରି ଶେଷ ତିନିଦିନରେ ଅନ୍ୟମାନଙ୍କୁ ଡ଼ାକି ଖାଇବାକୁ ଦିଅନ୍ତି। ଗାଁଟି ଦୁଇଖଣ୍ଡରେ ବିଭକ୍ତ। ଜଗନ୍ନାଥସଡ଼କରୁ ଗଲେ ପ୍ରଥମେ ଦ୍ୱିତୀୟଖଣ୍ଡି ପଡ଼େ, ଦ୍ୱିତୀୟ ଖଣ୍ଡିରେ ଆମର ଘର। ତା'ପରେପରେ ପ୍ରଥମଖଣ୍ଡି । ଦ୍ୱିତୀୟଖଣ୍ଡିରେ ମହାଷ୍ଟମୀ ଦିନ ଭଗବତୀଙ୍କ ପାଖରେ ମେଣ୍ଢା ଓ ଛେଳି ବଳି ପଡ଼େ, ସୁତରାଂ ସେଦିନ ଗାଁର ସମସ୍ତଙ୍କ ଘରକୁ କିଛିକିଛି ମାଂସ ଭାଗ ମିଳେ। ସାଧାରଣତଃ ସେକାଳରେ ଗାଁମାନଙ୍କରେ କେବଳ ପଶୁବଳିକୁ ଆଳକରି

ବର୍ଷକରେ ଗୋଟିଏ ଦିନ ମାଂସ ଖିଆଯାଉଥିଲା । ଦୁର୍ଗାପୂଜା ସମୟରେ ଆମେ ପିଲାମାନେ ନିକଟସ୍ଥ ଗୋଟିଏ ଦୁଇଟି ଗାଁକୁ ଯାଇ ନିର୍ଦ୍ଦିଷ୍ଟ ଜଣେଅଧେ ଲୋକର ବାଡ଼ିରୁ ଫୁଲ, ବିଶେଷକରି ମାଳତୀ ଓ ଗଙ୍ଗଶିଉଳି ଫୁଲ ସଂଗ୍ରହ କରୁଥିଲୁ ଏବଂ ସେ ଫୁଲକୁ ଘରେ ମାଳକରି ସନ୍ଧ୍ୟାବେଳକୁ ପ୍ରଥମଖଣ୍ଡିରେ ପୂଜା ପାଉଥିବା ଗ୍ରାମର ଦୁର୍ଗାଙ୍କୁ ଚୁଆବଳିତା ଏବଂ ଫୁଲମାଳ ଅର୍ପଣ କରୁଥିଲୁ।

ସେତେବେଳେ ନିକଟସ୍ଥ ଭାର୍ଗବୀ ନଦୀ କୂଳରେ କେତେକ ଗ୍ରାମବାସୀ ମୂଳା, ବାଇଗଣ ଓ କେତେପ୍ରକାରର ଶାଗ ଉତ୍ପାଦନ କରୁଥିଲେ।

ମାଇନର ସ୍କୁଲ ପିଲାମାନେ ମଧ୍ୟ ସ୍କୁଲରେ କିଛି ପନିପରିବା ଓ ଶାଗ କରିବା ସଙ୍ଗେସଙ୍ଗେ ନଈକୂଳରେ ପନିପରିବା ଚାଷ କରୁଥିଲେ। ସେତେବେଳେ ଗାଁରେ ଯେଉଁମାନଙ୍କର ବଡ଼ ଅଗଣାଥିଲା, ସେମାନେ ଗେଣ୍ଡୁ, ମଣ୍ଡା, ସେବତୀ ଆଦି ଫୁଲ ଲଗାଇବା ସଙ୍ଗେସଙ୍ଗେ ଜହ୍ନି, ଭେଣ୍ଡି, କାକୁଡ଼ି, ଲାଉ, କଖାରୁ ଆଦି ଲଗାଉଥିଲେ। ସେତେବେଳେ କେହି ଅମୃତଭଣ୍ଡା ଲଗାଇବାର ମୁଁ ଦେଖିନାହିଁ। ଆଳୁ, ପିଆଜ, ବନ୍ଧାକୋବି, ଫୁଲକୋବି, ବିଲାତିବାଇଗଣ ଇତ୍ୟାଦି କ'ଣ ଗାଁ ଲୋକେ ଜାଣି ନଥିଲେ। କେବଳ ଆଳୁ, ଦେଶି ପିଆଜ ବିକ୍ରି କରିବାକୁ ଲୋକମାନେ ବାହାରୁ ଆସନ୍ତି । ଚିଲିକାରୁ ଭାରରେ ମାଛ ବୋହିଆଣି କେଉଟମାନେ ଗାଁ ଗାଁ ବୁଲି ବିକ୍ରି କରନ୍ତି । ସେ ସବୁ ମାଛ ହେଲା ବିଛାବାଳିଆ, ବଡ଼ବଡ଼ ଚୁଙ୍ଗୁଡ଼ି, ଘଉଳି କୋକଲି, କାଉ କୋକଲି, ମରୁଆ କୋକଲି, ଘନ୍ଦି, ଖୋରାଣ୍ଟି ଇତ୍ୟାଦି। ଏହି ମାଛଗୁଡ଼ିକ ବହୁ ଶସ୍ତାରେ, ଉଦାହରଣ ସ୍ୱରୂପ ବଡ଼ ଚିଙ୍ଗୁଡ଼ି ସେର ତିନି ଚାରି ଅଣାରେ ମିଳୁଥିଲା। ଅନେକ ସମୟରେ ସେ ମାଛ ଗୁଡ଼ିକ ସଢ଼ି ଯାଉଥିବାର ଦେଖାଯାଉଥିଲା । କାରଣ ସେ କାଳରେ ଗାଡ଼ି, ମୋଟର କି ସାଇକଲ ନଥିଲା ବା ବରଫ ନ ଥିଲା। ଆଜି ଏବେ ଆମଗାଁରେ କେହି ଫୁଲ ବା ପନିପରିବା ଲଗାଇବାର ଦେଖାଯାଉନାହିଁ । ଏହାର କାରଣ କ'ଣ ?

ଗ୍ରାମରେ ସାଧାରଣତଃ ପୁଣ୍ୟପର୍ବ ଭିତରେ ଶୀତଳଷଷ୍ଠୀ ଓ ଦୁର୍ଗାପୂଜା ଛଡ଼ା ଗହ୍ମାପୂର୍ଣ୍ଣମୀ, ଦୋଳପୂର୍ଣ୍ଣମୀ ଏବଂ ଚନ୍ଦନଯାତ୍ରା ପାଳିତ ହୁଏ । ଦୁର୍ଗାପୂଜା ସମୟରେ ସମସ୍ତେ ତିନିଦିନ ପୋଥିପୂଜା କରନ୍ତି ଏବଂ ଦଶହରାଦିନ ସନ୍ଧ୍ୟା ସମୟରେ ଚଉଦୋଳରେ ଦୁର୍ଗାଠାକୁରାଣୀ ଗାଁରେ ବାହାରିଲାବେଳେ ଆମେ ପିଲାମାନେ ଠାକୁରାଣୀଙ୍କ ସାଙ୍ଗରେ କୌଣସି ଗୋଟିଏ ବହି ପଢିପଢି ଯାଉ । ଅକ୍ଷୟ ତୃତୀୟାରୁ ଏକୋଇଶଦିନ ଧରି ଗାଁରେ ଦିଅଁ ବାହାରନ୍ତି । ସେତେବେଳେ ଆମେ ପିଲାମାନେ କାଠର ଅସୁରମୁଣ୍ଡ ଲଗାଇ ଠାକୁରଙ୍କ ଆଗରେ ଖଣ୍ଡାବାଡ଼ି ବୁଲାଇ ବୁଲାଇ ଯାଉ । ଆଉ କେତେକ ପିଲା ପାଳଭୂତ ହୋଇ ନାଚିନାଚି ଦିଅଁଙ୍କ ସାଙ୍ଗରେ ଯାଆନ୍ତି । ଏହି ଗାଁରେ ଠାକୁର ପୁଷ୍କରିଣୀରେ ଚାପ ଖେଳିବା ହୁଏତ ଆଗରୁ ଥିଲା । କିନ୍ତୁ ଆମ ଦେଖନ୍ତରେ ଦିଅଁଙ୍କ ଚାପଖେଳ ଆଉ ନଥିଲା ।

ଆମ ପିଲାଦିନେ ଆମଗାଁରେ ଦୁଇଖଣ୍ଡି ସାଇକଲ ଥିଲା । ତହିଁରୁ ଗୋଟିଏ ଆମଘରେ ଆମ ନନା କିଣିଥିଲେ, ଯେତେବେଳେ ସେ ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକ ଥିଲେ। ଶନିବାର ରବିବାରରେ ସେ ସାଇକଲରେ ଗାଁକୁ ଆସୁଥିଲେ। ସେ ସାଇକଲ ଖଣ୍ଡିଏ ଥିଲା ବ୍ରିଟିଶ ତଆରି ଫିଲପ୍‌ସ ସାଇକଲ । ତାର ଦାମ ବାଇଶି, ତେଇଶି ଟଙ୍କା ଥିଲା ବୋଲି ମୁଁ ଶୁଣିଛି। ତାଙ୍କ ଦେଖାଦେଖି ଆଉ ଜଣେ ସାଇକଲ କିଣି ଥିଲେ।

ଶିବ ବିବାହ ଓ ଶୀତଳଷଷ୍ଠୀ ପର୍ବ ଅଧିକାଂଶ ଶାସନ ଗାଁ ଗୁଡ଼ିକରେ ଗୋଟିଏ ମୁଖ୍ୟ ଉତ୍ସବ। ଶୀତଳଷଷ୍ଠୀରେ ଶିବ ପାର୍ବତୀଙ୍କର ଯାତ୍ରା ଜାକଜମକ ରୂପେ ହୁଏ । କିନ୍ତୁ ବିଶେଷତ୍ୱ ହେଲା, ଗାଁଲୋକେ କେତେପ୍ରକାର ବାଣ (ହାବେଲ, କୁମ୍ଭ,) ଆଦି କରନ୍ତି। ଏଇ ଶାସନରୁ ଶୀତଳଷଷ୍ଠୀ ଉତ୍ସବ ସମ୍ବଲପୁରକୁ ରପ୍ତାନି କରାଯାଇଛି ଏବଂ ଏଇ ଯାତ୍ରା ପଶ୍ଚିମ ଓଡ଼ିଶାରେ ଅଧିକ ଆଡ଼ମ୍ବର ସହକାରେ ପାଳିତ ହୁଏ। ଆମଗାଁ ବୀରନରସିଂହପୁରରେ ପ୍ରଥମଖଣ୍ଡିରେ ଗୋପୀନାଥ ଏବଂ ଲୋକନାଥଙ୍କ ମନ୍ଦିର ଏବଂ ଦ୍ୱିତୀୟଖଣ୍ଡିରେ ନୀଳକଣ୍ଠ ଓ ଭଗବତୀଙ୍କ ମନ୍ଦିର।

ସେ କାଳରେ ଝିଅ ଆଉ ପୁଅମାନେ ଛୋଟବେଳେ କଉପୁନି ପିନ୍ଧୁଥିଲେ। ଟିକିଏ ବଡ଼ ହେଲେ ଝିଅମାନେ ଛୋଟ ଶାଢ଼ୀ, ପୁଅମାନେ ଗାମୁଛା ଓ ଲୁଗା ପିନ୍ଧୁଥିଲେ। ସେ କାଳରେ ଝିଅମାନେ ସ୍କୁଲରେ ପଢୁ ନଥିଲେ। ପୁଅମାନେ ଲୁଗା ଓ ଗାମୁଛା ପିନ୍ଧି ସ୍କୁଲକୁ ଯାଉଥିଲେ। କେବଳ ମାଇନର ସ୍କୁଲରେ ପଢ଼ିଲାବେଳେ ଖୁବ କମ୍‌ପିଲା କମିଜ ପିନ୍ଧୁଥିଲେ। ପ୍ରାଇମେରି ଏବଂ ମାଇନର ସ୍କୁଲର ଛାତ୍ରମାନେ ପରକଲମ ଏବଂ ପରେ ପରେ ନୀବ୍‌ଲଗା କଲମ ବ୍ୟବହାର କରୁଥିଲେ। ପିଲାଏ ସ୍କୁଲକୁ କଲମ ଓ କାଳିଘଡ଼ି (ଦୁଆତ) ନେଇ ସ୍କୁଲକୁ ଯାଉଥିଲେ।

ସେ କାଳରେ ପିଲାଏ ମଧ୍ୟ ଅଳଙ୍କାର ପିନ୍ଧୁଥିଲେ। ସେମାନେ ଗୋଡ଼ଖଡୁ, ହାତଖଡୁ, ଅଣ୍ଟାସୂତା, ଫାଶିଆ, ଲବଙ୍ଗ ଆଦି ପିନ୍ଧୁଥିଲେ। ଏହା କେବଳ ଅବସ୍ଥା ସଂପନ୍ନ ଲୋକଙ୍କ ଘରେ ସମ୍ଭବ ହେଉଥିଲା। ମୁଁ ପିଲାଦିନେ ଦୁଇ କାନରେ ଫାଶିଆ ପିନ୍ଧିଥିଲି। ସେ କାଳରେ ସ୍ତ୍ରୀ ଲୋକମାନେ ବୋଝେ ବୋଝେ ରୁପା ଅଳଙ୍କାର ଏବଂ ଅବସ୍ଥା ଅନୁଯାୟୀ ସୁନା ଅଳଙ୍କାର ପିନ୍ଧୁଥିଲେ। ଯେଉଁମାନେ ଭିଙ୍ଗାରପୁର ଚୌଧୁରୀ ଘରୁ ବୋହୂ ଆଣୁଥିଲେ, ସେମାନଙ୍କ ଘରେ ବହୁ ପରିମାଣରେ ସୁନା ଅଳଙ୍କାର ବ୍ୟବହୃତ ହେଉଥିଲା। ସାଧାରଣତଃ ନାକ ଆଉ କାନରେ ସ୍ତ୍ରୀ ଲୋକମାନେ ବହୁତ ପ୍ରକାର ସୁନା ଅଳଙ୍କାର ପିନ୍ଧୁଥିଲେ ଏବଂ ଧନୀଘର ଲୋକର ସ୍ତ୍ରୀ ଲୋକମାନେ ହାତ ଏବଂ ବାହୁରେ ସୁନା ଅଳଙ୍କାର ପିନ୍ଧୁଥିଲେ।

ଅଳଙ୍କାର ଗୁଡ଼ିକର ନାମ - ଗୋଡ଼ଖଡ୍ଡୁ, ବଳା, ପାହୁଡ଼, ଝୁଣ୍ଟିଆ, ନୂପୁର, ଅଣ୍ଟାସୂତା,ଚନ୍ଦ୍ରହାର ଖଡ୍ଡୁ, ବିଦ, ତାଡ, ବାଜୁବନ୍ଧ, ସୁନା ଅଳଙ୍କାର ଭିତରେ ଚୁଡ଼ି, କଙ୍କଣ, କୁରୁକାତ, ଶୋରିଷିଆ, ଝପ, ଖାସୁମାଳୀ, ବିଛାହାର, ନଥ, ଗୁଣା, ଦଣ୍ଡି, ବସୁଣୀ, ନୋଲକ, ନାକଚଣା, କାପ, ଫିରଫିରା, କାନଫୁଲ, ଫାସିଆ, ପେନ୍ଦି, ମଥାମଣି, ସିନ୍ଥି, ଚଉଁରୀ ମୁଣ୍ଡି (ରୁପା), ଝପସରୀ, ନୋଳି, ମଲକଡ଼ି, କୁଣ୍ଡଳ, ମାକେଡ଼ି ଇତ୍ୟାଦିର ଜଣାଥିଲା ।

ଗାଁରେ ଠାକୁରଙ୍କ ସମ୍ପତ୍ତି ବୁଝିବା ଏବଂ ଠାକୁରଙ୍କର ନୀତି ଏବଂ ପର୍ବପର୍ବାଣୀ ପାଳନ କରିବା ଏବଂ ଗ୍ରାମର ସମସ୍ତ ସମସ୍ୟା ଏବଂ କଳିତକରାଳ ତୁଟାଇବା ପାଇଁ ଗ୍ରାମରେ ପ୍ରତି ସପ୍ତାହରେ ଥରେ ଲେଖାଏଁ ମହାଜନ ମେଳା ବସୁଥିଲା । ଏଥିପାଇଁ ଗ୍ରାମରେ ଘଣ୍ଟା ପିଟାଇ ସମସ୍ତଙ୍କୁ ନୋଟିସ ଦିଆଯାଉଥିଲା । ଏବେ ମଧ୍ୟ ଏହି ବିଧି ପ୍ରଚଳିତ ଅଛି ।

ସେତେବେଳେ ବୟସ୍କ ଲୋକଙ୍କ ପ୍ରତି ଅଳ୍ପବୟସ୍କ ଲୋକଙ୍କର ଭକ୍ତିଥିଲା ଏବଂ ବିଶେଷତଃ ପିଲାମାନେ ବୟସ୍କ ଲୋକଙ୍କୁ ଡ଼ରୁଥିଲେ ।

କେବଳ ଆମଗାଁରେ ନୁହେଁ, ପ୍ରାୟ ସବୁ ଶାସନରେ ବ୍ରାହ୍ମଣମାନଙ୍କର ସେବା କରିବା ପାଇଁ ତେଲି, ଗୁଡ଼ିଆ, କେଉଟ, ଭଣ୍ଡାରୀମାନଙ୍କୁ ଗ୍ରାମବାସୀ ହିସାବରେ ସ୍ଥାନ ଦିଆଯାଇଥିଲା । କିନ୍ତୁ ବାଉରୀ ଓ ଡ଼ମ ଜାତିର ଲୋକ ଗାଁ ବାହାରେ ବ୍ରାହ୍ମଣମାନଙ୍କ ଜାଗାରେ ଆଶ୍ରୟ ନେଇଥିଲେ । ଡମମାନେ ଗାଁର ପର୍ବପର୍ବାଣୀ ଏବଂ ବିବାହ ବ୍ରତରେ ବାଜା ବଜାଉଥିଲେ । ବାଉରୀମାନେ ହିଁ ଅଧିକ ସଂଖ୍ୟାରେ ଥିଲେ ଏବଂ ଏମାନେ ବ୍ରାହ୍ମଣମାନଙ୍କର ନଡ଼ିଆ ତୋଳିବା ତଥା ସମସ୍ତ କାର୍ଯ୍ୟ କରୁଥିଲେ । ବାଉରୀମାନେ ପ୍ରାୟ ସମସ୍ତେ ଖଜୁରୀମଦ ଦ୍ୱାରା ବହୁଭାବରେ ନିର୍ଯାତିତ ହେଉଥିଲେ । ୧୯୩୦ ଦଶକରେ ତତ୍କାଳୀନ ବ୍ରିଟିଶ ସରକାର ପୁରୀ ସଦର ଅଞ୍ଚଳରେ ଖଜୁରୀ ତାଡ଼ି ପିଇବା ସମ୍ପୂର୍ଣ୍ଣ ନିଷିଦ୍ଧ କରିଥିଲେ । ସେହିଦିନ ଠାରୁ ବାଉରୀ ମାନଙ୍କର ଅବସ୍ଥା ବହୁ ପରିମାଣରେ ବଦଳି ଯାଇଥିବାର ଲକ୍ଷ୍ୟ କରାଯାଇଛି । ଏବେ ସେମାନଙ୍କ ବାସ ଜମିର ସ୍ୱତ୍ୱାଧିକାର ଦିଆଯିବା ଦ୍ୱାରା ସେମାନଙ୍କର ଅବସ୍ଥାର ବହୁତ ଉନ୍ନତି ହୋଇଛି । ଏମାନଙ୍କର ମଧ୍ୟରୁ ଏବେ ସୁଦ୍ଧା ଖୁବ୍ କମଲୋକ ପାଠପଢ଼ି ଚାକିରି ବାକିରି କରୁଛନ୍ତି । ଏବେ ଧୋବୀ, ଭଣ୍ଡାରୀ, ଦେଉଳର ମାଳି, ପୂଜକ ଇତ୍ୟାଦିଙ୍କୁ ଦିଆଯାଇଥିବା ହେତାଜମି ସେମାନଙ୍କର ନାମରେ କରି ଦିଆଯାଇଛି ।

ସେତେବେଳେ ଗାଁ ଲୋକେ ପାଣି ପାଇଁ ଗଡ଼ିଆ ପୋଖରୀ ଉପରେ ନିର୍ଭର କରୁଥିଲେ । ଆମ ଗ୍ରାମରେ କେବଳ ଦୁଇଟି କୂଅକୁ ଛାଡ଼ିଦେଲେ ସବୁ କୂଅର ପାଣି ଖାରିଆ ଲାଗେ ବୋଲି ଲୋକେ ସେ ପାଣି ପିଉ ନଥିଲେ । ପୋଖରୀ ପାଣି ପିଇବା ଦ୍ୱାରା

ଲୋକେ ନାନା ରୋଗରେ ପଡୁଥିଲେ। ମୋ ପିଲାଦିନେ ଥରେ ହଇଜା ଲାଗିବାରୁ ଦୁଇଦିନ ମଧ୍ୟରେ ନଅଜଣ ଲୋକ ମରିଯିବାର ମୁଁ ଦେଖିଛି। ମଳର କୃମି, ଡାକୁରିଆ, ଡିସେଣ୍ଟ୍ରି, ହଇଜା, ଆନ୍ତ୍ରିକଜ୍ୱର (ଟାଇଫଏଡ୍) ଓ କାମଳ ଇତ୍ୟାଦି ରୋଗ ହୁଏ ବୋଲି ସେତେବେଳେ ଲୋକେ ଜାଣି ନଥିଲେ। ସେତେବେଳେ ଗାଁରେ ମେଲେରିଆ ଏବଂ ବାତଜ୍ୱରର ପ୍ରକୋପ ଭାରି ଭୟଙ୍କର ଭାବରେ ଥିଲା। ସେତେବେଳେ ଆମଗାଁରେ କାହିଁକି, ଓଡ଼ିଶା ସାରା ଏବଂ ବିଶେଷକରି ବାଲେଶ୍ୱରେ ମେଲେରିଆର ପ୍ରକୋପ ଅତି ଭୟଙ୍କର ଭାବରେ ଥିଲା। ସେତେବେଳେ ମେଲେରିଆ ଜ୍ୱରକୁ ପାଳିଜ୍ୱର ବୋଲି କହୁଥିଲେ। ମେଲେରିଆରୁ ରକ୍ଷାପାଇବା ପାଇଁ କୁଇଲେଖା ପତ୍ରର ରସ ମହୁସାଙ୍ଗରେ ଲୋକେ ଖାଉଥିଲେ। ତାଛଡ଼ା ଆମ ଗ୍ରାମର ବୈଦ୍ୟ ଚିନ୍ତାମଣି ମିଶ୍ରେ ସବୁ ରୋଗପାଇଁ ଏବଂ ମେଲେରିଆ ପାଇଁ ମଧ୍ୟ ନାନା ଔଷଧ ଦେଉଥିଲେ। ସେ ଥିଲେ ଆମଗାଁରେ ସବୁ ରୋଗ ପାଇଁ ଚିକିତ୍ସକ। ଖୁବ କମ୍‌ରୋଗୀ ପୁରୀ କିମ୍ବା ସାକ୍ଷୀଗୋପାଳ ଡ଼ାକ୍ତରଖାନାକୁ ଯାଉଥିଲେ। ତାପରେ ମେଲେରିଆ ରୋଗ ପାଇଁ କୁଇନାଇନ ଓ ସିଙ୍କୋନାର ପ୍ରଚଳନ ହେଲା। ସେତେବେଳେ ପିଲାମାନେ ବହୁତ କାଛୁକୁଣ୍ଡିଆ ରୋଗରେ ପଡୁଥିଲେ। ଏବେ କିନ୍ତୁ ସେସବୁ ନାହିଁ। ଏବେ ଗାଁରେ ବିଜୁଳିବତୀ ଏବଂ ପାଇପପାଣି ଘରେଘରେ ଉପଲବ୍ଧ ହେଉଥିବାରୁ, ଏ ସବୁ ରୋଗ ପ୍ରାୟ ନାହିଁ । ଆଗକାଳରେ ପୁରୀରେ ଗୁଣ୍ଡିଚାଯାତ୍ରା ସମୟରେ ବହୁତ ଲୋକ ହଇଜା ରୋଗରେ ମରୁଥିଲେ। ଏ କଥା ଆମେ ପିଲାଦିନେ ଦେଖିଛୁ। ଏବେ ପିଇବା ପାଣି ଓ ଖାଦ୍ୟକୁ ଜଗି ଦେବାରୁ ହଇଜା (ଯାହାକୁ ସେ ସମୟରେ ଗଣ୍ଡିଝାବାଡ଼ି ବୋଲି କହୁଥିଲେ) ତାହା ସମ୍ପୂର୍ଣ୍ଣ ଲୋପ ପାଇଯାଇଛି।

## ମୋ ବାଲ୍ୟ ଜୀବନ

ମୁଁ ଶୈଶବରେ ଅତି ବେମାରିଆ ଥିଲି। ଝାଡ଼ା, ଜର, ବାନ୍ତି ଇତ୍ୟାଦିରେ ପ୍ରାୟ ଦୁଇବର୍ଷ ଭୋଗିଲି। ଗ୍ରାମର ବୈଦ୍ୟ ଚିନ୍ତାମଣି ମିଶ୍ରଙ୍କର ଚିକିତ୍ସା ବ୍ୟତୀତ ମୋର ଜେଠେଇ ଚନ୍ଦ୍ରମଣି ଦେବୀ ମୋତେ କାଖେଇକାଖେଇ ମାଳତିପାଟପୁର ନିକଟସ୍ଥ ଜରକବର ଏବଂ ଆଉ ଗୋଟିଏ କେଉଁ ସ୍ଥାନକୁ ହୁକୁମଦିଆ ଲୋକମାନଙ୍କ ନିକଟକୁ ନେଇ ଝଡ଼ାଫୁଙ୍କା, ଔଷଧ ଏବଂ ଡ଼େଉଁରିଆ ଆଦିର ବ୍ୟବସ୍ଥା କରାଇବା କଥା ମୋର ଏ ପର୍ଯ୍ୟନ୍ତ ମନେପଡୁଛି। ସେତେବେଳେ ଆମଘରେ ମୁଁ ଏବଂ ମୋର ବଡ, ଜେଠେଇ, ତାଙ୍କର ପୁଅ ଜୟକୃଷ୍ଣ, ମୋ ନନାଙ୍କର ଅଶୀ ବର୍ଷର ବିଧବା ଜେଠେଇ ଏବଂ ନାନାଙ୍କର ବିଧବା ସାବତ ମା', ବିଧବା ହୀରାମଣି, ତାଙ୍କର ପୁତ୍ର ପୀତାମ୍ବର ଏବଂ ମୋର ଏକ ଉପରଭାଇ ନୀଳକଣ୍ଠ ଏବଂ ଶଶୀଭୂଷଣ ଆଦି ଥିଲୁ। ଆମର ସମ୍ପତ୍ତିବାଡ଼ି ଯାହାଥିଲା, ତାହା ଅତି ସାଧାରଣ। ସୁତରାଂ ଆମ ନନାଙ୍କ ଉପରେ ଏ ସମସ୍ତଙ୍କର ପ୍ରତିପୋଷଣ ଭାର ପଡିଥିଲା। ମୋ ନନା

ନରସିଂହ ମିଶ୍ର ଅଷ୍ଟମଶ୍ରେଣୀ ଅଧ୍ୟୟନ ପରେ କଟକରେ ନର୍ମାଲ ଟ୍ରେନିଂ ପାସ୍ କରିଥିଲେ । ସେ ସମୟରେ ତାଙ୍କର ପ୍ରଧାନଶିକ୍ଷକ ଥିଲେ ଭକ୍ତକବି ମଧୁସୂଦନ ରାଓ । ଆମ ନନା ସଂସ୍କୃତରେ ଦ୍ୱିତୀୟା ମଧ୍ୟ ପାସ୍ କରିଥିଲେ । ସେ ପ୍ରଥମେ ବାରଟଙ୍କା ବେତନରେ କିଛିକାଳ ଇନିସପେକ୍ଟିଂ ପଣ୍ଡିତ ହିସାବରେ କାର୍ଯ୍ୟକରି ବାଲେଶ୍ୱର ଜିଲ୍ଲାସ୍କୁଲ୍‌ରେ ଡ୍ରଇଂମାଷ୍ଟର ହିସାବରେ ମଧୁସୂଦନ ରାଓଙ୍କ ଦ୍ୱାରା ନିଯୁକ୍ତି ପାଇଥିଲେ । ସେ ଚିତ୍ରାଙ୍କନ ଛଡ଼ା ସ୍କୁଲରେ ମାତୃଭାଷା ଶିକ୍ଷା ଦେଉଥିଲେ । ସେତେବେଳେ ବିଜୁ ପଟ୍ଟନାୟକଙ୍କ ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ବାଲେଶ୍ୱରରେ ମୁନସଫ୍ ଥିଲେ । ଆମ ନନା ତାଙ୍କଘରେ ତାଙ୍କ ପିଲାଙ୍କୁ ଘରୋଇ ଶିକ୍ଷକ ହିସାବରେ ପାଠ ପଢ଼ାଉଥିଲେ ।



# ଦ୍ୱିତୀୟ ଅଧ୍ୟାୟ

# ମୋ ସ୍କୁଲ ଜୀବନ

## ପ୍ରାଥମିକ ସ୍କୁଲ ଶିକ୍ଷା

ବାପାଙ୍କୁ କୁଟୁମ୍ବ ପ୍ରତିପୋଷଣ କରିବାକୁ ପଡୁଥିବାରୁ ସେ ସର୍ବଦା ତାଙ୍କ କର୍ମସ୍ଥଳୀରେ ଏକାକୀ ରହୁଥିଲେ। ଆମ ନନା ଯାଜପୁର ନିକଟସ୍ଥ ଦଶରଥପୁର ଗୁରୁ ଟ୍ରେନିଂସ୍କୁଲରେ ହେଡପଣ୍ଡିତ ଥିଲାବେଳେ ମୁଁ ଏବଂ ବୁଢ଼ୀମା' (ନନାଙ୍କର ଜେଠେଇ) କିଛିକାଳ ତାଙ୍କ ପାଖରେ ଥିଲୁ। ମୁଁ ସେଠାରେ ପ୍ରଥମଶ୍ରେଣୀ ପାଠ ଶେଷକରି ଗାଁକୁ ବୁଢ଼ୀମା'ଙ୍କ ସହିତ ଫେରିଆସିଲି। ଦଶରଥପୁରରେ ଥିବାବେଳେ ମୁଁ ସେ ଗ୍ରାମର ଅନେକ ପିଲାଙ୍କ ସହିତ ସାଙ୍ଗ ହୋଇଥିଲି। କେନାଲରେ ଗାଧୋଇବା, ପହଁରିବା, ବର୍ଷାଦିନେ ପାଣି ଜମା ହୋଇଥିବା ସ୍ଥାନରୁ ବନ୍‌ଶୀଖଡ଼ାରେ ମାଛ ଧରିବା, ବେଳେବେଳେ ବୈତରଣୀ ନଦୀରେ ଗାଧୋଇବା ଏବେ ମଧ୍ୟ ମନେଅଛି। ଗୁରୁ ଟ୍ରେନିଂ ସ୍କୁଲକୁ ଲାଗିରହିଥିବା ମଠରେ ଝୁଲଣଯାତ୍ରା ଦେଖିବା, ଝୁମ୍ପୁଡ଼ି ହାଟରୁ ମୁଆଁକିଣିବା, ଦଶହରାରେ ବଳଦମାନଙ୍କୁ ବେଶ-ପୋଷାକରେ ସଜାସଜିକରି ପ୍ରଦର୍ଶନୀ କରିବା ଏବଂ ଦୋଳି ଖେଳିବା କଥା ଏପର୍ଯ୍ୟନ୍ତ ମୁଁ ଭୁଲିନାହିଁ। କିନ୍ତୁ ପାଠପଢ଼ାବେଳେ ମାଷ୍ଟ୍ରଙ୍କ ମାଡ଼ ମଧ୍ୟ ଏପର୍ଯ୍ୟନ୍ତ ମନେଅଛି।

ତାପରେ ଗାଁରେ ଆସି ଦ୍ୱିତୀୟ ଶ୍ରେଣୀରେ ନାଁ ଲେଖାଇଲି । ଏହା ବୋଧହୁଏ ୧୯୨୬ ମସିହା କଥା। ସେତେବେଳେ ଆମଗାଁ ନିମ୍ନପ୍ରାଥମିକ ବିଦ୍ୟାଳୟରେ ଦୁଇଜଣ ଶିକ୍ଷକ ଥିଲେ। ହେଡପଣ୍ଡିତ ନାରାୟଣ ମିଶ୍ର ପାଉଥିଲେ ମାସିକ ଦରମା ଛଅଟଙ୍କା ଏବଂ ସେକେଣ୍ଡ ପଣ୍ଡିତ ଫକୀର ମିଶ୍ରଙ୍କ ମାସିକ ଦରମା ଥିଲା ଚାରିଟଙ୍କା। ସେତେବେଳେ ପିଲାମାନଙ୍କର ମାସିକ ସ୍କୁଲ ଦେୟ ଥିଲା ଚାରିପଇସା ବା ଛଅପଇସା। କିନ୍ତୁ ଏହି ଦେୟ ସ୍କୁଲର ଅଳ୍ପପିଲା ଦେଉଥିଲେ, କାରଣ ଏହା ବାଧ୍ୟତାମୂଳକ ନଥିଲା। ସେତେବେଳେ ଶିକ୍ଷକମାନେ ବେତ୍ରାଘାତ ଓ ହାତରେ ବିଧା, ଚପୁଡ଼ା ଆଦି ଦ୍ୱାରା ପିଲାଙ୍କୁ ଦଣ୍ଡ ଦେଉଥିଲେ। ପାଠ ପଢ଼େଇବା ଛଡ଼ା ନାରାୟଣ ମିଶ୍ର ପିଲାମାନଙ୍କୁ ରାମାୟଣ, ମହାଭାରତ, ନାନା ପୁରାଣରୁ ମୂଲ୍ୟବାନ ଶିକ୍ଷଣୀୟ କଥା, ବିକ୍ରମାଦିତ୍ୟ ଏବଂ ବେତାଳ ପଞ୍ଚବିଂଶତି ସମ୍ବନ୍ଧରେ ଆମମାନଙ୍କୁ ଅତି ସୁନ୍ଦର ଭାବେ କହୁଥିଲେ।

ଆମଗାଁ ପ୍ରାଇମେରୀସ୍କୁଲ୍ ଗୃହଟି ଗୋଟିଏ ବଡ଼ହଲ୍ ବିଶିଷ୍ଟ ଛଣଛପର ଘରଥିଲା । ସ୍କୁଲ୍‌ର ଆଗପଟକୁ ଗୋଟିଏ ଚଉଡ଼ା ବାରଣ୍ଡା ଥିଲା । ସ୍କୁଲ୍ ଆଗ ଓ ପଛରେ କିଛି ଖୋଲାଜାଗାରେ ଆମେ ଦୌଡ଼ାଦୌଡ଼ି କରୁଥିଲୁ । ଆଗପଟକୁ ନୀଳକଣ୍ଠଙ୍କ ଦେଉଳବେଢ଼ା ଏବଂ ମଣ୍ଡପ ଥିଲା । ଗାଁରେ ତାକୁ ସାନପୋଖରୀ କହୁଥିଲେ ମଧ ଦେଉଳ ଏବଂ ସ୍କୁଲ୍‌କଡ଼କୁ ଲାଗି ଗୋଟିଏ ବଡ଼ପୋଖରୀ ରହିଥିଲା ।

୧୯୨୮ ମସିହାରେ ମୁଁ ଆମ ଗ୍ରାମ ମାଇନର ସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାଁ ଲେଖାଇଲି । ସେତେବେଳେ ସେ ସ୍କୁଲରେ ଚାରିଜଣ ଶିକ୍ଷକ ଥିଲେ । ସେ ମଧ୍ୟରୁ ତିନିଜଣ ଏବଂ ଆମ ଗ୍ରାମର ପ୍ରଧାନଶିକ୍ଷକ ଗଙ୍ଗାଧର ମହାପାତ୍ର ସେକାଳର ଏଫ୍.ଏ. ପାସ୍ କରିଥିଲେ । ଗଙ୍ଗାଧର ମହାପାତ୍ର ସବୁ ବିଷୟରେ, ବିଶେଷତଃ ଇଂରାଜୀରେ ପାରଦର୍ଶୀ ଥିଲେ । ସେ ଜଣେ ଦୀର୍ଘକାୟ, ଗୌରବର୍ଣ୍ଣ ସୁନ୍ଦର ଚେହେରାର ପୁରୁଷ ଥିଲେ । ସେ ହାରମୋନିଅମ୍ ବଜାଇ ଗୀତ ବୋଲୁଥିଲେ ଓ ଆମକୁ ଶିଖାଉଥିଲେ । ସେକେଣ୍ଡମାଷ୍ଟର ଲକ୍ଷ୍ମଣ ଦାସଙ୍କ ଘରଥିଲା ଆଠଗଡ଼ । ସେ ସ୍କୁଲ ହଷ୍ଟେଲରେ ପିଲାମାନଙ୍କ ସହିତ ରହୁଥିଲେ । ପାଠ ପଢ଼ାଇବାରେ ତାଙ୍କର ନିଷ୍ଠା ଅତି ପ୍ରବଳ ଓ ନିର୍ମମ ଥିଲା । ସେ ପିଲାମାନଙ୍କ ଉପରେ ରାଗୁଥିଲେ ଓ ସେମାନଙ୍କୁ ମାରୁଥିଲେ ମଧ୍ୟ ତାଙ୍କ ହୃଦୟ ଥିଲା ଅତି କୋମଳ ଓ ସହାନୁଭୂତିର ଭଣ୍ଡାର । ପିଲାମାନଙ୍କର ଦେହଖରାପ ହେଲେ ସେ ଦିନରାତି ସେମାନଙ୍କର ସେବା କରୁଥିଲେ । ହେଡ଼ପଣ୍ଡିତ ଥିଲେ ଲୋକନାଥ ପାଟଯୋଶୀ । ସେ ଓଡ଼ିଆ ସହିତ୍ୟରେ ଧୁରନ୍ଧର ଥିଲେ ଏବଂ ଲେଖାପଢ଼ା ପ୍ରତି ଅତି ତୀକ୍ଷ୍ଣଦୃଷ୍ଟି ଦେଉଥିଲେ । ଅନେକ ସମୟରେ ସେ ପିଲାମାନଙ୍କୁ ଥଟ୍ଟା ପରିହାସ ଏବଂ ବ୍ୟଙ୍ଗାତ୍ମକ ଭାଷାରେ ଗାଳି ଦେଉଥିଲେ ଅବା ପ୍ରଶଂସା କରୁଥିଲେ । ବୟସାଧିକ୍ୟ ହେତୁ, ସେ ଚଉକିରେ ବସି ପଢ଼ାଉଥିଲେ । ସେ ଯେତେବେଳେ ରାଗିଯାଇ ତାଙ୍କର ଗୋଦର ହାତରେ ମାରୁଥିଲେ, ଛାତ୍ରଛାତ୍ରୀମାନେ ତଳକୁ ମୁହଁପୋତି ହସୁଥିଲେ । କାରଣ ମାଡ଼ କାଟୁ ନଥିଲା ।

ଆମର ଚତୁର୍ଥ ଶିକ୍ଷକ ଥିଲେ ଶ୍ରୀ ନୀଳକଣ୍ଠ ମିଶ୍ର । ସେ ଆମକୁ ଚତୁର୍ଥ ଶ୍ରେଣୀରେ ସବୁଯାକ ଚାଣକ୍ୟଶ୍ଳୋକ ପଢ଼େଇ ଦେଇଥିଲେ ଏବଂ ସେହି ଶ୍ଳୋକ ଗୁଡ଼ିକର ଅର୍ଥ ମଧ ଆମକୁ ବୁଝାଇ ଦେଇଥିଲେ । ଏପର୍ଯ୍ୟନ୍ତ ସେଥିରୁ ବହୁ ଶ୍ଳୋକ ମୋର ମନେଅଛି । ଏହି ବିଶ୍ୱନାଥ ମ.ଇ.ସ୍କୁଲଟି ଅତି ପୁରୁଣା । ଆଠଗଡ଼ର ରାଜା ବିଶ୍ୱନାଥ ଦେଓଙ୍କର ନାମ ଅନୁସାରେ ସ୍କୁଲଟି ସ୍ଥାପିତ ହୋଇଥିଲା । ଏହି ସ୍କୁଲଟି ଆମ ଗାଁର ସ୍ୱନାମଧନ୍ୟ ପଣ୍ଡିତ କାବ୍ୟତୀର୍ଥ ଜଗନ୍ନାଥ ରଥଙ୍କ ଉଦ୍ୟମ ଓ ଚେଷ୍ଟାରେ ହିଁ ସମ୍ଭବ ହୋଇପାରିଥିଲା । ସେତେବେଳେ ପୁରୀ ଜିଲ୍ଲାରେ କେବଳ ଛଅଟି ମାଇନର ସ୍କୁଲ ଥିଲା । ବିଶ୍ୱନାଥ ମ.ଇ. ସ୍କୁଲ ଛଡ଼ା ସାକ୍ଷୀଗୋପାଳ, ନିମାପଡ଼ା, ବାଣପୁର, କାକଟପୁର ଏବଂ ପୁରୀରେ ଗୋଟିଏ ଲେଖାଏଁ ମ.ଇ.ସ୍କୁଲ; ଏହିପରି ଛଅଟି ମାଇନର ସ୍କୁଲ ଥିଲା । ମୁଁ ଭଲ ଗୀତ ବୋଲିପାରେ

ବୋଲି ସଙ୍ଗୀତ, ବିଦାୟ ସଙ୍ଗୀତ ଓ ଅନ୍ୟାନ୍ୟ ଗୀତଗାଏ। ଥରେ ବିଜୁ ପଟ୍ଟନାୟକଙ୍କ ସ୍ୱର୍ଗୀୟ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପୁରସ୍କାର ବିତରଣୀ ଉତ୍ସବରେ ସଭାପତି ହୋଇ ଆସିଥିଲେ। ସେଇ ଉତ୍ସବର ଆବାହନ ସଙ୍ଗୀତରେ ବୋଲାଯାଇଥିବା ଗୀତରୁ ପଦେ ମୋର ମନେଅଛି। ତାହାହେଲା-

"ଲକ୍ଷ୍ମୀ ନାରାୟଣ ଲଭନ୍ତୁ ସମ୍ମାନ
ବହୁଦିନ ଏ ଜଗତେ ରହି।
ତାଙ୍କ ଯଶୋଗୀତି
ଘରେ ଘରେ ବାଜିଉଠୁ ନିତି।"

ସେ କାଳରେ ଶିକ୍ଷାନୁଷ୍ଠାନ ଗୁଡ଼ିକରେ ସାଧାରଣତଃ ଛାନ୍ଦ, ଚଉପଦୀ ଏବଂ ଓଡ଼ିଶୀ ଗୀତ ବିଭିନ୍ନ ରାଗରେ ବୋଲାଯାଉଥିଲା।

## ଫୁଲବାଣୀରେ ମାଧମିକ ଶିକ୍ଷା

ପଞ୍ଚମଶ୍ରେଣୀରେ ୧୯୩୦ ମସିହାରେ ମୁଁ ଗାଁରୁ ଯାଇ ଫୁଲବାଣୀ ମ.ଇ. ସ୍କୁଲରେ ଷଷ୍ଠଶ୍ରେଣୀରେ ନାମ ଲେଖାଇଲି। ଯାଭିତରେ ଆମ ନନା ଦଶରଥପୁର ଗୁରୁ ଟ୍ରେନିଂସ୍କୁଲ ପରେ ଅନୁଗୁଳ ହାଇସ୍କୁଲରେ ଶିକ୍ଷକତା କରି ଫୁଲବାଣୀ ମ.ଇ. ସ୍କୁଲକୁ ହେଡପଣ୍ଡିତ ଭାବରେ ବଦଳି ହୋଇ ଯାଇଥିଲେ। ବୋଧହୁଏ ୧୯୨୯ ମସିହାରେ ସେ ଫୁଲବାଣୀ ବଦଳି ହୋଇ ଯାଇଥିଲେ।

ଫୁଲବାଣୀରେ ସେ ହଷ୍ଟେଲ୍‌ର ଏସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ ହିସାବରେ ୨୫ଟଙ୍କା ଏବଂ ଏଜେନ୍ସି ସ୍ପେସିଆଲ୍ ପେ ୧୦ଟଙ୍କା ଅଧିକା ପାଉଥିଲେ । ସେତେବେଳେ ସେ ହଷ୍ଟେଲ୍‌ରେ ତାଙ୍କପାଇଁ ଉଦ୍ଦିଷ୍ଟ ଗୋଟିଏ ରୁମ୍‌ରେ ରହୁଥିଲେ ଏବଂ ଆଉ ଗୋଟିଏ କୋଠରି ରୋଷେଇଘର ଓ ଭଣ୍ଡାରଘର ହିସାବରେ ବ୍ୟବହାର କରୁଥିଲେ । ମୁଁ ଗାଁ ମାଇନର ସ୍କୁଲରୁ ପଞ୍ଚମଶ୍ରେଣୀର ପାଠସାରି ଷଷ୍ଠଶ୍ରେଣୀରେ ପଢ଼ିବାପାଇଁ ଫୁଲବାଣୀ ଯାଇଥିଲି । ସେତେବେଳେ ଫୁଲବାଣୀକୁ ରାସ୍ତାଥିଲେ ମଧ କାର୍, ବସ୍ ଆଦି ଯିବାର କୌଣସି ବନ୍ଦୋବସ୍ତ ନଥିଲା । ମୁଁ ତାଳଚେର ଟ୍ରେନ୍‌ରେ ମେରାମୁଣ୍ଡଳି ଯାଇ ସେଠାରୁ ଅନୁଗୁଳ ପର୍ଯ୍ୟନ୍ତ ଜଣେ ବଙ୍ଗାଳୀ ଡାକ୍ତରଙ୍କ ସାଙ୍ଗରେ ଫୁଲବାଣୀ ଗଲି । ସେଇ ଡାକ୍ତରବାବୁ କୌଣସିଠାରୁ ଗୋଟିଏ କାର୍ ଭଡ଼ା କରିଥିଲେ । ସେ କାର୍‌ରେ ସେ ଓ ମୁଁ ନୌକା ବନ୍ଦୋବସ୍ତକରି ଟିକରପଡ଼ା ଘାଟରେ କାର ସହିତ ନୌକାରେ ମହାନଦୀ ପାରହେଲୁ । ଘୋର ଅରଣ୍ୟ ମଧ୍ୟଦେଇ ବିଭିନ୍ନ ଘାଟି ଯଥା - ମାଣିପଥର ଓ ଭେଡ଼୍‌ଖୋର ଘାଟି ପାରହୋଇ ଫୁଲବାଣୀରେ ପହଞ୍ଚିଲୁ । ସେତେବେଳର ବିହାର-ଓଡ଼ିଶା ସର୍ଭିସ୍‌ରେ ସେହି ଡାକ୍ତରବାବୁ ବିହାରରେ କୌଣସି ଜାଗାରେ ଚାକିରି କରୁଥିଲେ । କନ୍ଧମାଳର ବାଳନ୍ଦାପଡ଼ା

ଡାକ୍ତରଖାନାକୁ ତାଙ୍କର ବଦଳି ହୋଇଥିଲା । ଫୁଲବାଣୀରୁ ବାଳନ୍ଦାପଡ଼ାକୁ ସେତେବେଳେ ଯଦିଓ ରାସ୍ତାଥିଲା, ତାହାଥିଲା ଭୟଙ୍କର ବନ୍ୟଜନ୍ତୁସଙ୍କୁଳ ଏବଂ ଚାଲିଚାଲି ବାଳନ୍ଦାପଡ଼ା ଯିବାକୁ ପଡୁଥିଲା । ସେତେବେଳେ ବାଳନ୍ଦାପଡ଼ା ପାଖରେ ଥିବା ଗୋଟିଏ ଖରସ୍ରୋତା ପାହାଡ଼ିଆନଈକୁ ସ୍ଥାନୀୟ ଆଦିବାସୀମାନେ ଯାତ୍ରୀମାନଙ୍କୁ କାନ୍ଧରେ ବସାଇ ପାରି କରାଉଥିଲେ । ଆମ କଟକର ସ୍ୱନାମଧନ୍ୟ ଡାକ୍ତର ଗିରିଧାରୀ ମହାପାତ୍ର ମଧ୍ୟ ବାଳନ୍ଦାପଡ଼ାରେ ଡାକ୍ତରଭାବେ କାମ କରୁଥିଲେ ।

ତେବେ କଥାହେଲା, ସେତେବେଳେ ଯଦି ପାଟନା, ରାଞ୍ଚି, କଟକ ବା ପୁରୀରୁ ଡାକ୍ତରମାନେ ଯାଇ ସୁଦୂର ବାଳନ୍ଦାପଡ଼ାରେ ରହିପାରୁଥିଲେ, ଆଜିକାଲି ଗମନାଗମନର ଏତେ ସୁବିଧା ଥିବା ସତ୍ତ୍ୱେ ଆମ ଡାକ୍ତରମାନେ ଅନୁନ୍ନତ ଅଞ୍ଚଳକୁ ଯିବାପାଇଁ ଅମଙ୍ଗ ହେବାର କାରଣ କ'ଣ ?

ସେତେବେଳେ ସାଧାରଣତଃ ଲୋକେ ବ୍ରହ୍ମପୁର ଭଞ୍ଜନଗର ଦେଇ କଳିଙ୍ଗାଘାଟି ପାରହୋଇ ଫୁଲବାଣୀ ଯାଉଥିଲେ । ଟିକାବାଲି ଓ ବାଲିଗୁଡ଼ା ଥିଲା ଗଞ୍ଜାମଜିଲ୍ଲାର ମାଳଅଞ୍ଚଳ (ଏଜେନ୍ସି ଏରିଆ) । ସେତେବେଳେ ଗଞ୍ଜାମ, କୋରାପୁଟ୍ ଜିଲ୍ଲା ଥିଲା ମାଡ୍ରାସ୍ ପ୍ରେସିଡେନ୍‌ସି ଅଧୀନରେ । ସେକାଳରେ ଆମେ ଟ୍ରେନ୍‌ରେ ବ୍ରହ୍ମପୁର ଯାଇ ସେଠାରୁ ବସ୍‌ରେ ଭଞ୍ଜନଗର ଯାଉଥିଲୁ ଏବଂ ଭଞ୍ଜନଗରରୁ ବୋଧହୁଏ ସପ୍ତାହରେ ଦୁଇ-ତିନିଦିନ ଉଦୟଗିରି ଯାଉଥିବା ବସ୍‌ରେ ବସି କଳିଙ୍ଗାଘାଟି ପାରହୋଇ ଉଦୟଗିରି ଛକରେ ଓହ୍ଲାଉଥିଲୁ । ସେଠାରୁ ଶଗଡ଼ରେ ଫୁଲବାଣୀ ଯାଉଥିଲୁ । ବେଳେବେଳେ ଭଞ୍ଜନଗରରୁ କାର୍ ବା ମିନିବସ୍ କରି ଫୁଲବାଣୀ ଯାଉଥିଲୁ । କ୍ୱଚିତ୍ ଲୋକେ ଅନୁଗୁଳରୁ ମଧ୍ୟ ହାଫ୍‌ଟନ୍ ଲରିରେ ବସି ମହାନଦୀ ପାରହୋଇ ଫୁଲବାଣୀ ଆସୁଥିଲେ ।

୧୯୩୬ମସିହାରେ ଓଡ଼ିଶା ପ୍ରଦେଶ ଗଠିତ ହୋଇଯିବାରୁ ଗଞ୍ଜାମ ଜିଲ୍ଲାଟି ଓଡ଼ିଶା ସହିତ ମିଶି ଯାଇଥିଲା ଏବଂ ବ୍ରହ୍ମପୁରରୁ ଫୁଲବାଣୀ ବସ୍‌ସର୍ଭିସ୍ ଆରମ୍ଭ ହେଲା । ମୁଁ ଫୁଲବାଣୀକୁ ୧୯୪୨ମସିହା ପ୍ରାରମ୍ଭରେ ଚାକିରି କରିବାକୁ ଗଲାବେଳେ ପଣ୍ଡା ବସ୍‌ସର୍ଭିସ୍ ଏବଂ ସେରିଫ୍ ବସ୍‌ସର୍ଭିସ୍ ନାମରେ ଦୁଇଟି ବସ୍ ବ୍ରହ୍ମପୁରରୁ ଫୁଲବାଣୀ ଦୈନିକ ଚଳାଚଳ କରୁଥିଲା ।

ଆଗେ କନ୍ଧମାଳ ବୌଦ ରାଜ୍ୟରେ ଥିଲା । କନ୍ଧମେଳି ପରେ ବ୍ରିଟିଶ୍ ସରକାର କନ୍ଧମାଳକୁ ସରକାରଙ୍କ ହସ୍ତମୁଦିମାହାଲ ହିସାବରେ ଆଂଶିକ ବିଚ୍ଛିନ୍ନ ଅଞ୍ଚଳ ଆଖ୍ୟାଦେଇ ନିଜର ପ୍ରତ୍ୟକ୍ଷ ଶାସନରେ ରଖିଲେ । ସେତେବେଳେ କେବଳ ଖାଣ୍ଟି ବ୍ରିଟିଶ୍ ଲୋକେ ବା ଆଙ୍ଗ୍‌ଲୋଇଣ୍ଡିଆନ୍‌ମାନେ କନ୍ଧମାଳର ଏସ୍.ଡି.ଓ. ଓ ସେକେଣ୍ଡ ଅଫିସର ହୋଇପାରୁଥିଲେ । କନ୍ଧମାଳ ଓ ଅନୁଗୁଳ ମିଶି ଅନୁଗୁଳ ଜିଲ୍ଲା ଗଠିତ ହୋଇଥିଲା । ସେତେବେଳେ ଅନୁଗୁଳର ଜିଲ୍ଲାଅଧିକାରୀଙ୍କୁ ଡେପୁଟି କମିଶନର

ବୋଲି କୁହାଯାଉଥିଲା । କେବଳ ଗୋରାଲୋକେ ହିଁ ଡେପୁଟି କମିଶନର ଭାବେ ରହୁଥିଲେ ।

ମୁଁ ଫୁଲବାଣୀରେ ପଢିବାକୁ ଗଲାବେଳକୁ ୧୯୩୦ମସିହାରେ କନ୍ଧମାଳର ଏସ୍.ଡି.ଓ. ଥିଲେ ଏଲ୍‌ଡାରସନ୍ ସାହେବ ଏବଂ ଉଡ୍‌ହାଉସବୋଲି ଜଣେ ଆଙ୍ଗଲୋଇଣ୍ଡିଆନ୍ ଥିଲେ ସେକେଣ୍ଡ ଅଫିସର । ଏହାପୂର୍ବରୁ ଏ.କେ.ଓଲେନ୍‌ବାକ୍ ବୋଲି ଜଣେ ଦୀର୍ଘକାୟ ଆଙ୍ଗଲୋଇଣ୍ଡିଆନ୍ ବହୁବର୍ଷ ଧରି କନ୍ଧମାଳରେ ଏସ୍.ଡି.ଓ. ଥିଲେ । ସେ ଥିଲେ ଅବିବାହିତ ଏବଂ ଆଦିବାସୀମାନଙ୍କ ସହ ଖୁବ୍ ମିଳିମିଶି ଚଳୁଥିଲେ । ସେ କୁଇଭାଷାରେ ଅତି ପାରଙ୍ଗମ ଥିଲେ । ସେତେବେଳେ ଫୁଲବାଣୀ ଟାଉନ ଓ ଗାଁଲୋକଙ୍କ ସଂଖ୍ୟାମିଶି ଥିଲା ପ୍ରାୟ ୧୫୦୦ ।

ମୁଁ ମୋର ନନାଙ୍କ ସହିତ ହଷ୍ଟେଲ୍‌ରେ ରହିଲି ଏବଂ ହଷ୍ଟେଲ୍‌ରେ ଥିବା ପିଲାମାନଙ୍କ ସହ ମିଳିମିଶି ଚଳିଲି । ସେତେବେଳେ ହଷ୍ଟେଲ୍‌ରେ ପ୍ରାୟ ଶହେଜଣ ଛାତ୍ର ରହୁଥିଲେ । ତିନୋଟି ମେସ୍ ଥିଲା । ଗୋଟିଏ କନ୍ଧମେସ୍, ଗୋଟିଏ ଶୁଣ୍ଢିମେସ୍ ଆଉ ଗୋଟିଏ ଶୁଦ୍ଧମେସ୍ । ମେସ୍‌ର ପୂଝାରୀ ପିଲାଙ୍କଠାରୁ ଚାଉଳ ଓ ଡାଲି ଅସୁଲ କରି ରାନ୍ଧେ । କଦବା କ୍ୱଚିତ୍ ଜଣେଜଣେ ପିଲା ତାଙ୍କଘରୁ ଆସିଥିବା ପନିପରିବା ବା କୌଣସି ଜିନିଷ ରୋଷେୟା ଦ୍ୱାରା ଅଲଗା ରାନ୍ଧି ବା ପୋଡ଼ାପୋଡ଼ି କରି ଖାଉଥିଲେ । ପିଲାମାନେ ସାଧାରଣତଃ ଭାତ, ଡାଲି ସାଙ୍ଗରେ ଦନାରେ ଦନାଏ ଲେଖାଏଁ ପେଜ ମଧ୍ୟ ପିଉଥିଲେ । ରୋଷେୟାର ଦରମା, ତେଲ, ଲୁଣ ଓ ମସଲାଖର୍ଚ୍ଚ ମିଶି ପିଲାମାନେ ଜଣପିଛା କେବଳ ଛ'ଅଣା କରି ଦେଉଥିଲେ । ପ୍ରତି ରବିବାର ଦିନ ପିଲାମାନେ ଜଙ୍ଗଲକୁ ଯାଇ ଜାଳିବାପାଇଁ ଶୁଖିଲାଗଛ କାଟି କାନ୍ଧରେ ବୋହିକରି ଆଣୁଥିଲେ । ହଷ୍ଟେଲ୍‌ରେ ପିଇବାପାଣି ପାଇଁ ଗୋଟିଏ ଅତି ଗଭୀର କୂଅ ଥିଲା ଏବଂ ଆଠଟି ପାଇଖାନା ଥିଲା । ପାଇଖାନା ସଫାକରିବା ପାଇଁ ମେହେନ୍ତରାଣିର ବନ୍ଦୋବସ୍ତ ଥିଲା । ହଷ୍ଟେଲ୍‌ର ନିୟମ ଅତି କଡ଼ାକଡ଼ି ଥିଲା । ହଷ୍ଟେଲ୍‌ରେ ଜଣେ ଦରୁଆନ୍ ଓ ଜଣେ ପିଅନ ଥିଲେ । ପଢ଼ାସମୟରେ ଓ ରାତିରେ ଏହାର ଗେଟ୍‌ରେ ତାଲା ପଡୁଥିଲା ।

ସେତେବେଳେ ବୁଧବାରଦିନ ଫୁଲବାଣୀରେ ସାପ୍ତାହିକ ହାଟବସୁଥିଲା । ସେଥିପାଇଁ ସକାଳ ସ୍କୁଲହୋଇ ଅଧାଦିନ ଛୁଟି ହେଉଥିଲା । ହାଟଦିନ ପିଲାମାନଙ୍କର ବାପ,ମା' ବା ଭାଇବନ୍ଧୁ ବହୁସଂଖ୍ୟାରେ ଆସୁଥିଲେ ଏବଂ ପିଲାଙ୍କପାଇଁ ମୁଡ଼ି, ଚୁଡ଼ା ଓ ଋତୁ ଅନୁଯାୟୀ ଆମ୍ବ, ପଣସ ତଥା ଚାଉଳ, ଡାଲି ଓ ଶୁଖୁଆ ଇତ୍ୟାଦି ଆଣିଦେଉଥିଲେ । ସେତେବେଳର ଦରୁଆନ୍ ଯୋଗେଶ୍ୱର ପାତ୍ର ଫୁଲବାଣୀ ସହରର ତଥା କନ୍ଧମାଳର ବହୁ ଅଞ୍ଚଳରେ ବେଶ୍ ଜଣାଶୁଣା ଥିଲା । ସେ ଜଣେ ଦେବୀ ସାଧକ ଏବଂ ଠୁଣ୍‌କାଠୁଣକୀ ଔଷଧ ଏବଂ ଝଡ଼ାଫୁଙ୍କା ଜାଣିଥିଲା । ଫୁଲବାଣୀ ସହରରେ ଏଥିପାଇଁ ଅନେକ ବାବୁଙ୍କ

ଘରେ ତାଙ୍କର ଖୁବ୍ ଆଦର ଥିଲା । ତା'ଛଡ଼ା ସେ ବଢ଼େଇକାମ ଓ କମାରକାମ ମଧ ଜାଣିଥିଲେ । କିନ୍ତୁ ତାଙ୍କର ମଦ୍ୟପାନ ଅଭ୍ୟାସ ମଧ୍ୟ ଥିଲା ।

ସେତେବେଳେ ଏହି ମାଇନର ସ୍କୁଲଟିରେ ଚାରୋଟି ଶ୍ରେଣୀପାଇଁ ଦୁଇଜଣ ଟ୍ରେନିଂ ଗ୍ରାଜୁଏଟ୍, ତିନିଜଣ ଟ୍ରେଣ୍ଡ ମେଟ୍ରିକ୍ ଏବଂ ଜଣେ ସିଲେଇ ଶିକ୍ଷକ ଥିଲେ । ସେତେବେଳେ ଅଧିକାଂଶ ଜାଗାରେ ଟ୍ରେଣ୍ଡ ମେଟ୍ରିକ୍ ପରିବର୍ତ୍ତେ ନର୍ମାଲ୍ ଟ୍ରେନିଂପ୍ରାପ୍ତ ଶିକ୍ଷକ ଥିଲେ । ଆମର ହେଡ୍‌ମାଷ୍ଟର ଦିଗମ୍ବର ଆଚାର୍ଯ୍ୟ ଜଣେ ଦେବୋପମ ବ୍ୟକ୍ତି ଥିଲେ । ସେ ଅତି ସରଳ ଓ ଅମାୟିକ ଥିବା ସଙ୍ଗେସଙ୍ଗେ ଜଣେ ଛାତ୍ରବତ୍ସଳ, କର୍ତ୍ତବ୍ୟପରାୟଣ ଓ ଜଣେ କଠୋର ପ୍ରଶାସକ ମଧ ଥିଲେ । ତାଙ୍କ କ୍ୱାର୍ଟର୍‌ରେ ଥିବା ଜମିରେ ସେ ନିଜେ ଖଟି ନାନା ପନିପରିବା, ଫୁଲଫଳ ଉପୁଜାଉଥିଲେ । ସେତେବେଳେ ପ୍ରଧାନଶିକ୍ଷକ ଏବଂ ଅନ୍ୟ ଶିକ୍ଷକମାନେ ଧୋତି, କମିଜ୍ ଓ କୋଟ୍ ଇତ୍ୟାଦି ପିନ୍ଧୁଥିଲେ । ଆମର ଆସିଷ୍ଟେଣ୍ଟ ହେଡ୍‌ମାଷ୍ଟର୍ ଥିଲେ ଦିଗମ୍ବର କର । ସେ ଥିଲେ ବି.ଏ.ଏଲ୍.ଟି ଏବଂ ଜଣେ ଉତ୍ତମ ଶିକ୍ଷକ ।

ସ୍କୁଲର ଫୁଟ୍‌ବଲ୍ ପଡ଼ିଆଟି ସାମାନ୍ୟ ଦୂରରେ ଥିଲା । ପଡ଼ିଆଟି ଗୁଗୁଡିଆ ଥିବାରୁ ଆମେ ଅନେକ ସମୟରେ ଖେଳିଲାବେଳେ ପଡ଼ିଯାଇ ଖଣ୍ଡିଆଖାବରା ହୋଇଯାଉଥିଲୁ । ସେତେବେଳେ ଆମେ ଫୁଟ୍‌ବଲ୍ ଓ କେବେ କେବେ ବେଡ୍‌ମିଣ୍ଟନ ଖେଳୁଥିଲୁ ।

**ସ୍କୁଲବଗିଚା ଓ ପରିବା ଚାଷ :** ସ୍କୁଲ ପଛପଟକୁ ପ୍ରାୟ ଏକ ଏକରର ଗୋଟିଏ ବଗିଚା ଥିଲା। ସେଇଠି ଦୁଇଟି ପକ୍କା କୂଅ ଥିଲା । କୂଅ ଦିଓଟି ଇଟା ପଥର ବଦଳରେ କାଠଗଡ଼ ଦ୍ୱାରା ବନ୍ଧା ହୋଇଥିଲା। ପିଲାମାନେ ଟେଣ୍ଡାରେ ପାଣି ମଡାଉଥିଲେ। ସେତେବେଳେ ବଗିଚାଟିରେ ପିଲାମାନେ ଜହ୍ନି ଭେଣ୍ଡିଠାରୁ ଆରମ୍ଭ କରି ଟମାଟୋ, ଫୁଲକୋବି ନାନାପ୍ରକାର ଶାଗ ଇତ୍ୟାଦି କରୁଥିଲେ। କେତେଗୁଡ଼ିଏ ପିଜୁଳି ଗଛ ମଧ୍ୟ ଥିଲା।

ସେତେବେଳେ ଗଡ଼ଜାତ ଏବଂ ଅନୁଗୁଳ ଓ କନ୍ଧମାଳର ସ୍କୁଲଗୁଡ଼ିକ ଇଷ୍ଟାର୍ନ ଷ୍ଟେଟ୍‌ଏଜେନ୍ସିର ଇନ୍‌ସ୍‌ପେକ୍ଟରଙ୍କର ପରିଚାଳନାଧୀନ ଥିଲା। ତତ୍‌କାଳୀନ ଇନ୍‌ସ୍‌ପେକ୍ଟର ଥିଲେ ଡି.ପି. ସାହେବ । ତାଙ୍କ ଅମଳରେ ଏଇସବୁ ଅଞ୍ଚଳରେ ପ୍ରତ୍ୟେକ ପ୍ରାଇମେରୀ ଏବଂ ମାଇନର ସ୍କୁଲ ମାନଙ୍କରରେ ପ୍ରଚୁର ପନିପରିବା ଏବଂ ଫଳମୂଳ ହେଉଥିଲା। ସ୍କୁଲ ଗୁଡ଼ିକରେ ବଗିଚା ପାଇଁ ଯଥେଷ୍ଟ ଜମି ଥିଲା। ଏଇ ଅଞ୍ଚଳରେ ସ୍କୁଲ ଗୁଡ଼ିକରେ ପନିପରିବା ଓ ଫଳମୂଳ କରିବାର ପରମ୍ପରା ବହୁତଦିନ ଧରି ରହିଥିଲା। ୧୯୪୩-୪୪ ମସିହାରେ ଫୁଲବାଣୀରେ ଶିକ୍ଷକ ଥିଲାବେଳେ ମଧ୍ୟ ମୁଁ ଦେଖିଛି, ଜଣେ ପ୍ରାଥମିକ ଶିକ୍ଷକ, ତାଙ୍କନାମ ତୀର୍ଥ ସାହୁ, ବର୍ଷକୁ ୫୦୦ଟଙ୍କାର ପରିବା ବିକୁଥିଲେ। ସେତେବେଳେ ଆଳୁ ଟମାଟୋ ବିଶା (ବାଲେଶରି ଦେଢ଼ସେର) ଥିଲା ଅଢ଼େଇପଇସା, ତିନିପଇସା।

ଋରି ସେରିଆ, ପାଞ୍ଚ ସେରିଆ ବନ୍ଧାକୋବି, ଗୋଟାକୁ ତିନିଋରି ପଇସା । ସୁତରାଂ ସେତେବେଳର ତୀର୍ଥମାଷ୍ଟରଙ୍କର ୫୦୦ଟଙ୍କା ପରିବା ବର୍ତ୍ତମାନ ହିସାବରେ ପ୍ରାୟ ୪୦/ ୫୦ ହଜାର ଟଙ୍କା ହେବ। ସେତେବେଳେ ଯେଉଁଯେଉଁ ବଡ଼ ଅଫିସର ଫୁଲବାଣୀ ଯାଉଥିଲେ ସେମାନଙ୍କର କେମ୍ପକୁ ପନିପରିବା ଯୋଗାଇବା କାମ ଥିଲା ପ୍ରାଇମେରୀ ସ୍କୁଲ ଶିକ୍ଷକମାନଙ୍କର । ସୁତରାଂ ଶିକ୍ଷକମାନେ ସ୍ଥାନୀୟ ଅଫିସର ଓ ବାହାର ଅଫିସରମାନଙ୍କୁ ସାମୟିକ ପରିବା ଉପହାର ଦେଇ କିଛିକିଛି ପରିବା ବିକ୍ରିଲବ୍ଧ ଧନ ସ୍କୁଲରେ ଲଗାଉଥିଲେ। ପରବର୍ତ୍ତୀ କାଳରେ ମୁଁ ଏଇ ମାଇନର ସ୍କୁଲରେ ଶିକ୍ଷକ ହିସବାରେ ପାଞ୍ଚବର୍ଷ ରହି ୧୯୪୭ ମସିହାରେ ସ୍କୁଲ ଛାଡ଼ିବା ପର୍ଯ୍ୟନ୍ତ ସ୍କୁଲ ବଗିଋଟି ଅକ୍ଷୁଣ୍ଣ ଥିଲା । ସେ ସମୟରେ ଜଣେ ଶିକ୍ଷକ ଟ୍ରେନିଂପାଇ ଉକ୍ତ ବଗିଋରେ ମହୁଋଷ ମଧ୍ୟ ଆରମ୍ଭ କରିଥିଲେ। କିନ୍ତୁ ହାଇସ୍କୁଲ ହୋଇ ସାରିବା ପରେ ବଗିଋ କାମଟି ବନ୍ଦ ହୋଇ ଗଲା ଏବଂ ସେଇ ଜମି ସରକାର ଘର ତିଆରି କରିବାକୁ ଲୋକମାନଙ୍କୁ ଦେଇ ଦେଲେ।

**ସ୍କୁଲ ଏବଂ ଅନ୍ୟାନ୍ୟ ବ୍ୟବସ୍ଥା :** ସେତେବେଳେ କନ୍ଧମାଳରେ ଜଣେ ସ୍କୁଲ ସବ୍‌ଇନ୍ସପେକ୍ଟର ଏବଂ ଅନୁଗୁଳରେ ଜଣେ ଡେପୁଟି ଇନ୍‌ସ୍‌ପେକ୍ଟର ରହୁଥିଲେ। ଫୁଲବାଣୀ ମାଇନର ସ୍କୁଲଟି ଡେପୁଟି ଇନ୍‌ସ୍‌ପେକ୍ଟରଙ୍କ ପରିଦର୍ଶନ ଭୁକ୍ତ ଥିଲା। ଡେପୁଟି ଇନ୍‌ସ୍‌ପେକ୍ଟର ଫୁଲବାଣୀ ଆସି ସୁପରିନ୍‌ଟେଣ୍ଡେଣ୍ଟ ହିସାବରେ ମାଇନର ପରୀକ୍ଷା ପରିଋଳିତ କରୁଥିଲେ।

ମାଇନର ସ୍କୁଲକୁ ଲାଗି ଗୋଟିଏ ଇ.ଟି.ସ୍କୁଲ (ଏଲିମିନେଟାରୀ ଟ୍ରେନିଂ ସ୍କୁଲ) ଏବଂ ଉଚ୍ଚ ପ୍ରାଇମେରୀ ସ୍କୁଲ ଥିଲା। ସେତେବେଳେ ଫୁଲବାଣୀ, ଫିରିଙ୍ଗିଆ, ଖଜୁରୀପଡ଼ା ଏବଂ ଗୋଛାପଡ଼ାରେ ଉଚ୍ଚପ୍ରାଥମିକ ବିଦ୍ୟାଳୟ ଥିଲା। ଏଇ ସ୍କୁଲରେ ପିଲାମାନେ ଫୁଲବାଣୀରେ ବାର୍ଷିକ ପରୀକ୍ଷା ଦେଉଥିଲେ ଏବଂ କେତେକ ଛାତ୍ରଙ୍କୁ ବୃତ୍ତି ଦିଆଯାଉଥିଲା। ପ୍ରତିବର୍ଷ ମାଇନର ସ୍କୁଲଘରେ ଜଣେ ଆଦିବାସୀ ଛାତ୍ର ଏବଂ ଜଣେ ଅଣଆଦିବାସୀ ଛାତ୍ର ଟ.୧୦/-ଲେଖାଏଁ ବୃତ୍ତି ପାଉଥିଲେ। ମୁଁ ଅଣ ଆଦିବାସୀ ଛାତ୍ର ହିସାବରେ ୧୦ଟଙ୍କା ବୃତ୍ତିପାଇ ପୁରୀ ଜିଲ୍ଲାସ୍କୁଲକୁ ପଢିବା ପାଇଁ ଯାଇଥିଲି।

ସେସମୟରେ ଯଦିଓ ସ୍କୁଲ, ଡାକ୍ତରଖାନା, ପୁଲିସ୍ ଆଦି ସଂଯୁକ୍ତ ଡିପାର୍ଟମେଣ୍ଟ ଅଧୀନରେ କାର୍ଯ୍ୟ କରୁଥିଲେ, ତଥାପି ଏସ୍.ଡି.ଓ.ଙ୍କର ପ୍ରତି ଅନୁଷ୍ଠାନ ଉପରେ ଯଥେଷ୍ଟ କର୍ତ୍ତୃତ୍ୱ ଥିଲା। ଏସ୍.ଡି.ଓ., ସେକେଣ୍ଡ ଅଫିସର ଥିଲେ ଏକାଙ୍ଗ ଚକ୍ରବର୍ତ୍ତୀ। ସେମାନେ ତାଙ୍କ କୋର୍ଟରେ ମନମୁତାବକ ସବୁ ବିଚାର କରୁଥିଲେ। କେହି ଓକିଲ ନ ଥିଲେ । ସେତେବେଳେ କନ୍ଧମାଳରେ ବେଠି ପ୍ରଥା ପ୍ରଚଳିତ ଥିଲା। ଏହି ପ୍ରଥା ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ମଧ୍ୟ କେତେବର୍ଷ ଧରି ରହିଥିଲା। ଗାଁର ସ୍କୁଲଘର, ଛପର ମରାମତି, ବାଡ଼ବୁଜା ଇତ୍ୟାଦି ଗ୍ରାମବାସୀମାନଙ୍କର କାର୍ଯ୍ୟ ଥିଲା। ରାସ୍ତା ତିଆରି ଏବଂ ନାନା ସରକାରୀ କାମ ଲୋକେ ବେଠିରେ କରୁଥିଲେ। ଦରକାର ପଡ଼ିଲାବେଳେ ପରିଦର୍ଶନରେ ଆସିଥିବା

ସରକାରୀ କର୍ମଚାରୀ ଏବଂ ଫୁଲବାଣୀରେ ଥିବା ସରକାରୀ କର୍ମଚାରୀଙ୍କୁ ମଧ ଲୋକେ ବେଠିରେ ସାହାଯ୍ୟ କରୁଥିଲେ। ବଡ଼ ବଡ଼ କାମ ଗୁଡ଼ିକରେ ଯଥା, ରାସ୍ତା ତିଆରି ବା ଡାକବଙ୍ଗଳା ଓ ସରକାରୀ ଘର ତିଆରିରେ ବେଠିରେ ଖଟୁଥିବା ଲୋକଙ୍କୁ କିଛି ଆର୍ଥିକ ସାହାଯ୍ୟ ଦିଆଯାଉଥିଲା । ମୋ ଶୁଣିବାରେ, ସେ ଆର୍ଥିକ ସାହାଯ୍ୟରେ ସେମାନଙ୍କର ଧୁଙ୍ଗିଆ ବା ପିକା ଖର୍ଚ୍ଚ ଏବଂ ଯିବାଦିନ ନେଳାଛା ମାରି ଭୋଜି କରିବାର ଖର୍ଚ୍ଚ ଉଠି ଯାଉଥିଲା। ବେଠି କାମ ଗାଁ ଲୋକେ ପାଳି କରି କରୁଥିଲେ। ଏକାଦି କ୍ରମେ ବହୁଦିନଧରି ଲୋକଙ୍କୁ କାମ କରିବାକୁ ପଡୁନଥିଲା। ବେଠି କରୁଥିବା ଲୋକମାନଙ୍କୁ ଖଜଣା ବା ଅନ୍ୟ କୌଣସି ସରକାରୀ ଦେୟ ଦେବାକୁ ପଡୁନଥିଲା। ମୁଁ ଫୁଲବାଣୀରେ ଚାକିରି କଲାପରେ ୧୯୪୭ ମସିହା ପର୍ଯ୍ୟନ୍ତ ବେଠି ପ୍ରଥା ପ୍ରଚଳିତ ଥିବାର ଦେଖିଛି।

ଫୁଲବାଣୀରେ ପାଠ ପଢିବାବେଳେ ପ୍ରାଥମିକ ଶିକ୍ଷା ଏକ ପ୍ରକାର ବାଧ୍ୟତାମୂଳକ ଥିଲାବୋଲି କହିବାକୁ ହେବ। ପିଲାମାନେ ପାଠ ଛାଡ଼ି ଦେଲେ, ବାପା, ମାଆ ଆଉ ଶିକ୍ଷକମାନଙ୍କୁ ଦଣ୍ଡ ମିଳୁଥିଲା। ତତ୍କାଳୀନ ଗୋରା ଏସ୍.ଡ଼ି.ଓମାନେ ଶିକ୍ଷାପ୍ରତି ବିଶେଷ ନଜର ଦେଉଥିଲେ । ସ୍କୁଲରେ ଫଳ ଓ ପନିପରିବା ଯଥା, ଅମୃତଭଣ୍ଡା, ପିଜୁଳି, ଆମ୍ବ, ପଣସ ଆଦି ଗଛ ଲଗାଇବା ବାଧ୍ୟତାମୂଳକ ଥିଲା। ଏସବୁ ନ ଲଗାଇଲେ ଶିକ୍ଷକମାନଙ୍କୁ ଚାରିଅଣା, ଆଠଅଣା ଫାଇନ୍ କରାଯାଉଥିଲା। ମୁଁ ଶୁଣିବାକୁ ପାଇଥିଲି ଯେ, ଥରେ ଜଣେ ଶିକ୍ଷକ ତାଙ୍କ ସ୍କୁଲରେ ଅମୃତଭଣ୍ଡା ଆଉ ସଜନା ଗଛ ନ ଲଗାଇଥିବାରୁ ଏସ୍.ଡ଼ି.ଓ. ତାଙ୍କ ନିଜ କାରରେ ଶିକ୍ଷକଙ୍କୁ ଆଣି ଗୋଟିଏ ଦିନ ଜେଲରେ ରଖାଇ ଦେଉଥିଲେ। ସେତେବେଳେ ଏସ୍.ଡି.ଓ. ଓ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ.ଙ୍କର ଦୁଇଟି କାର ସାରା କନ୍ଧମାଳରେ ଥିଲା ।

ମାଇନର ସ୍କୁଲରୁ ପିଲାମାନେ ଗାଁକୁ ଛୁଟିରେ ଯାଇ ଠିକ୍ ସମୟରେ ନଫେରିଲେ ସେମାନଙ୍କ ଘରକୁ ଛାଟିଆ (ପିଆଦା) ପଠା ଯାଇଉଥିଲା। ଦଣ୍ଡ ସ୍ୱରୂପ ପିଲାଙ୍କ ବାପାମାନଙ୍କୁ ବେଠି କରିବାକୁ ପଡୁଥିଲା ।

କନ୍ଧମାଳର ଏସ୍.ଡି.ଓ. ଏବଂ ପାଦ୍ରୀମାନଙ୍କ ଚେଷ୍ଟାରେ ତଥା ଯତ୍ନରୁ ନାନା ପ୍ରକାର ପନିପରିବା ଉତ୍ପାଦନ ହେଉଥିଲା । ସାଧାରଣ ଲୋକେ ମଧ୍ୟ ବହୁ ପ୍ରକାରର ପନିପରିବା ଯଥା କୋବି, ଟମଟୋ, ବିନସ୍, ନାନାପ୍ରକାର ଶାଗ କରୁଥିଲେ । ସେ କାଳରେ ମଧ୍ୟ କନ୍ଧମାଳରେ ଆଳୁ ବିଶେଷ ପରିମାଣରେ ଅମଳ କରାଯାଇପାରୁଥିଲା ଏବଂ ଏଥିଯୋଗୁଁ କନ୍ଧମାଳକୁ Ireland of Orissa କୁହାଯାଉଥିଲା। କିନ୍ତୁ ବଉଦରୁ ଚାଉଳ, ଡ଼ାଲି, ଗୁଡ଼, ଚୁଡ଼ା ଓ ଛୋଟ ଶୁଖିଲା ମାଛ ଆସି ଫୁଲବାଣୀ ହାଟରେ ବିକ୍ରୟ ହେଉଥିଲା। ଖରାଦିନେ କିନ୍ତୁ ଫୁଲବାଣୀରେ କୌଣସି ପନିପରିବା ମିଳେ ନାହିଁ। ଆମେ କେବଳ ଆଳୁ, ବଡ଼ି, ପଣସକଠା, ବରଡ଼ାଶାଗ ଓ ଗିରିଡଫୁଲ ଉପରେ ନିର୍ଭର କରୁଥିଲୁ । ଫୁଲବାଣୀର ପଣସ ଓ ଅମୃତଭଣ୍ଡା ଜୀବନରେ ଭୁଲି ହେବନାହିଁ। ଗୋଟିଏ ଗୋଟିଏ

ଅମୃତଭଣ୍ଡା । ୧୦/୧୫ କିଲୋ ହେବାର ଦେଖାଯାଇଛି । ସେତେବେଳେ ଗାଁର ଲୋକେ ପାଚିଲା ପଣସର କୋଷା ଗୁଡ଼ିକ ଶୁଖେଇ କରି ରଖି ବର୍ଷାଋତୁରେ ମଧ୍ୟ ଖାଉଥିଲେ ।

ବଡଦିଆ ଗୁଡ଼ିଆମାନେ ରସଗୋଲା ବିକ୍ରି କରିବାକୁ ଆଣୁଥିଲେ । ରସଗୋଲା ଗୁଡ଼ିକ ଟିକିଏ ସଫା ଗୁଡ଼ରେ ତିଆରି ହେଉଥିଲା । ଆମେ ପିଲାଏ ପଇସା ଦେଇ ରସଗୋଲା ଖାଇବାକୁ ଭଲପାଉଥିଲୁ । ଫୁଲବାଣୀରେ ଦୁଇତିନି ଘର ମୋଚି ରହୁଥିଲେ । ସେମାନେ ବିନା ଟ୍ରେନିଂରେ ଗୋରୁ ଚମଡ଼ାରେ ଯୋତା, ଚପଲ ଇତ୍ୟାଦି ତିଆରି କରି ବିକୁଥିଲେ । ଚପଲର ଦାମ୍‌ଥିଲା ଛଅଅଣା, ହାପ ସୁର ଦାମଥିଲା ବାରଅଣା, ଚଉଦଅଣା ଏବଂ ଫୁଲସୁର ଦାମ୍ ଥିଲା ଟଙ୍କା ଦେଢ଼ଟି ଭିତରେ । ମୁଁ ପ୍ରଥମେ ଫୁଲବାଣୀରେ ହିଁ ପ୍ରଥମ କରି ଚପଲ ଓ ଯୋତା ପିନ୍ଧିଲି ।

ସେତେବେଳେ ସରକାର ସାଧାରଣ କର୍ମଚାରୀମାନଙ୍କୁ ଜାଗା ଦେଉଥିଲେ ଘର କରିବାକୁ । ସେମାନେ ଘର ତିଆରିକରି ରହୁଥିଲେ ଏବଂ ସେ ଘରକୁ ବିକ୍ରି କରି ପାରୁଥିଲେ । ଶିକ୍ଷକମାନେ ରହୁଥିବା ସାହିଟିକୁ ମାଷ୍ଟରପଡ଼ା ବୋଲି କୁହାଯାଉଥିଲା ।

**ଆଉ ଗୋଟିଏ ଦିନର ଘଟଣା :** ଥରେ ଏଣ୍ଡରସନ୍ ସାହେବ ପ୍ରାତଭ୍ରମଣରେ ଗଲାବେଳେ ସ୍କୁଲପାଖରେ ଠିଆହୋଇଥିବା ଗୋଟିଏ ପିଲାକୁ ଦେଖିଲେ । ପିଲାଟି ସାହେବଙ୍କୁ ନମସ୍କାର ନକରିବାରୁ ହେଡ଼ମାଷ୍ଟରଙ୍କୁ ଡକାଇ ପିଲାଟିକୁ ସାବଧାନ କରାଇଦେବାପାଇଁ କହିଲେ ଏବଂ ପିଲାମାନଙ୍କୁ ପଦସ୍ଥ ଲୋକ ଦେଖିଲେ ନମସ୍କାର କରିବାକୁ କହିଲେ । ସ୍କୁଲ ହଷ୍ଟେଲର ଅନତି ଦୂରରେ ଗୋଟିଏ ଉଚ୍ଚ ଜାଗାରେ ଏକ ଡାକବଙ୍ଗଳା ରହିଥିଲା । ଏଣ୍ଡରସନ୍ ସେ ବଙ୍ଗଳାର ଚାରିପାଖ ବୁଲି କୌଣସି ଲୋକ ଝାଡ଼ାଫେରିଥିବାର ଦେଖିଲେ । ପିଲାମାନେ ବାହାରେ ଝାଡ଼ା ଫେରୁଥିବା ସନ୍ଦେହ କରି ହେଡ୍‌ମାଷ୍ଟରଙ୍କୁ ଡକାଇ ଅନୁସନ୍ଧାନ କରିବାକୁ କହିଲେ । ଯେ ପର୍ଯ୍ୟନ୍ତ ହଷ୍ଟେଲର ଛାତ୍ରମାନେ ଦୋଷ ସ୍ୱୀକାର କରିନାହାନ୍ତି, ସେପର୍ଯ୍ୟନ୍ତ ଛାତ୍ରାବାସରେ ହୋଇଥିବା ଗଣେଶପୂଜାର ମୂର୍ତ୍ତି ବିସର୍ଜନ ଶୋଭାଯାତ୍ରା ହୋଇପାରିବ ନାହିଁ ବୋଲି ଆଦେଶ ଦେଇଥିଲେ । କିନ୍ତୁ ପ୍ରକୃତରେ ପିଲାମାନେ କେହି ବାହାରେ ଝାଡ଼ା ଫେରିନଥିଲେ । ସୁତରାଂ ସେମାନଙ୍କ ମଧରେ ଚହଳ ପଡ଼ିଯାଇଥିଲା । ସେମାନେ ତତ୍‌ପରଦିନ ଡାକବଙ୍ଗଳାର ଚାରିଦିଗରେ ପହରାଦେଇ ଗୋଟିଏ ବାହାର ଲୋକକୁ ଝାଡ଼ା ଫେରୁଥିବା ଦେଖି ତାକୁ ମାଡ଼ିବସିଥିଲେ ଏବଂ ଏଣ୍ଡରସନ୍ ସାହେବଙ୍କୁ ଖବର ଦେଇଥିଲେ । ସାହେବ ଉକ୍ତ ଲୋକଟି ପ୍ରତି ଦଣ୍ଡବିଧାନ କରି ମୂର୍ତ୍ତି ବିସର୍ଜନ ପାଇଁ ଅନୁମତି ଦେଇଥିଲେ ।

**ଚାରିଜାତିର ଲୋକ :** କନ୍ଧମାଳରେ ସାଧାରଣତଃ ଚାରିଜାତିର ଲୋକେ ଥିଲେ । ସେମାନେ ହେଲେ କନ୍ଧ, ପାଣ, ଶୁଣ୍ଢି ଏବଂ ଶୂଦ୍ର । କନ୍ଧମାନେ ବଡ ସରଳ ଓ ବେପରବାୟ ଲୋକ । ମଦ ପିଇବା ଏବଂ ନାଚ କରିବା ତାଙ୍କ ସମାଜରେ ବିଶେଷ

ପ୍ରଚଳିତ ଥିଲା। ଅରିଆନାଚ, ଧାଙ୍ଗଡ଼ୀନାଚ ବିଶେଷ ପର୍ବପର୍ବାଣୀ ଛଡ଼ା ଅନ୍ୟ ସମୟରେ ମଧ୍ୟ ତାଙ୍କର ଦୈନନ୍ଦିନ ଜୀବନର ଗୋଟିଏ ଅଙ୍ଗ ହୋଇଯାଇଥିଲା । କେଡୁ ଓ ଝାଗଡ଼ି ଥିଲା ଦୁଇଟି ବିଶେଷ ପର୍ବ। ନରବଳି ବଦଳରେ ଘୁଷୁରୀକୁ ଗୋଡ଼େଇ ମାରିବାର ପର୍ବଟି ହେଲା କେଡୁ ଏବଂ ଗୋଟିଏ ପୋଡ଼କୁ ବାନ୍ଧି ଗୋଟିଏ ନିର୍ଦ୍ଦିଷ୍ଟ ବିଧି ଅନୁସାରେ ତାକୁ ହତ୍ୟା କରିବାର ପର୍ବଟି ହେଲା ଝାଗଡ଼ି। ଏଥିରେ ଗ୍ରାମବାସୀମାନେ ପ୍ରାୟ ତିନି ଚାରିଦିନ ମଦ୍ ପିଇ ନାଚୁଥିଲେ। ସେତେବେଳେ କନ୍ଧମାନଙ୍କର ଖାଦ୍ୟ ଥିଲା ଚାଉଳ ଏବଂ ମକ୍କା। ପଶୁ ପକ୍ଷୀ ଶିକାର ମଧ୍ୟ ଏମାନେ କରୁଥିଲେ। ଏମାନଙ୍କର ଭାଷାଥିଲା କୁଇ ଭାଷା । ତତ୍କାଳୀନ ଖ୍ରୀଷ୍ଟିଆନ୍ ପାଦ୍ରୀମାନେ ରୋମାନ ଲିପିରେ କୁଇ ଭାଷାରେ ପିଲାଙ୍କ ପଢ଼ିବା ବହି ଲେଖି ଛାପିଥିଲେ। ସରକାରୀ କର୍ମଚାରୀମାନେ କୁଇ ଭାଷାରେ ପରୀକ୍ଷା ଦେଇ ପାସ କଲେ ସେମାନଙ୍କୁ ପୁରସ୍କାର ମିଳୁଥିଲା। ଏହି ପ୍ରଥା ବହୁ ଦିନ ପର୍ଯ୍ୟନ୍ତ କନ୍ଧମାଳର ଏବଂ ଅନ୍ୟାନ୍ୟ ଏଜେନ୍ସି ଅଞ୍ଚଳରେ ପ୍ରଚଳିତ ଥିଲା।

କନ୍ଧମାଳରେ କନ୍ଧ ଜାତିର ଲୋକସଂଖ୍ୟା ତଳକୁ ଥିଲା ପାଣ ଜାତିର ଲୋକସଂଖ୍ୟା । ପାଣମାନେ ସାଧାରଣତଃ ଭୂମିହୀନ । ସେମାନେ ଅତ୍ୟଧିକ ଭାବରେ ବୁଦ୍ଧିମାନ ଏବଂ ସେମାନଙ୍କର କଥାବାର୍ତ୍ତା ଏବଂ ଚାଲିଚଳଣ ବାହାରୁ ଦେଖିବାକୁ ଗଲେ ଅତିବ ମାର୍ଜିତ । କିନ୍ତୁ ସେମାନଙ୍କର ବ୍ୟବସାୟ ହେଲା ଅନ୍ୟମାନଙ୍କୁ ଠକିବା ଓ ଶୋଷଣ କରିବା। ପାଣମାନେ ଧୂର୍ତ୍ତ ଏବଂ ଦୁର୍ନୀତିରେ ଆଶ୍ରୟ ନିଅନ୍ତି ବୋଲି ସମସ୍ତଙ୍କର ବଦ୍ଧମୂଳ ଧାରଣା । କିନ୍ତୁ ସେମାନଙ୍କର ଏପରି ଆଚରଣର କାରଣ ଚିନ୍ତା କରିବାର କଥା । କାରଣ ହେଲା, ସବୁ ଜାତିର ଲୋକେ ଏମାନଙ୍କୁ ଜାତି ହିସାବରେ ଘୃଣା କରନ୍ତି ଏବଂ ଏମାନଙ୍କ ମଧ୍ୟରେ ପ୍ରାୟ ସମସ୍ତେ ଭୂମିହୀନ ଏବଂ ଗରିବ । ତେଣୁକରି ଏମାନେ ବୁଦ୍ଧି ବଳରେ ଅନ୍ୟକୁ ଶୋଷଣ କରି ବଞ୍ଚିବାର ଉପାୟ ଅବଲମ୍ବନ କରିବାକୁ ବାଧ୍ୟ ହୁଅନ୍ତି। ଏମାନେ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ଦ୍ୱାରା ଶିକ୍ଷିତ ଏବଂ ଉପାର୍ଜନକ୍ଷମ ହୋଇପାରିଥିବାରୁ ଖ୍ରୀଷ୍ଟଧର୍ମ ଗ୍ରହଣକରି ସୁଶୃଙ୍ଖଳିତ ଜୀବନଯାପନ କରିବାକୁ କେତେକ ପରିମାଣରେ କ୍ଷମ ହୋଇଛନ୍ତି । ଏଥିରେ ଅନ୍ୟମାନେ କ୍ଷୋଭ ପ୍ରକାଶ କରିବାର ଅବକାଶ ନାହିଁ।

ଶୁଣ୍ଡିଜାତିର ଲୋକମାନେ ବାହାର ଅଞ୍ଚଳରୁ ଯାଇ ଆଦିବାସୀ କନ୍ଧମାନଙ୍କୁ ମଦ ଯୋଗାଇ ସେମାନଙ୍କୁ ଶୋଷଣ କରୁଥିଲେ ଏବଂ ସେମାନଙ୍କଠାରୁ ବହୁ ଜମି ଅକ୍ଳେଶରେ ନେଇ ଯାଇଥିଲେ। ବର୍ତ୍ତମାନ ସେ ଅବସ୍ଥା ନାହିଁ। ବର୍ତ୍ତମାନ ସରକାର ମଦଭେଣ୍ଡର ମାନଙ୍କ ଜରିଆରେ ମଦ୍ୟ ଯୋଗାଣର ବନ୍ଦୋବସ୍ତ କରୁଥିବାରୁ କେବଳ ଆଦିବାସୀ ନୁହେଁ, କନ୍ଧମାଳର ବହୁ ଲୋକଙ୍କର ଜୀବନ ଅତି ଦୁଃଖଦାୟକ ହୋଇଛି । ଏହି ବିଷୟରେ ମାଳ ଅଞ୍ଚଳରେ ବହୁ ଆନ୍ଦୋଳନ, ବିଶେଷ ଭାବରେ ମହିଳାମାନଙ୍କ ଦ୍ୱାରା ହେଉଥିଲେ ମଧ୍ୟ ସରକାରୀ ଆୟ ଦୃଷ୍ଟିରୁ ଆମ ସରକାରମାନେ ନିଶା ନିବାରଣ ପ୍ରତି ଧ୍ୟାନ ନଦେବା

ଅତି ପରିତାପର ବିଷୟ । ଶୁଦ ଶବ୍ଦଟି ବୋଧ ହୁଏ ଶୁଦ୍ର ଶବ୍ଦରୁ ଉତ୍ପନ୍ନ ହୋଇଛି। ସେମାନେ ଅର୍ଥାତ୍ ଶୁଦ୍ରମାନେ ସାଧାରଣତଃ ଚଷୀ ଓ ବ୍ୟବସାୟୀ ସମ୍ପ୍ରଦାୟର ଲୋକ।

ଉପକୂଳ ଅଞ୍ଚଳର କୁମୁଟି ଏବଂ ବ୍ୟବସାୟୀ ଲୋକେ ବିକା କିଣା, ଧାର କରଜ ଜରିଆରେ ମାଳ ଅଞ୍ଚଳରେ ଲୋକଙ୍କୁ ବହୁ ପରିମାଣରେ ଶୋଷଣ କରିଛନ୍ତି ଓ କରୁଛନ୍ତି। ବହୁ ସରକାରୀ ଯୋଜନା ସତ୍ତ୍ୱେ ମାଳ ଅଞ୍ଚଳର ଲୋକଙ୍କର ଆର୍ଥିକ ଅବସ୍ଥାର ବିଶେଷ ଉନ୍ନତି ହୋଇପାରିନାହିଁ। ମୋର ଧାରଣା, ଆମର ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଆଦିବାସୀ ଏବଂ ହରିଜନମାନଙ୍କ ମଧ୍ୟରେ ଖ୍ରୀଷ୍ଟିୟାନ ମିଶନେରୀ ମାନଙ୍କ ପରି ନିଷ୍ଠାର ସହ ସେମାନଙ୍କୁ ଚଷ ବାସ ଓ କାରିଗରି କାମରେ ଶିକ୍ଷା ଦେଇପାରିଲେ ଅବସ୍ଥାର ଉନ୍ନତି ହୋଇପାରିବ। ଆଦିବାସୀ ହରିଜନ ବା ଦଳିତମାନଙ୍କ ପାଇଁ ଉଦ୍ଦିଷ୍ଟ ଆବାସିକ ବିଦ୍ୟାଳୟଗୁଡ଼ିକ ଉପଯୁକ୍ତ ଭାବେ ପରିଚଳିତ ହୋଇପାରୁନାହିଁ ବୋଲି ମୋର ଧାରଣା। ମୋ ମତରେ ମାଳ ଅଞ୍ଚଳର ଗରିବ ପିଲାମାନଙ୍କୁ ଉଚ୍ଚ ବିଦ୍ୟାଳୟ ସ୍ତରରେ ସର୍ବସାଧାରଣ ହାଇସ୍କୁଲ ଗୁଡ଼ିକରେ ପାଠ ପଢ଼ିବାର ସୁଯୋଗ ଦଆଯିବା ଦରକାର ଏବଂ ଯଥା ସମୟରେ ସେମାନଙ୍କୁ ଷ୍ଟାଇପେଣ୍ଡ ଏବଂ ପୋଥିପତ୍ର ଯୋଗାଇଦେବା ଉଚିତ । ଆଦିବାସୀ ହରିଜନ ବିଭାଗରେ ଯେଉଁମାନେ ସରକାରୀ କ୍ଷେତ୍ରରେ ନିଯୁକ୍ତି ପାଉଛନ୍ତି, ସେମାନଙ୍କର ସନ୍ତାନମାନଙ୍କୁ ଚକିରି କ୍ଷେତ୍ରରେ ଜାତି ଉପଜାତି ହିସାବରେ ସୁବିଧା ଦିଆଯିବା ଉଚିତ ହେବନାହିଁ। ତାହାହେଲେ ଉକ୍ତ ସମ୍ପ୍ରଦାୟ ଦୁଇଟିର ଅନ୍ୟ ପରିବାରର ଲୋକେ ସୁବିଧା ପାଇ ପାରିବେ । ନ ହେଲେ ଜାତି ଉପଜାତି ହିସାବରେ କେତେକ ନିର୍ଦ୍ଦିଷ୍ଟ ପରିବାରର ପୁତ୍ରପୌତ୍ରାଦି କ୍ରମେ ଏହି ଅତିରିକ୍ତ ସୁବିଧାଟି ଉପଭୋଗ କରି ଚଲିଥିବେ।

## ପୁରୀ ଜିଲ୍ଲାସ୍କୁଲରେ ଉଚ୍ଚମାଧମିକ ଶିକ୍ଷା

ଫୁଲବାଣୀରେ ମାଇନର ପରୀକ୍ଷା ପାସ୍‌କରି ମୁଁ ପୁରୀ ଜିଲ୍ଲାରେ ଅଷ୍ଟମଶ୍ରେଣୀରେ ନା ଲେଖାଇଲି। ନା ଲେଖାଇଲା ପରେପରେ ତତ୍କାଳୀନ ପ୍ରଧାନଶିକ୍ଷକ ଅବସର ଗ୍ରହଣ କରିବାରୁ ବିହାରର କୌଣସି ଗୋଟିଏ ସରକାରୀ ହାଇସ୍କୁଲରୁ ଆସି ଅମ୍ବିକାଚରଣ ମିଶ୍ର ଆମର ପ୍ରଧାନଶିକ୍ଷକ ହେଲେ। ସେ ଜଣେ କଠୋର ପ୍ରଶାସକ ଥିଲେ ମଧ୍ୟ ଅତି କୋମଳ ହୃଦୟର ଲୋକଥିଲେ। ମୁଁ ଗୋଟିଏ ବର୍ଷ ହେରାଗୌହିରୀସାହିସ୍ଥ ବ୍ରାହ୍ମଣସମିତି ହଷ୍ଟେଲରେ ରହି ଦ୍ୱିତୀୟ ବର୍ଷକୁ ହେଡମାଷ୍ଟରଙ୍କ ପରାମର୍ଶ କ୍ରମେ ଗଭର୍ଣ୍ଣମେଣ୍ଟ ହଷ୍ଟେଲକୁ ଚଲିଆସିଲି ଏବଂ ହେଡମାଷ୍ଟର ମୋର ଦରମାଛାଡ଼ କରି ଦେଇଥିଲେ। ସେତେବେଳେ ଗଭର୍ଣ୍ଣମେଣ୍ଟ ହଷ୍ଟେଲରେ ଛାତ୍ରମାନେ ରହୁ ନଥିବାରୁ ହଷ୍ଟେଲଟି ପ୍ରାୟ ଖାଲି ପଡ଼ିଥିଲା । ମୋ ଦେଖାଦେଖି ଆହୁରି କେତେକ ଛାତ୍ର ହଷ୍ଟେଲରେ ରହିଲେ। ମୋର ଶେଷବର୍ଷ ବେଳକୁ ପ୍ରାୟ ୧୫/ ୧୬ ଜଣ ମାତ୍ର ଥିଲେ। ସେତେବେଳେ ଆମର ମେସ୍ ଖର୍ଚ୍ଚ ୬ରୁ ୭ ଟଙ୍କା ମଧରେ

ପଢୁଥିଲା। ଅମ୍ବିକା ମିଶ୍ରଙ୍କ ପରେ ଜଗନ୍ନାଥ ତ୍ରିପାଠୀ ବୋଧହୁଏ ୧୯୩୪ ମସିହାରେ ସ୍କୁଲର ହେଡମାଷ୍ଟର ଭାବରେ ଯୋଗଦେଲେ। ସେ ଇଂରାଜୀ, ଓଡ଼ିଆ ଏବଂ ସଂସ୍କୃତ ଭାଷାରେ ପଣ୍ଡିତ ଥିଲେ। ତାପରେ ୧୯୩୫ ମସିହାର ପ୍ରାରମ୍ଭରେ ଶ୍ରୀଯୁକ୍ତ ହରିହର ମିଶ୍ର ଆମର ପ୍ରଧାନଶିକ୍ଷକ ଭାବରେ ଯୋଗଦେଲେ। ତାଙ୍କ ସମୟରେ ପାଠପଢ଼ା ଛଡ଼ା ବହୁ Extra Curricular Activitiesର ପ୍ରବର୍ତ୍ତନ କରାଯାଇଥିଲା। ଶନିବାର ଦିନ Mass Drill Classରେ ସେ ନିଜେ ଉପସ୍ଥିତ ରହୁଥିଲେ। Scouting ଛଡ଼ା ଖେଳ, ଗୀତ, ଅଭିନୟ, ବ୍ୟାୟାମ, ଆଦିରେ ସେ ପିଲାମାନଙ୍କୁ ଜଡ଼ିତ କରାଇ ପାରିଥିଲେ । ସେ ସବୁବେଳେ ନୂଆନୂଆ କଥା ଚିନ୍ତା କରୁଥିଲେ ଏବଂ କର୍ମଚଞ୍ଚଳ ଥିଲେ। ପୁରୀ ଜିଲ୍ଲାସ୍କୁଲରେ ପଢ଼ିଲାବେଳେ ଶିକ୍ଷକମାନଙ୍କ ମଧ୍ୟରେ ଆମେ ପିଲାମାନେ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ହରିହର ମିଶ୍ର, ଇଂରାଜୀ ଓ ଭୂଗୋଳ ଶିକ୍ଷକ କ୍ଷିତୀଶ ଚନ୍ଦ୍ର ଦେ, ଗଣିତ ଶିକ୍ଷକ ରହମତ ଅଲ୍ଲି, ପଣ୍ଡିତ ଫକୀର ମିଶ୍ର ଓ ପଣ୍ଡିତ ଜଗନ୍ନାଥ ରଥ, ଡ୍ରିଲମାଷ୍ଟର ନବକିଶୋର ଜେନାଙ୍କୁ କେବଳ ଭକ୍ତି କରୁନଥିଲୁ, ଭଲପାଉଥିଲୁ ଏବଂ ସେମାନଙ୍କୁ ଜୀବନସାରା ମନେ ରଖିଥିଲୁ। ପୁରୀ ଜିଲ୍ଲାସ୍କୁଲରେ ପାଠପଢୁଥିବା ସମୟରେ ମୋର ବନ୍ଧୁମାନେ ଥିଲେ - ଶ୍ରୀ ଉଦୟନାଥ ମିଶ୍ର (ଅବସରପ୍ରାପ୍ତ Govt.Press Superintendent), ଦିବଂଗତ ଶ୍ରୀପାଲଜୀ (ଅବସରପ୍ରାପ୍ତ Chief Conservator of forest), ଦିବଂଗତ କାଳିଦାସ ଲାହିରି (ଅବସରପ୍ରାପ୍ତ ଡିଷ୍ଟ୍ରିକ୍ଟ ଜଜ୍), ଦିବଗଂତ ମଧୁସୂଦନ ଦାସ (ଅବସରପ୍ରାପ୍ତ ଚିଫ୍ ଇଂଜିନିଅର), ସ୍ୱାଧୀନତାସଂଗ୍ରାମୀ ବିଭୁଧେନ୍ଦ୍ର ମିଶ୍ର ଏବଂ ତାଙ୍କର ଭାଇ ବିବେକାନନ୍ଦ ମିଶ୍ର, ଅଧ୍ୟାପକ ନିରଞ୍ଜନ ମହାପାତ୍ର, ହୋମିଓପାଥ ଅନନ୍ତ ପଟ୍ଟନାୟକ । ଏମାନେ ସବୁ ନିଜର ପଦପଦବି ଦ୍ୱାରା ଓଡ଼ିଶାରେ ସୁପରିଚିତ।



# ତୃତୀୟ ଅଧ୍ୟାୟ

# ମୋ କଲେଜ ଜୀବନ

## ରେଭେନ୍‌ସା କଲେଜ

୧୯୩୬ ମସିହା ଜୁଲାଇ ମାସରେ ରେଭେନ୍‌ସା କଲେଜରେ ନାମ ଲେଖାଇ ୱେଷ୍ଟ ହଷ୍ଟଲରେ ରହିଲି। କଲେଜ ଜୀବନରେ ମୁଁ ସାଧାରଣ ଛାତ୍ର ଥିଲି। ମାତ୍ର ଗୀତ, ନାଟକ ଓ ଅଭିନୟ, ବ୍ୟଙ୍ଗାଭିନୟ ଆଦିରେ ସୁନାମ ଅର୍ଜନକରି ପୁରସ୍କୃତ ହୋଇଥିଲି। କଲେଜରେ ଅନୁଷ୍ଠିତ ସମସ୍ତ ଉତ୍ସବଦିବସ ମାନଙ୍କରେ ଆବାହନ ଓ ବିଦାୟ ସଂଗୀତ ମୋତେ ବୋଲିବାକୁ ପଡୁଥିଲା । ୧୯୪୦ ମସିହାରେ ସରୋଜିନୀ ନାଇଡୁ ଆମ କଲେଜକୁ ଆସିଥିଲେ ଏବଂ କଲେଜହଲରେ କଲେଜ ୟୁନିଅନ୍‌ର ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ। ସେଥିରେ ଆବାହନ ସଙ୍ଗୀତରେ ରାଧାନାଥଙ୍କ "ସର୍ବେଷାଂ ଜନନୀ ଭାରତ" ପଦ୍ୟଟି ଗ୍ରୀନ୍‌ରୁମରୁ ମାଇକ୍ ସାହାଯ୍ୟରେ ଗାଇଥିଲି। ସେଥିରେ ସରୋଜିନୀ ନାଇଡୁ ଅତ୍ୟନ୍ତ ମୁଗ୍ଧହୋଇ ଯାଇଥିଲେ ଏବଂ ଷ୍ଟେଜ୍ ଉପରକୁ ମୋତେ ଡାକି ପଚାରିଲେ "Are you the gentleman who sang the Sanskrit Song?" ମୁଁ ହଁ କହିବାରୁ ସେ କହିଲେ, " You have got a powerful voice I carry the memory of the song with me."

ମୁଁ କଲେଜରେ ପଢ଼ିବାବେଳେ ଛାତ୍ର ଆନ୍ଦୋଳନର ସଭାସମିତିରେ ଯଦିଓ ଯୋଗଦିଏ, ଅନ୍ୟ କେତେକ ଛାତ୍ର ଆରେଷ୍ଟ ହୋଇଥିଲେ ମଧ୍ୟ ମୁଁ ସବୁବେଳେ ଆରେଷ୍ଟ ନହେବା ପାଇଁ ଦୃଷ୍ଟି ଦିଏ । କଲେଜରେ ମୋର ସହପାଠୀ ଥିଲେ କୃତବିଦ୍ୟ ଛାତ୍ର ଶ୍ରୀରାମ ଦାସ, ବିଦ୍ୟାଧର ମିଶ୍ର, ବ୍ରଜବନ୍ଧୁ ମିଶ୍ର ଓ ବୀରେନ୍ଦ୍ର ପଟ୍ଟନାୟକ। ଥରେ ୱେଷ୍ଟ ହଷ୍ଟେଲରେ ଛାତ୍ରମାନଙ୍କ ମଧ୍ୟରେ ଗୋଟିଏ କବିତା ପ୍ରତିଯୋଗିତା ହୋଇଥିଲା। ମୁଁ ହଷ୍ଟେଲ ୟୁନିଅନ୍‌ରେ ୟୁନିଅନ୍‌ର ସଭ୍ୟ ଥିଲି। ଡ.ବି.ପ୍ରସାଦ ଆମର ୱାର୍ଡ଼େନ ଥିଲେ। ଡ.ପର୍ଶୁରାମ ମିଶ୍ର ବିଲାତ ଯିବା ପରେପରେ ପ୍ରଫେସର ଘନଶ୍ୟାମ ଦାସ ଥିଲେ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ। ହଷ୍ଟେଲ ୟୁନିଅନ୍‌ର ଜଣେ ସଭ୍ୟ କବିତାଗୁଡ଼ିକ ସଂଗ୍ରହକରି ସୁସାହିତ୍ୟିକ ଗିରିଜା ଶଙ୍କର ରାୟଙ୍କ ପାଖକୁ ମୂଲ୍ୟାୟନ କରିବାପାଇଁ ପଠାଇଦେଇ ଥିଲେ।

ମୂଲ୍ୟାୟନ ପରେ ଦେଖାଗଲା ଯେ, ଉକ୍ତ ସଭ୍ୟ ପ୍ରଥମସ୍ଥାନ ଅଧିକାର କରିଥିଲେ। ଏଥିରେ ଅନ୍ୟଜଣେ ଛାତ୍ରାବାସର ଛାତ୍ର ଅସନ୍ତୁଷ୍ଟ ହୋଇ ଗିରିଜାବାବୁଙ୍କ ପାଖକୁ ଯାଇ ବୁଝିଲେ ଯେ, ତାଙ୍କଦ୍ୱାରା ଲିଖିତ ପଦ୍ୟଟି ଗିରିଜାବାବୁଙ୍କୁ ଦିଆଯାଇ ନାହିଁ। ଏକଥା ସେ ଆସି ସମସ୍ତଙ୍କୁ ଜଣାଇଲେ ଏବଂ ଓ୍ୱାଡ଼େନଙ୍କ ପାଖରେ ଆପତ୍ତି କଲେ। ଏଥିରେ ଛାତ୍ରାବାସ ସାରା ଆନ୍ଦୋଳନ ହେଲା ଏବଂ ଡ. ବି. ପ୍ରସାଦ କାର୍ଯ୍ୟାନୁଷ୍ଠାନ କରିବାପାଇଁ ବାଧ୍ୟ ହେଲେ। ଡ: ପ୍ରସାଦ ଉକ୍ତ ସଭ୍ୟଙ୍କୁ ଛାଡ଼ି ୟୁନିଅନର ସବୁ ସଭ୍ୟଙ୍କୁ ତାଙ୍କ ଅଫିସକୁ ଡାକି ବସାଇଲେ। ଆମ୍ଭମାନଙ୍କୁ ଖଣ୍ଡିଏ ଖଣ୍ଡିଏ କାଗଜଦେଇ କହିଲେ ଦୋଷ କରିଥିବା ସଭ୍ୟଙ୍କର ଏହା ଗୋଟିଏ Honest Mistake ନା Willful suppression ଥିଲା, ତାହା ଲେଖିକରି ଦେବାକୁ। ସମସ୍ତେ Honest Mistake ଲେଖିଥିବାବେଳେ ମୁଁ Willful suppression ବୋଲି ଲେଖିଥିଲି। କାଗଜଖଣ୍ଡ ଗୁଡ଼ିକରେ ଆମେ ନାମ ନ ଦେଇଥିଲେ ମଧ୍ୟ ଡ.ପ୍ରସାଦ ମୋର ଲେଖାକୁ କୌଣସି ପ୍ରକାରେ ଚିହ୍ନି ପାରିଥିଲେ।

୧୯୪୦ ମସିହାରେ ଜାନୁଆରୀ ୨୬ ପାଳନକୁ ନେଇ ଛାତ୍ର, ଅଧ୍ୟକ୍ଷ ଓ ଅନ୍ୟାନ୍ୟ ଅଧ୍ୟାପକମାନଙ୍କ ମଧ୍ୟରେ ମହାଗଣ୍ଡଗୋଳ ଘଟିଥିଲା। ପରୀକ୍ଷା ପୂର୍ବରୁ ଦୁଇଟିଯାକ ଛାତ୍ରାବାସରୁ ଅଳ୍ପ କେତେଜଣ ଛାତ୍ରଙ୍କୁ ଛାଡ଼ି ପ୍ରାୟ ସମସ୍ତେ ଛାତ୍ରାବାସ ଛାଡ଼ି ଚାଲି ଯାଇଥିଲେ। ମୁଁ ହଷ୍ଟେଲ ଛାଡ଼ିଯାଇ ନଥିଲି । କିନ୍ତୁ ନେତାମାନଙ୍କୁ ପରୀକ୍ଷା ନ ଦେବା ପାଇଁ ପ୍ରତିଶ୍ରୁତି ଦେଇଥିଲି। ହେଲେ ପରୀକ୍ଷାଦିନ ଦେଖାଗଲା ଛାତ୍ରାବାସ ଛାଡ଼ି ଚାଲିଯାଇଥିବା ସମସ୍ତ ଛାତ୍ର ଆସି ପରୀକ୍ଷାରେ ଯୋଗଦେଲେ। ଡ.ପରିଜା ଛାତ୍ରାବାସର ଚାରିଆଡ଼େ ମିଲିଟାରୀ ପୁଲିସ୍ ରଖି ଛାତ୍ରମାନଙ୍କୁ ଭିତରକୁ ଆଣିବାର ବନ୍ଦୋବସ୍ତ କରିଥିଲେ। ଅଳ୍ପ କେତେଜଣ ନେତା ଏରେଷ୍ଟ ହୋଇଥିଲେ। ଧର୍ମଘଟ ଫେଲ୍ ମାରିବାର ଦେଖି ମୁଁ କିଞ୍ଚିତ ବିଳମ୍ବରେ ପରୀକ୍ଷାହଲ୍‌ରେ ପ୍ରବେଶ କରନ୍ତେ ଦେଖିଲି ଯେ ସମସ୍ତ ଛାତ୍ର ଏପରିକି କେତେଜଣ ମୋର ସହପାଠୀ ନେତା ଆଗରୁ ଆସି ଲେଖାଲେଖି ଆରମ୍ଭ କରି ଦେଲେଣି । ସୁତରାଂ ପରୀକ୍ଷା ଯେମିତି ହେବା କଥା ରୀତିମତ ଚାଲିଲା।

ପରୀକ୍ଷା ସରିବାର କେତେଦିନ ପରେ ମୁଁ ପରିଜା ସାହେବଙ୍କ ପାଖକୁ ଖଣ୍ଡିଏ ସାର୍ଟିଫିକେଟ୍ ଆଣିବାକୁ ଗଲି। ମତେ ଅଫିସରେ ଦେଖି ଯଦିଓ ସେ ସାମାନ୍ୟ ବିରକ୍ତି ପ୍ରକାଶ କଲେ, ତଥାପି କଲେଜରେ ମୋର Extra Curricular Activitiesରେ ସନ୍ତୁଷ୍ଟ ଥିବାର ପ୍ରକାଶ କଲେ। ତା ପରେ ସେ ଜଣେ କିରାଣୀକୁ ଗୁପ୍ତପଞ୍ଜିକା ଦେଖି ମୋର ଚରିତ୍ର ସମ୍ବନ୍ଧରେ କହିବାକୁ ନିର୍ଦ୍ଦେଶ ଦେଲେ। ଉକ୍ତ କିରାଣୀ ଗୁପ୍ତପଞ୍ଜିକା ଦେଖି ମୋ ସମ୍ବନ୍ଧରେ ଉତ୍ତମ ମନ୍ତବ୍ୟ ପ୍ରକାଶ କରିବାରୁ ପରିଜା ସାହେବ ସଙ୍ଗେସଙ୍ଗେ ମତେ ଗୋଟିଏ ଉତ୍କୃଷ୍ଟ ସାର୍ଟିଫିକେଟ୍ ଦେଲେ। ତା ପରେ ମୁଁ ଡ.ପ୍ରସାଦଙ୍କ ପାଖକୁ ଗୋଟିଏ

ସାର୍ଟିଫିକେଟ୍ ଆଣିବାକୁ ଗଲାରୁ ସେ ମୋତେ କହିଲେ ଯେ, ଏ ବର୍ଷ କୌଣସି ଛାତ୍ରକୁ ସାର୍ଟିଫିକେଟ୍ ଦିଆଯିବ ନାହିଁ ବୋଲି କଲେଜ ଷ୍ଟାଫ୍ ମିଟିଙ୍ଗରେ ସ୍ଥିର କରାଯାଇଛି । ତାପରେ ମୁଁ ତାଙ୍କୁ ପରିଜା ସାହେବଙ୍କ ସାର୍ଟିଫିକେଟ୍ ଦେଖାଇବାରୁ ସେ ଅତି ଉତ୍‌ଫୁଲ୍ଲିତ ହୋଇ ମୋତେ ଗୋଟିଏ ଚମ୍‌କାର ସାର୍ଟିଫିକେଟ୍ ଦେଲେ ଏବଂ ହଷ୍ଟେଲ ୟୁନିଅନ୍‌ର ଜଣେ ଛାତ୍ରଙ୍କ ବିରୋଧରେ ହୋଇଥିବା ଅଭିଯୋଗରେ ମୁଁ ସତ୍ୟର ଆଶ୍ରୟ ନେଇଥିବାରୁ ମୋର ପ୍ରଶଂସାକଲେ । ପରବର୍ତ୍ତୀ କାଳରେ ସେ ଡି.ପି.ଆଇ. ଥିବାବେଳେ ମଧ୍ୟ ମୋର ପଦୋନ୍ନତିରେ ବହୁତ ସାହାଯ୍ୟ କରିଥିଲେ ।

## କିଛି ବିଶିଷ୍ଟ ଘଟଣା

ରେଭେନ୍‌ସା କଲେଜରେ ପ୍ରଥମ ଓଡ଼ିଆ ପ୍ରିନିସ୍‌ପାଲ ହେଲେ ଶ୍ୟାମାଚରଣ ତ୍ରିପାଠୀ । ତ୍ରିପାଠୀ ସାହେବ ଜଣେ ମଜାଦାର ଲୋକ ଥିଲେ । ତାଙ୍କ ସମୟରେ ଦୁଇଟି ଛାତ୍ରାବାସରେ ଛାତ୍ରମାନଙ୍କୁ ମାଗଣାରେ କଡ଼୍‌ଲିଭର ଅଏଲ ଦିଆଯାଉଥିଲା ଏବଂ ଆଉଟ୍‌ଡୋର ଗେମସ୍‌କୁ ବାଧ୍ୟତାମୂଳକ ଭାବେ ପ୍ରଚଳନ କରିଥିଲେ ।

ସେ ଥରେ ଦୁଇ ଛାତ୍ରାବାସର ଛାତ୍ରମାନଙ୍କୁ ନେଇ ମହାନଦୀପଠାରୁ ଗୋଟିଏ ଗୋଟିଏ ଠେଲାଗାଡ଼ିରେ କିଛି ପଙ୍କ ଆଣି କଲେଜ Quaderangleରେ ପକାଇଲେ । ତାପରେ କଲେଜ Quaderangleଟି ଘାସ ଓ ନାନାପ୍ରକାର ଫୁଲରେ ହସି ଉଠିଥିଲା । ୧୯୩୯ ମସିହାରେ ଆଇ.ଏ. ଏବଂ ବି.ଏ. ପରୀକ୍ଷା ସରିବାପରେ ଦୁଇ ଛାତ୍ରାବାସର ଛାତ୍ରମାନଙ୍କୁ ପ୍ରିନିସ୍‌ପାଲ ଓ କଲେଜ୍‌ଷ୍ଟାଫ୍ ଗୋଟିଏ ରାଜକୀୟ ଢଙ୍ଗରେ ଭୋଜିଦେଇ ଆପ୍ୟାୟିତ କରିଥିଲେ । ଉକ୍ତ ଭୋଜିର ଖର୍ଚ୍ଚ ପ୍ରିନିସ୍‌ପାଲ ଓ ସମସ୍ତ ଅଧ୍ୟାପକ ଚାନ୍ଦାଦେଇ ବହନ କରିଥିଲେ । ଚେୟାର, ଟେବୁଲ୍ ପକାଇ ଆମମାନଙ୍କୁ ବସାଇ ନିଜେ ପ୍ରିନିସ୍‌ପାଲ ଓ ଅଧ୍ୟାପକମାନେ ଖାଦ୍ୟ ପରିବେଷଣ କରିଥିଲେ ଏବଂ ରଗ୍‌ବି ଖେଳକୁ ନେଇ ଏକ ଇଂରାଜୀ ସିନେମା ଦେଖାଇଥିଲେ ।

ଥରେ ମୁଁ ଏବଂ ମୋର ଜଣେ ସହପାଠୀ କଲେଜ ଲାଇବ୍ରେରୀକୁ ଯାଇଥିଲୁ । ସେପଟରୁ ଶ୍ୟାମଚରଣ ତ୍ରିପାଠୀ ଏବଂ ପ୍ରିନିସ୍‌ପାଲ ଆସୁଥିଲେ । ମୁହାଁମୁହିଁ ହୋଇଯିବାରୁ ଆମେ ସେ ଦୁହିଙ୍କୁ ନମସ୍କାର କଲୁ । ସେ ହଠାତ୍ ମୋର ସହପାଠୀର ହାତଟାକୁ ଧରିପକାଇ ତାର ନାମ ପଚାରିଲେ । ଛାତ୍ରଜଣକ ତାର ନା ଶ୍ୟାମାଚନ୍ଦ୍ର ତ୍ରିପାଠୀ କହିବାରୁ ତ୍ରିପାଠୀ ସାହେବ କହିଲେ, You bear my name and you are so thin, look at me. How fat I am". ସେ ପିଲାଟିର ହାତଧରି ଟାଣିଟାଣି ନେଲେ । ତାକୁ ନେଇ କଲେଜ ଡାକ୍ତର ପାଖରେ ହାଜର କରାଇଲେ । ଡାକ୍ତରଙ୍କୁ କହିଲେ, "Dr. this boy bears my name and he is so thin, please make him fat." ସେଇଦିନରୁ ସେଇ ଛାତ୍ରଙ୍କୁ

ଡାକ୍ତର ବେଶ୍ କିଛି ଔଷଧ ଦେଲେ । ବାସ୍ତବିକ ସେ ପିଲାଟି ଥିଲା ଅତି ଡେଙ୍ଗା ଆଉ ଟଳଟଳ ହୋଇ ଚାଲୁଥିଲା । ଯାହାହେଉ ପ୍ରିନିସ୍‌ପାଲଙ୍କ ଆଗରେ ହାବୁଡ଼ିଯିବା ଥିଲା ଏକ ଆକସ୍ମିକ ଘଟଣା।

## କଟକ ଟ୍ରେନିଂ କଲେଜ

କଲେଜରୁ ବାହାରିବା ପରେପରେ ସିଲେକ୍‌ସନ ପରୀକ୍ଷାରେ ଉତ୍ତୀର୍ଣ୍ଣହୋଇ କଟକ ଟ୍ରେନିଂ କଲେଜରେ ନାମ ଲେଖାଇଲି। ମୋର ମନେହୁଏ, ସେତେବେଳେ ଆମେ ବୋଧହୁଏ ୩୦ରୁ ୪୦ଜଣ ଭିତରେ ତାଲିମ ପାଇଥିଲୁ। ଟ୍ରେନିଂପାଇବା ପାଇଁ ପ୍ରାର୍ଥୀଙ୍କର ଅଭାବ ଥିଲା। ସେତେବେଳେ ଦ୍ୱିତୀୟ ମହାସମର ଆରମ୍ଭ ହୋଇ ଯାଇଥାଏ। ଆମର ଶିକ୍ଷକ ଥିଲେ ମହେଶ ଚନ୍ଦ୍ର ପ୍ରଧାନ, ରାମଚନ୍ଦ୍ର ମହାପାତ୍ର, ରାମନାରାୟଣ ମହାନ୍ତି। ମୋର ସହପାଠୀ ଥିଲେ ବୈଦ୍ୟନାଥ ରଥ, ଅବସରପ୍ରାପ୍ତ ଡି.ପି.ଆଇ, ଯେ କି ପୂର୍ବରୁ ରେଭେନ୍‌ସା କଲେଜରେ ମୋର ଶିକ୍ଷକ ଥିଲେ, ପ୍ରାଣବନ୍ଧୁ କର ଏବଂ ସର୍ବେଶ୍ୱର ଦାସ ଓ ବୈଦ୍ୟନାଥ ମହାପାତ୍ର।

ପ୍ରାଣବନ୍ଧୁ କର ଏବଂ ମୁଁ କଲେଜ ତରଫରୁ ଗୋଟିଏ ନାଟକର ବନ୍ଦୋବସ୍ତ କଲୁ। ପ୍ରିନିସ୍‌ପାଲ ମହୋଦୟ ଟ୍ରେନିଂ କଲେଜର କେବେ ନାଟକ ହୋଇନାହିଁ, ତେଣୁ ଆମେ କରିପାରିବୁ କି ନାହିଁ ବୋଲି ସନ୍ଦେହ ପ୍ରକାଶ କଲେ। କିନ୍ତୁ ଯାହାହେଉ, ନାଟକଟିଏ କରିବାକୁ ଅନୁମତି ଦେଲେ। ସ୍ୱର୍ଗତଃ ପ୍ରାଣବନ୍ଧୁ କର ଗୋଟିଏ ବଙ୍ଗାଳୀ ବ୍ୟଙ୍ଗାତ୍ମକ ନାଟକର ଅନୁବାଦ କଲେ ଏବଂ କଟକର ଜଣେ ବଙ୍ଗାଳୀ ଓକିଲଙ୍କୁ ନିର୍ଦ୍ଦେଶନା ଦେବାପାଇଁ ଠିକ୍‌କଲେ । କିନ୍ତୁ ସେ ମହାଶୟ ଆସି ନ ପରିବାରୁ ମୁଁ ଅଣ୍ଟାଭିଡ଼ି ବାହାରିଲି। ମୁଁ କେବଳ ନିର୍ଦ୍ଦେଶନା ଦେଲିନାହିଁ, ଅଛ କେତୋଟି ଗୀତ ରଚନାକଲି, ତହିଁରେ ସ୍ୱର ମଧ୍ୟ ଦେଲି। ନାରୀସଂଘ ସଦନରେ ନାଟକଟି ଦୁଇରାତି ପାଇଁ ଅଭିନୀତ ହୋଇଥିଲା। ନାଟକର ସମୟ କେବଳ ଦେଢ଼ଘଣ୍ଟା। କିନ୍ତୁ ପ୍ରାଣବନ୍ଧୁ କରଙ୍କର ଚେଷ୍ଟାରେ ବାହାରର କେତେକ ବଙ୍ଗାଳୀ ପରିବାରର ଝିଅମାନଙ୍କୁ ନେଇ କିଛି ନାଟ୍ୟଗୀତର ବନ୍ଦୋବସ୍ତ ମଧ୍ୟ କରାଯାଇଥିଲା। ନାଟକଟିରେ ନାରୀଚରିତ୍ରର ଅଭିନୟ କରିଥିଲେ ଦୁଇଜଣ ବାହାରର ପୁରୁଖାଲୋକ। ନାଟକଟି ଏତେ ସଫଳ ହୋଇଥିଲା ଯେ, ତାକୁ ଦେଖି ଲୋକେ ହସିହସି ଗଡ଼ିଗଲେ ଏବଂ କଟକ ସହରରେ ତତ୍କାଳୀନ ସେକ୍ରେଟେରିଏଟ୍ (ବର୍ତ୍ତମାନର ସିଟି ହସ୍‌ପିଟାଲ) କର୍ମକର୍ତ୍ତାମାନେ ଆମ୍ଭମାନଙ୍କ ଭୁରିଭୁରି ପ୍ରଶଂସା କରିଥିଲେ। ମୁଁ ସେଇ ନାଟକଟିରେ ମୁଖ୍ୟଭୂମିକା ନେଇଥିଲି। ଲୋକେ ବିଶ୍ୱାସ କରିପାରିଲେ ନାହିଁ ଯେ, ଜଣେ ପୁରୁଷ ଦୁଇଜଣ ନାରୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ବୋଲି ଏବଂ ଆମମାନଙ୍କୁ ମଧ୍ୟ ସେମାନେ ନାଟକ୍‌ରେ ଚିହ୍ନିପାରି ନ ଥିଲେ। ନାଟକପାଇଁ ଟିକଟ କରାଯାଇଥିଲା

ଏବଂ ତତ୍‌ଲବ୍ଧ ଧନ ବୋଧହୁଏ ୯୦୦ଟଙ୍କାକୁ ଆମେମାନେ ବନ୍ୟାପାଣ୍ଠିକୁ ଦାନ କରିବାପାଇଁ ଆଗରୁ ଠିକ୍ କରିଥିଲୁ । କିନ୍ତୁ ପ୍ରିନ୍‌ସିପାଲ ମହୋଦୟ ଯୁଦ୍ଧପାଣ୍ଠିକି ଦାନ କରିବାପାଇଁ ଅଡ଼ିବସିଲେ। ପ୍ରିନସ୍‌ପାଲଙ୍କ ସାଙ୍ଗରେ ଆମର ସଂଘର୍ଷ ହେଲା। ବୈଦ୍ୟନାଥ ରଥ ଆମକୁ ପ୍ରିନସ୍‌ପାଲଙ୍କ କଥାରେ ରାଜି କରାଇବାକୁ ବହୁତ ଚେଷ୍ଟାକଲେ। ଆମେ ରାଜି ନ ହେବାରୁ ପ୍ରିନ୍‌ସିପାଲଙ୍କୁ କହି ଲବ୍ଧଧନର ଅଧାଅଧା ଯୁଦ୍ଧପାଣ୍ଠି ଏବଂ ବନ୍ୟାପାଣ୍ଠିକୁ ଦିଆଗଲା। ଟ୍ରେନିଂ କଲେଜରେ ପଢ଼ିବାବେଳେ ରାମନାରାୟଣ ବାବୁଙ୍କ ସଙ୍ଗେ ଆମେ କେତେଥର ହାଇକିଙ୍ଗ କରି ବିଭିନ୍ନ ଜାଗାକୁ ଯଥା ନରାଜ, ଚୌଦୁଆର, ବାରଙ୍ଗ ଇତ୍ୟାଦିକୁ ଯାଇଥିଲୁ।



# ଚତୁର୍ଥ ଅଧ୍ୟାୟ

# ମୋ ଚାକିରି ଜୀବନ

## ପ୍ରଥମ ଚାକିରି ଜୀବନ

ଟ୍ରେନିଂ କଲେଜରୁ ବାହାରି ପ୍ରଥମେ କଟକ ରାଣୀହାଟ ହାଇସ୍କୁଲରେ ସହକାରୀ ଶିକ୍ଷକଭାବେ ଯୋଗଦେଲି। ସେତେବେଳେ ସ୍ୱନାମଧନ୍ୟ ବାଞ୍ଛାନିଧି ଶତପଥୀ ଥିଲେ ପ୍ରଧାନଶିକ୍ଷକ ଏବଂ ସ୍କୁଲଟିରେ ଦଶମଶ୍ରେଣୀ ପର୍ଯ୍ୟନ୍ତ ଖୋଲିଥିଲା।

ରାଣୀହାଟ ସ୍କୁଲରେ ପ୍ରାୟ ତିନିମାସ ରହି ମୁଁ କି.ଉଦୟଗିରି ସରକାରୀ ହବାକ୍ ହାଇସ୍କୁଲରେ କେବଳ ଦୁଇମାସ ପାଇଁ ଟ୍ରେଣ୍ଡ୍ ଗ୍ରାଜୁଏଟ ସ୍କେଲରେ ଶିକ୍ଷକତା କରିଥିଲି। ଏଇ ସ୍କୁଲରେ ଥିଲାବେଳେ ମୁଁ ୫୦ଟଙ୍କା ଦରମା ପାଉଥିଲି ଏବଂ ସେଥିରୁ ୧୦ଟଙ୍କା ସ୍କୁଲକୁ ଚନ୍ଦାଦେବାକୁ ପଡୁଥିଲା।

ତାପରେ ବ୍ରହ୍ମପୁରରେ Junior Deputy Inspector ଭାବରେ ୫୦-୭୦ଟଙ୍କା ସ୍କେଲରେ ନିଯୁକ୍ତି ପାଇଲି। ଯଦିଓ ବ୍ରହ୍ମପୁରରେ ହେଡ୍‌କ୍ୱାର୍ଟାର ଥିଲା, ମୋର ଇଲାକା ଥିଲା ଜରଡ଼ା, ପାତ୍ରପୁର, ଚିକିଟି ଓ ସୁରଙ୍ଗୀ। ସେତେବେଳେ ବ୍ରହ୍ମପୁର ଅଫିସ୍‌ରେ ଜଣେ Senior Deputy Inspector ଓ ଦୁଇଜଣ Junior Deputy Inspector ଗଞ୍ଜାମଜିଲ୍ଲାର ବିଭିନ୍ନ ଅଞ୍ଚଳପାଇଁ କାର୍ଯ୍ୟ କରୁଥିଲେ। ସେତେବେଳେ ଗଞ୍ଜାମଜିଲ୍ଲାରେ ମାଡ୍ରାସ ସିଷ୍ଟମ ଅନୁସାରେ Teacher Manager System ଥିଲା । ଅର୍ଥାତ୍ ପ୍ରାଇମେରୀ ସ୍କୁଲଗୁଡ଼ିକ ଟିଚର ମାନଙ୍କର ବ୍ୟକ୍ତିଗତ ସମ୍ପତ୍ତି ଥିଲା । ସେମାନେ ଯଦି ସ୍କୁଲର ଶିକ୍ଷକ ଥାଆନ୍ତି, ତାହାହେଲେ ଛାତ୍ର ସଂଖ୍ୟା ଅନୁଯାୟୀ ଅଧିକ ଶିକ୍ଷକ ମଧ୍ୟ ରଖି ପାରୁଥିଲେ । କିନ୍ତୁ ଅଳ୍ପ କେତୋଟି ଜାଗାରେ ଶିକ୍ଷକ ନଥାଇ ମଧ୍ୟ ମ୍ୟାନେଜର ହୋଇ ପାରୁଥିଲେ। ସ୍କୁଲ ସବ୍-ଇନିସପେକ୍ଟରଙ୍କ ସୁପାରିଶକ୍ରମେ ପ୍ରାଥମିକ ସ୍କୁଲଗୁଡ଼ିକୁ District Education Councilରୁ ବର୍ଷକୁ ଦୁଇଥର ବା ଅନେକ ସମୟରେ ଅନୁଦାନ ମିଳୁଥିଲା। ସେତେବେଳେ ଟ୍ରେଣ୍ଡ୍ ମାଟ୍ରିକ ଶିକ୍ଷକ କେହି ନଥିଲେ। ସପ୍ତମଶ୍ରେଣୀ ପାସ୍‌କରି ତାଲିମପ୍ରାପ୍ତ ଶିକ୍ଷକଙ୍କ ଦରମା ଥିଲା ୧୨ଟଙ୍କା । ତାଲିମ ନପାଇଥିବା ଶିକ୍ଷକମାନଙ୍କ ଦରମା ଥିଲେ ୯ଟଙ୍କା । ଆଉ ଯେଉଁ ଓଡ଼ିଶୀ ଅବଧାନମାନେ ଗାଁ ଗାଁରେ କାଳକ୍ରମେ ରହି ପିଲାଙ୍କୁ ପାଠ ପଢ଼ାଉଥିଲେ,

ସେମାନଙ୍କର ଦରମା ଥିଲା ୬ ଟଙ୍କା । ସେମାନଙ୍କୁ ସିଳିନାଲ୍ ପାସ୍ ଶିକ୍ଷକ ବୋଲି ଆଖ୍ୟା ଦିଆଯାଇଥିଲା। ସେମାନେ ସରକାରଙ୍କଠାରୁ କ୍ୱଚିତ୍ ଦରମା ପାଉଥିଲେ। ସେମାନଙ୍କର ଖର୍ଚ୍ଚ ଗାଁଲୋକେ ବହନ କରୁଥିଲେ। ବିଶେଷତଃ ସରସ୍ୱତୀପୂଜା ସମୟରେ ଗ୍ରାମବାସୀ ମାନଙ୍କଠାରୁ ପିଲାମାନଙ୍କ ଜରିଆରେ ଟଙ୍କା, ଲୁଗା ଆଦି ବହୁ ପୁରସ୍କାର ପାଉଥିଲେ।

ଥରେ ମୁଁ ଚିକିଟିରେ ରହି ପାଖଆଖ ସ୍କୁଲ ସବୁ ପରିଦର୍ଶନ କଲି। ଚିକିଟିରେ ଥିବା ପ୍ରାଥମିକ ସ୍କୁଲର ଶିକ୍ଷକ ମୋର ଖାଇବା ପିଇବା ଭାରନେଲେ। ମୁଁ ଚିକିଟିରେ ଗୋଟିଏ ହୋଟେଲରେ ଖାଉଥାଏ ଏବଂ ପରିଦର୍ଶନରେ ଗଲେ କିଛି ଜଳଖିଆ ସାଙ୍ଗରେ ନେଇଯାଉଥାଏ । ମୋଟ ଉପରେ ମୁଁ ଦେଖିଲି ପିଲାଙ୍କର ପଢ଼ାପଢ଼ି ଅତି ମାନ୍ଦାଥିଲା। ମୋତେ ଚିକିଟିରେ ଲୋକେ କହିଲେ ଯେ, ଉପରିସ୍ଥ ଅଧିକାରୀମାନେ ଆସିଲେ ଶିକ୍ଷକମାନେ ବଡ଼ ସତର୍କ ହୋଇଯାଆନ୍ତି ଏବଂ ସେଇ କେତେଦିନ ସ୍କୁଲକୁ ଯାଆନ୍ତି। ଥରେ ଗୋଟିଏ ସ୍କୁଲକୁ ଉପରୋକ୍ତ ସ୍କୁଲର ପ୍ରଧାନଶିକ୍ଷକଙ୍କ ଅନୁରୋଧରେ ସ୍କୁଲର ପିଲାମାନଙ୍କୁ ପରୀକ୍ଷା କରି ସାର୍ଟିଫିକେଟ୍ ପ୍ରଦାନ କରିବା ପାଇଁ ଯାଇଥିଲି। ସ୍କୁଲରେ ପହଞ୍ଚି ଦେଖିଲି ମୋର ଖାଇବା ପିଇବା ପାଇଁ ଖୁବ ରନ୍ଧାବଢ଼ା ଚାଲିଛି। ମୁଁ ଯେତେବେଳେ ପଞ୍ଚମଶ୍ରେଣୀ ପିଲାଙ୍କୁ ବସାଇଦେଇ ପରୀକ୍ଷା ଉଦ୍ଦେଶ୍ୟରେ ପ୍ରଶ୍ନ ଡାକିଲି, ପ୍ରଧାନଶିକ୍ଷକ ମୋତେ କହିଲେ, "ଆଜ୍ଞା ଆପଣ କ'ଣ ସତରେ ପରୀକ୍ଷା କରିବେ ?"

ମୋ ପୂର୍ବରୁ ପାଟୁଲୁ ଥିଲେ ଯେ ସେ ସ୍କୁଲକୁ ଆସି ପିଲାମାନଙ୍କୁ ପାସ୍ ସାର୍ଟିଫିକେଟ୍ ଦେଇଯାଆନ୍ତି। ତାପରେ ମୁଁ ଶିକ୍ଷକଙ୍କ କଥା ନଶୁଣି ପିଲାଙ୍କୁ ସବୁ ବିଷୟରେ ପରୀକ୍ଷା କଲି ଏବଂ ଉତ୍ତରଖାତା ଗୁଡ଼ିକ ବିଡ଼ାବାନ୍ଧି କାଖରେ ଜାକି ବାହାରିଲାବେଳକୁ ପ୍ରଧାନଶିକ୍ଷକ କାନ୍ଦକାନ୍ଦ ହୋଇ ମୋତେ ଖାଇବାକୁ ଅନୁରୋଧ କଲେ। ଖାଇଲି ଏବଂ ପୁଣି ବାହାରିବାରୁ ସେ ମୋତେ ବାରମ୍ବାର ଅନୁରୋଧ କଲେ ସେଦିନ ଗାଁରେ ରହିଯିବା ପାଇଁ ଏବଂ ସେ ଗାଁର କାଜି ଆସିଲେ ରାତିରେ ଭଲ ଖିଆପିଆ ହେବ ଏବଂ ଶିକ୍ଷକଜଣକ ଭଲ ବେହେଲା ବାଦକ ଥିବାରୁ ରାତିରେ ଗୋଟିଏ ସଙ୍ଗୀତ ଆସରର ବ୍ୟବସ୍ଥା କରାଯିବ। ମୁଁ କିଛି ନଶୁଣି ମୋର ପିଅନକୁ ଧରି ଚିକିଟି ଫେରିଆସିଲି। ଉକ୍ତ ଶିକ୍ଷକଙ୍କୁ ମନାକଲେ ମଧ୍ୟ ମୋ ସାଙ୍ଗରେ ଆସିଲେ ଏବଂ ମୁଁ ଆଶ୍ରୟ ନେଇଥିବା ପ୍ରାଇମେରୀସ୍କୁଲ ଘରେ ମୋତେ ବହୁତ ଅନୁରୋଧ କଲେ ପିଲାମାନଙ୍କୁ ସାର୍ଟିଫିକେଟ୍ ଦେଇଦେବା ପାଇଁ। ମୁଁ ମନାକରିବାରୁ ଅନ୍ତତଃ କାଜିର ପିଲାଟିକୁ ସାର୍ଟିଫିକେଟ୍ ଦେଇଦେବା ପାଇଁ କହିଲେ। ମୁଁ କିଛି ନ ଶୁଣିବାରୁ ସେ ନିରାଶ ହୋଇ ଫେରିଗଲେ। ମୁଁ ତାଙ୍କୁ କହିଲି ଯେ ବ୍ରହ୍ମପୁର ଗଲେ ଖାତାଦେଖି ପାସ୍ କରିଥିବା ପିଲାଙ୍କୁ ସାର୍ଟିଫିକେଟ୍ ଦେବି। ସାତଆଠଦିନ ପରେ ମୁଁ ଫେରିଲାବେଳକୁ ଖାଉଥିବା ହୋଟେଲକୁ ତାଙ୍କର ହୋଟେଲର ପ୍ରାପ୍ୟଦେବାକୁ ଗଲି ।

ହୋଟେଲବାଲା ପୂର୍ବରୁ ପଇସା ନନେଇ ଶେଷବେଳକୁ ଏକାସାଙ୍ଗରେ ପଇସା ନେବାକୁ କହିଥିଲା। କିନ୍ତୁ ଏବେ ମଧ୍ୟ ସେ ପଇସା ନେଲାନାହିଁ। ମୋ ସାଙ୍ଗରେ ଥିବା ପ୍ରଧାନଶିକ୍ଷକ କହିଲେ ଯେ ସେ ହୋଟେଲବାଲା କେବେହେଲେ ପଇସା ନେବନାହିଁ। ସେ ପଇସା ଆମେ ଦେବାର ବିଧି ଅଛି। ଆମର ଶିକ୍ଷକମାନେ ଦରମା ପାଇବାବେଳେ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ଚାନ୍ଦାଦିଅନ୍ତି ଏବଂ ସେହି ପାଣ୍ଠିରୁ ଅଧିକାରୀମାନଙ୍କର ଖର୍ଚ୍ଚ ବହନ କରାଯାଏ। ମୁଁ ବଡ଼ ବିଷମରେ ପଡ଼ିଲି। ବାଧ୍ୟହୋଇ ସେଦିନ ରହିଗଲି। ପ୍ରଧାନଶିକ୍ଷକଙ୍କୁ କହିଲି, ତୁମ କେନ୍ଦ୍ରର ଏଇ ଅଞ୍ଚଳର ଶିକ୍ଷକମାନଙ୍କୁ ଖବର ଦିଅ । ସେମାନେ ସମସ୍ତେ କାଲି ଆସିଲେ ମିଶିକରି ଋଷିଦଲିକୁ ପିକ୍‌ନିକ୍‌ରେ ଯିବା। ଏ ପିକ୍‌ନିକ୍‌ର ସମସ୍ତ ଖର୍ଚ୍ଚ ମୁଁ ବହନ କରିବି। ଋଷିଦଲି ଚିକିଟି ନିକଟସ୍ଥ ଗୋଟିଏ ପାହାଡ଼ । ପାହାଡ଼ର ଅଗ୍ରଭାଗଟି ବିଭକ୍ତହୋଇ ଗୋଟିଏ ଗୁମ୍ଫା ସୃଷ୍ଟି ହୋଇଛି। ଶିକ୍ଷକମାନେ ଆସିଲେ। ଆମେ ସାଙ୍ଗରେ କିଛି ପାଣି ଓ ଜଳଖିଆ ଧରି ଋଷିଦଲିକୁ ଗଲୁ। ସେଠାରେ ମୁଁ ସେମାନଙ୍କୁ କେତେକ ଗୀତ ବୋଲାଇଲି, ପ୍ରାର୍ଥନା କରାଇଲି ଏବଂ ସେମାନଙ୍କ ସାଙ୍ଗରେ ଦୁଃଖସୁଖ ହେଲି ଏବଂ ଜଳଖିଆ ଖାଇ ସନ୍ଧ୍ୟାପୂର୍ବରୁ ଭାଲୁ ଭୟରେ ପ୍ରତ୍ୟାବର୍ତ୍ତନ କଲୁ। ଜଳଯୋଗର ସମସ୍ତ ଖର୍ଚ୍ଚ ମୁଁ ବହନ କରିଥିଲି। ତହିଁ ଆରଦିନ ସକାଳୁ ବ୍ରହ୍ମପୁର ଆସିଲି। ଚାରିପାଞ୍ଚ ଦିନପରେ ପରୀକ୍ଷା କରିଥିବା ସ୍କୁଲର ଶିକ୍ଷକ ଆସି ପହଞ୍ଚିଲେ ଆମ ଅଫିସ୍‌ରେ। ମୋତେ ବରାବର ଲଗାଇଲେ ସବୁ ପିଲାଙ୍କୁ ସାର୍ଟିଫିକେଟ୍ ଦେବାକୁ। ମୁଁ ତାଙ୍କୁ କହିଲି ଯେ, ତାଙ୍କର ପାଞ୍ଚଟି ପିଲାଙ୍କ ମଧ୍ୟରୁ କେବଳ ଦୁଇଜଣଙ୍କୁ ସାର୍ଟିଫିକେଟ୍ ଦିଆଯିବ। ଅନ୍ୟ ତିନିଜଣ ଅତି ଦୁର୍ବଳ। ସେମାନେ ଆଉ ବର୍ଷେ ନିଶ୍ଚୟ ପଢ଼ିବେ। ଶିକ୍ଷକଜଣକ କାଛିର ପୁଅଟିକୁ ପାସ୍ କରାଇଦେବା ପାଇଁ ବହୁତ କହିଲେ। କିଛି ଶୁଣିଲି ନାହିଁ। ଶିକ୍ଷକ ଦୁଇଟି ପିଲାଙ୍କ ସାର୍ଟିଫିକେଟ୍ ଧରି ବାଧ୍ୟହୋଇ ଫେରିଗଲେ।

ଆଉଦିନେ ପାତ୍ରପୁରର ଗୋଟିଏ ସ୍କୁଲ ଦେଖିବାକୁ ଗଲି। ସ୍କୁଲ ଦେଖିସାରିବା ପରେ ସ୍କୁଲର ଶିକ୍ଷକ ଦ୍ୱିତୀୟ ଶିକ୍ଷକଙ୍କ ପାଇଁ ଗ୍ରାଣ୍ଟ ମଞ୍ଜୁର କରିବାକୁ ଅନୁରୋଧ କଲେ। ମୁଁ ନିୟମ ଅନୁଯାୟୀ କାଉନ୍‌ସିଲକୁ ପ୍ରସ୍ତାବ ଦେବାପାଇଁ ପ୍ରତିଶ୍ରୁତି ଦେଲି। ତାପରେ ମୁଁ, ମୋର ପିଅନ ଓ ଶିକ୍ଷକ ଚାଲିଚାଲି ଆସି ବସ୍‌କୁ ଅପେକ୍ଷା କଲୁ। ସେତେବେଳେ ଯୁଦ୍ଧ ସମୟ। କୋଇଲାବସ ଚାଲିଥାଏ। ଧଡ଼ଧଡ଼ ନିନାଦକରି କୋଇଲାବସ୍ ଆମେ ଦଣ୍ଡାୟମାନ ଥିବା ସ୍ଥଳରେ ପହଞ୍ଚିଲା। ମୁଁ ଆଉ ମୋର ପିଅନ ଗାଡ଼ିକୁ ଚଢ଼ି ବସିଗଲୁ। ସେତେବେଳେ ଗାଡ଼ି ବେଶି ସମୟ ଅପେକ୍ଷା କରିବାର ଅବସ୍ଥାରେ ନଥାଏ। ଆମେ ବସିବା କ୍ଷଣି ଗାଡ଼ି ଛାଡ଼ିଦେଲା। ଯା ଭିତରେ ଉକ୍ତ ଶିକ୍ଷକ ଡ୍ରାଇଭର ପାଖକୁ ଯାଇ ତାଙ୍କୁ ଟଙ୍କାଟିଏ ବଢ଼ାଇ ଦେଇଥିଲେ । ମୁଁ ଶିକ୍ଷକଙ୍କ ଉପରେ ବିରକ୍ତି ପ୍ରକାଶ 'କଲାବେଳକୁ ମୋର ସହଯାତ୍ରୀ, ବୋଧହୁଏ କେତେଜଣ ଓକିଲ, ମୁଁ ସ୍କୁଲ ଅଧିକାରୀ ବୋଲି ଜାଣିପାରି କହିଲେ ସେ

ବସ୍‌ଭଡ଼ାଟି ଶିକ୍ଷକଙ୍କର ଦେବାକଥା। ଆପଣ କାହିଁକି ବିରକ୍ତ ହେଉଛନ୍ତି। ସେତେବେଳେ ସେହିସ୍ଥାନରୁ ବ୍ରହ୍ମପୁରକୁ ବସଭଡ଼ା ଥିଲା ଟଙ୍କାଟିଏ। ସୁତରାଂ ସେଦିନ ଉପାୟଶୂନ୍ୟ ହୋଇ ବିଚ୍‌ଦାଣ୍ଡରେ ମୋତେ ଲାଞ୍ଚ ନେବାକୁ ପଡ଼ିଲା। ବ୍ରହ୍ମପୁର ଫେରିଆସି ଦେଖିଲି ମୋର ଫୁଲବାଣୀ ମଧ୍ୟଇଂରାଜୀ ବିଦ୍ୟାଳୟକୁ ବଦଳି ହୋଇଯାଇଛି ଏବଂ ତୁରନ୍ତ ଯୋଗଦେବାକୁ ଆଦେଶ ହୋଇଛି। ସୁତରାଂ ମୁଁ ଫୁଲବାଣୀ ଚାଲିଯିବାରୁ ମାଷ୍ଟ୍ରଙ୍କ ଟଙ୍କାଟିଏ ମୋ ପାଖରେ ରହିଗଲା। ଏହା ୧୯୪୨ ମସିହା ପ୍ରାରମ୍ଭର କଥା।

୧୯୫୮ ମସିହାରେ ମୁଁ ଗଞ୍ଜାମ ଜିଲ୍ଲାର ଡି.ଏସ୍.ଇ.ଓ.ହୋଇ ବ୍ରହ୍ମପୁରରେ ଅବସ୍ଥାପିତ ହେଲି। ପୁଣି ସେଇ ଇଲାକାକୁ ଟୁର୍‌ରେ ଯାଇ ଉକ୍ତ ଶିକ୍ଷକଙ୍କ ଖୋଜଖବର ନେଇ ଜାଣିଲି ଯେ ସେ ଆଉ ଇହଧାମରେ ନାହାଁନ୍ତି। ମୋର ଚିକିଟି ରହଣିକାଳରେ ଚିକିଟି ସ୍କୁଲର ସେଇ ପ୍ରଧାନଶିକ୍ଷକ ଶ୍ରୀ ଲୋକନାଥ ପଣ୍ଡା ଗୋଟିଏ ଛୋଟକାଟ ଭୋଜିକରି ମୋତେ ଏବଂ କେତେକ ଭଦ୍ରଲୋକଙ୍କୁ ଡାକିଥିଲେ ଏବଂ ସ୍କୁଲ ପିଲାଙ୍କର ଗୀତନାଚ କରାଇଥିଲେ । ମୋତେ ଭାରି ଖୁସି ଲାଗିଥିଲା।

## ଫୁଲବାଣୀ ଏମ୍.ଇ. ସ୍କୁଲ

୧୯୪୦ ମସିହାର ପ୍ରାରମ୍ଭରେ ଫୁଲବାଣୀ ମଧ୍ୟଇଂରାଜୀ ବିଦ୍ୟାଳୟର ସହକାରୀ ପ୍ରଧାନଶିକ୍ଷକ ଭାବରେ ଯୋଗଦାନ କଲି। ସେତେବେଳେ ଏଇ ଶ୍ରେଣୀର ଶିକ୍ଷକମାନଙ୍କ ଦରମା ଥିଲା ୬୫ରୁ ୧୦୫ଟଙ୍କା । ଦୁଇବର୍ଷରେ ଚାରିଟଙ୍କା ବଢ଼ିବାର ବ୍ୟବସ୍ଥା ଥିଲା। ଅତିରିକ୍ତ ମହଙ୍ଗାଭତ୍ତା ଥିଲା ୨୦ଟଙ୍କା । ସେତେବେଳେ ଓଡ଼ିଶାରେ ଦୁଇଗୋଟି ସରକାରୀ ମ.ଇ. ସ୍କୁଲ ଥିଲା। ବର୍ଷକପରେ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ହିସାବରେ ଅତିରିକ୍ତ ଭତ୍ତା ୫୦ଟଙ୍କା ମିଳିଲା। ଚତୁର୍ଥ ଓ ପଞ୍ଚମ ଶ୍ରେଣୀରେ ଇଂରାଜୀ ପଢ଼ାଇବା ପାଇଁ କୁହାଗଲା। ସେତେବେଳେ ଉଚ୍ଚପ୍ରାଥମିକ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କୁ ପଞ୍ଚମ ଶ୍ରେଣୀରେ ନାମଲେଖାଇ ଇଂରାଜୀରେ ଅତିରିକ୍ତ ତାଲିମ ଦିଆଯାଉଥିଲା ଏବଂ ଛଅମାସ ପରେ ଷଷ୍ଠଶ୍ରେଣୀରେ ସେମାନେ ପ୍ରବେଶ କରୁଥିଲେ।

ସେତେବେଳେ ଗଞ୍ଜାମ ଜିଲ୍ଲାର ଶିକ୍ଷା ଅଫିସର କନ୍ଧମାଳର ସ୍କୁଲ ଇନିସ୍‌ପେକ୍ଟର ହିସାବରେ ଦାୟିତ୍ୱ ତୁଲାଉଥିଲେ । ଥରେ ଏହି ଅଫିସର ହରିହର ମିଶ୍ର ତତ୍କାଳୀନ ଶିକ୍ଷାବିଭାଗ ଡାଇରେକ୍ଟର ଶ୍ୟାମଚରଣ ତ୍ରିପାଠୀଙ୍କ ସହ ସ୍କୁଲ ପରିଦର୍ଶନରେ ଆସିଥିଲେ । ସେଠାରେ ହରିହର ମିଶ୍ର ତ୍ରିପାଠୀ ସାହେବଙ୍କୁ କହିଲେ ଯେ, ଇଂରାଜୀ ଶିକ୍ଷାକୁ ପ୍ରାଥମିକସ୍ତର ଅପେକ୍ଷା ମାଧ୍ୟମିକ ସ୍ତରରେ ଶିକ୍ଷାଦେଲେ ଛାତ୍ରମାନେ ଇଂରାଜୀ ଶିକ୍ଷାକୁ ଅଧିକ ଆୟତ୍ତ କରି ପାରିବେ।

ପ୍ରଧାନଶିକ୍ଷକ ଭାବରେ କାର୍ଯ୍ୟ କରୁଥିବା ଉଦୟନାଥ ମହାନ୍ତି, ପୂର୍ଣ୍ଣଚନ୍ଦ୍ର ଦାସ ଓ ବ୍ରଜବିହାରୀ ପଟ୍ଟନାୟକଙ୍କ ପରେ ମୁଁ ୧୯୪୬ ମସିହାରେ ଉକ୍ତ ସ୍କୁଲର ପ୍ରଧାନଶିକ୍ଷକ

ଦାୟିତ୍ୱ ଗ୍ରହଣକରିଥିଲି । ଯେତେବେଳେ କନ୍ଧମାଳ, ଗଞ୍ଜାମ ଜିଲ୍ଲାର ଗୋଟିଏ ସବ୍‌ଡିଭିଜନ ଥିଲା । ବୃନ୍ଦାବନ ଚନ୍ଦ୍ର ପଟ୍ଟନାୟକ ଏସ୍.ଡି.ଓ. ହିସାବରେ ଯୋଗଦେବା ପରେ ଆମେ ଦୁଇଜଣ ସ୍କୁଲଟିକୁ ହାଇସ୍କୁଲରେ ପରିଣତ କରିବାକୁ ଲାଗିପଡ଼ିଲୁ । ଏହାଛଡ଼ା କନ୍ଧମାଳ ଜନସାଧାରଣଙ୍କ ପକ୍ଷରୁ ମଧ୍ୟ ପ୍ରବଳ ସ୍ୱର ଉତ୍ତୋଳନ କରାଯାଉଥିଲା । କିନ୍ତୁ ଶିକ୍ଷାବିଭାଗ ଏବଂ ତତ୍କାଳୀନ ଏମ.ଏଲ.ଏ. ଏହାର ବିରୋଧ କରୁଥିଲେ । ସେମାନଙ୍କର ଯୁକ୍ତିଥିଲା ଯେ, ଉଦୟଗିରି ହାଇସ୍କୁଲଟି ଭଲ ଚଳୁନଥିଲା । ପୁଣି ଟିକାବାଲିର ଲୋକେ ମଧ୍ୟ ହାଇସ୍କୁଲ ପ୍ରତିଷ୍ଠା ପାଇଁ ଦାବି କରୁଥିଲେ । ଏ ସମୟରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ଫୁଲବାଣୀ ପରିଦର୍ଶନରେ ଆସିଥିଲେ । ସେ ଆମ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବରେ ଛାତ୍ରମାନଙ୍କ କୃତିତ୍ୱ ଦେଖି, ସ୍କୁଲ, ଛାତ୍ରାବାସ ପରିଦର୍ଶନ କରି ଏବଂ ଛାତ୍ରମାନଙ୍କର ଖାତା-ପତ୍ର ଲେଖାଲେଖି ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ଗୋଟିଏ ସାଧାରଣସଭାରେ ଏଠାରେ ହାଇସ୍କୁଲ ହେଲା ବୋଲି ଘୋଷଣା କରିଥିଲେ । ମୁଁ ଅଷ୍ଟମ ଶ୍ରେଣୀରେ ୧୪ଜଣ ପିଲାଙ୍କ ନାମ ଲେଖାଇଥିବା, ସମୟରେ ସରକାରଙ୍କ ଦ୍ୱାରା ନିର୍ବାଚିତ ହୋଇ ମୌଳିକ ଶିକ୍ଷାରେ ତାଲିମ୍ ପାଇବାପାଇଁ ସେବାଗ୍ରାମ ଚାଲିଗଲି । ମନ୍ତ୍ରୀଙ୍କୁ ଡାକି ମୁଁ ଗୋଟିଏ ସରକାରୀ ସ୍କୁଲ କରିଦେଲି ବୋଲି ଡି.ପି.ଆଇ. ମୋ ଉପରେ ବିରକ୍ତି ପ୍ରକାଶ କଲେ । ପରେ ଏହି ହାଇସ୍କୁଲଟି ଉଲନ୍‌ବେଗ୍ ହାଇସ୍କୁଲ ନାମରେ ପରିଚିତ ହେଲା । ଫୁଲବାଣୀରେ ଥିବା ସମୟରେ ମୁଁ ରାଜ୍ୟପାଳଙ୍କୁ ମଧ ଏଣ୍ଟରଟେନ୍ କରିଥିଲି ।

ମୁଁ ଫୁଲବାଣୀରେ ଥିବା ସମୟରେ ରାଜ୍ୟପାଳ ହଥର୍ନ ଲୁଇ ଓ ଚନ୍ଦୁଲାଲ ତ୍ରିବେଦୀ ସ୍କୁଲ ପରିଦର୍ଶନ କରିଥିଲେ । ଚନ୍ଦୁଲାଲ ତ୍ରିବେଦୀଙ୍କ ପରିଦର୍ଶନ ସମୟରେ ମୁଁ ପ୍ରଧାନଶିକ୍ଷକ ଥିଲି । ସ୍କୁଲ ପାଖରେ ଥିବା ପଡ଼ିଆରେ ଗୋଟିଏ ଆଦର୍ଶ ସହର ଓ ଆଦର୍ଶ ଗାଁ କରିଥିଲି । ରାଜ୍ୟପାଳ ବୁଲି ଦେଖିବାପରେ ଭାରି ଖୁସି ହୋଇଥିଲେ । କଥାବାର୍ତ୍ତା ସମୟରେ ରାଜ୍ୟପାଳ ମୋର ଗୋଟିଏ ଇଂରାଜୀ ଉଚ୍ଚାରଣକୁ ସଂଶୋଧନ କରିଥିଲେ ।

ଏହା ୧୯୪୬-୪୭ ମସିହା କଥା । ଚନ୍ଦୁଲାଲ ତ୍ରିବେଦୀ ଫୁଲବାଣୀରୁ ଫେରି ଜି.ଉଦୟଗିରି ଗଲେ । ଗଞ୍ଜାମ ଜିଲ୍ଲାର ଜିଲ୍ଲାପାଳ ବ୍ରାଇସନ ସାହେବ ଆମ ସ୍କୁଲକୁ ଏଥିପୂର୍ବରୁ ପୁରସ୍କାର ବିତରଣୀକୁ ଆସିଥିବାରୁ ମୋତେ ଭଲକରି ଚିହ୍ନିଥିଲେ ଏବଂ ଫୁଲବାଣୀ ଏସ୍.ଡି.ଓ. ଛତିଶ ମିତ୍ରଙ୍କ ସୁପାରିଶକ୍ରମେ ତାଙ୍କରି ଜରିଆରେ ଜିଲ୍ଲାପାଳ ମୋତେ ରାଜ୍ୟପାଳଙ୍କୁ ଏଣ୍ଟରଟେନ୍ କରିବା ପାଇଁ ବାର୍ତ୍ତା ପଠାଇଥିଲେ । ମୁଁ ଉଦୟଗିରି ଗଲି । ସେଠାରେ ସେଦିନ ସନ୍ଧ୍ୟାରେ କେତେଗୁଡ଼ିଏ ଗୀତ ଆଉ କ୍ୟାରିକେଚର କରି ସମସ୍ତଙ୍କୁ ଆପ୍ୟାୟିତ କରିଥିଲି । କେରିକେଚରଟି ଥିଲା ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ଉଦୟଗିରିର ପାଦ୍ରୀ ଇଭ୍ରାନ୍ ସାହେବଙ୍କୁ ନେଇ । କିନ୍ତୁ କାହାଣୀରେ ଥିଲା ୧୯୪୦ ମସିହାରେ ରେଭେନ୍‌ସା କଲେଜ ହଲରେ ବସିଥିବା ଏସେମ୍ବ୍ଲିର ଗୋଟିଏ ଦୃଶ୍ୟ । ଇଭ୍ରାନ୍ ସାହେବ

ସେତେବେଳେ ଦର୍ଶକମଣ୍ଡଳୀର ଆଗଧାଡ଼ିରେ ବସିଥାନ୍ତି। ସେ ଏହାଦେଖି ରାଜ୍ୟପାଳଙ୍କ ଏ.ଡି.ସି. ରାମକୃଷ୍ଣ ପାଢ଼ୀଙ୍କୁ କହିଲେ, Who is this fellow, He is hitting at me and Pandit Godabarish.

ଗୋଟିଏ ଦିନର କଥା। ମୁଁ ଶ୍ରେଣୀରେ ପଢ଼ାଉଥିବାବେଳେ ଜଣେ ମଫସଲି ଆଦିବାସୀ ଶ୍ରେଣୀକକ୍ଷ ମଧ୍ୟରେ ପ୍ରବେଶକରି କିଛି କହିବାକୁ ଚେଷ୍ଟା କରିବାରୁ ମୁଁ ତାକୁ ପଛବେଞ୍ଚରେ ବସାଇଦେଲି। ପାଠପଢ଼ା ସରିବାପରେ ମୁଁ ତା ସହିତ କଥାବାର୍ତ୍ତା କଲି। ବୁଝିଲି ଯେ ସେ ଆମର ଗୋଟିଏ ଆଦିବାସୀ ଛାତ୍ରର ବାପା। ପିଲାଟି ଛାତ୍ରାବାସରୁ ଯାଇ ଅନେକଦିନ ଗାଁରେ ରହିଯିବାରୁ ମୁଁ ଛାଟିଆ ବା ପିଆଦା ପଠାଇଥିଲି। ସେଥିରେ ସେ ଭୟଭୀତ ହୋଇ ଆସି ମୋତେ କହିଲା, "ଏବେ ଆମର କ୍ଷେତରେ କାମ କବାର ଲାଗିଛି ଆଉ ମୋର ଭେଣ୍ଡିଆ ପିଲାଟା ନହେଲେ କାମ କବାର କିମିତି ହେବ ? ସେ ଗାଁରେ ଆଠଦଶ ଦିନ ରହିବ। ମୁଁ ଆସିଛି ମୋତେ ରଖ।" ମୁଁ ତାକୁ ସାତଦିନ ପରେ ପିଲାକୁ ପଠାଇଦେବା ପାଇଁ କହିଲି। ଏଇ ପ୍ରଥା ଗୋରାଶାସକମାନଙ୍କ ପ୍ରତ୍ୟକ୍ଷ ଶାସନ ବେଳୁ ରହି ଆସିଥିଲା। ସେ ଲୋକ ଭାବିଥିଲା ଯେ, ଏଇଠି ବେଠିକଲେ ତାର ପିଲାକୁ ପଠାଇବାର ଦୋଷ କଟିଯିବ।

ବହୁତ ଚେଷ୍ଟାସତ୍ତ୍ୱେ ମୋ ଋକିରିକାଳ ମଧ୍ୟରେ ଗୋଟିଏ ହେଲେ ଦଳିତ ପିଲା ମ.ଇ. ସ୍କୁଲ ପରୀକ୍ଷାରେ ପାସ୍ କରିପାରି ନଥିଲେ।

## ସେବାଗ୍ରାମରେ ତାଲିମ୍

**କିପରି ମନୋନୀତ ହେଲି :** ସେବାଗ୍ରାମରେ ତାଲିମ ପାଇବାପାଇଁ କେତେଜଣ ଶିକ୍ଷକଙ୍କୁ ଡକାଯାଇଥିଲା। ସେମାନେ ଗୋଟିଏ କମିଟି ଆଗରେ ଉପସ୍ଥିତ ହେବାର ଆଦେଶ ହେଲା। କମିଟିରେ ଡି.ପି.ଆଇ. ଶ୍ୟାମାଚରଣ ତ୍ରିପାଠୀ, ଟ୍ରେନିଂ କଲେଜର ଅଧକ୍ଷ ମହେଶ ଚନ୍ଦ୍ର ପ୍ରଧାନ, ମୌଳିକ ଶିକ୍ଷକ ସଂଗଠକ ହରିହର ମିଶ୍ର ଏବଂ ସେବାଗ୍ରାମ ତାଲିମକେନ୍ଦ୍ରର ସେକ୍ରେଟେରୀ E.W. Aryanayakam ଥିଲେ। ଏଇ କମିଟି ଆଗରେ ମୋତେ ମିଶାଇ ତିନିଜଣ ଶିକ୍ଷକ ଉପସ୍ଥିତ ଥିଲେ। ଅନ୍ୟକେହି ଆସିଲେ ନାହିଁ। ଏଇ ତିନିଜଣଙ୍କ ଭିତରୁ କେବଳ ଜଣକୁ ମନୋନୀତ କରାଗଲା। ମୁଁ ମନୋନୀତ ହୋଇପାରିଲି ନାହିଁ । କାରଣ ହେଲା, ମୋତେ ଆର୍ଯ୍ୟନାୟକମ୍ ପ୍ରଶ୍ନକଲେ ଯେ ମୁଁ ନିଜେ ସୂତାକାଟି ଜାଣେ କି ? ମୁଁ ପିନ୍ଧିଥିବା ଖଦଡ଼ର ସୂତା ନିଜେ କାଟିଛି କି ? ମୋ ସ୍କୁଲରେ ଛାତ୍ରମାନଙ୍କ ମଧ୍ୟରେ ସୂତାକଟାର ପ୍ରବର୍ତ୍ତନ କରିଛି କି ? ମୁଁ କେବଳ ତକଲିରେ ସୂତାକାଟିବା ଜାଣିଛି ବୋଲି କହି ଅନ୍ୟଦୁଇଟି ପ୍ରଶ୍ନର ଉତ୍ତରରେ ନା କହିବାରୁ ଆର୍ଯ୍ୟନାୟକମ୍ ବିରକ୍ତି ପ୍ରକାଶ କଲେ। କିନ୍ତୁ ମହେଶଚନ୍ଦ୍ର ପ୍ରଧାନ ମୁଁ ସତ୍ୟ ଓ ଯୁକ୍ତିଯୁକ୍ତ କଥା କହିଥିବାରୁ ମୋତେ ସମର୍ଥନ

କଲେ। ଯାହାହେଉ ମୁଁ ନିର୍ବାଚିତ ହୋଇପାରିଲି ନାହିଁ। କିନ୍ତୁ ଶିକ୍ଷାମନ୍ତ୍ରୀ ଫୁଲବାଣୀରେ ମୋର କାର୍ଯ୍ୟାବଳୀରେ ସନ୍ତୁଷ୍ଟ ହୋଇଥିବାରୁ ନିଜେ ମୌଳିକଶିକ୍ଷାରେ ତାଲିମ୍ ପାଇବା ପାଇଁ ମୋତେ ମନୋନୀତ କଲେ।

ମୁଁ ଆଉ ଅନ୍ୟ ଶିକ୍ଷକବନ୍ଧୁ ଅଗାଧୁ ମିଶ୍ର ଅନୁଗୁଳ ବେସିକ ଟ୍ରେନିଂସ୍କୁଲରେ ସେବାଗ୍ରାମ ଯିବାପୂର୍ବରୁ ପ୍ରାଥମିକ ତାଲିମ୍‌ରେ ଯୋଗଦେଲୁ । କିନ୍ତୁ ବନ୍ଧୁଜଣକ ପ୍ରାଇମେରୀ ସ୍କୁଲ ଶିକ୍ଷକମାନଙ୍କ ସାଙ୍ଗରେ ତାଲିମ ପାଇବା, ପାଇଖାନା ସଫାକରିବା, ବଗିଚାକାମ କରିବାପାଇଁ ଘୃଣା ପ୍ରକାଶକଲେ ଏବଂ ଶ୍ରେଣୀଗୃହରେ ନାନା ଯୁକ୍ତିତର୍କ କରି ତାଲିମରେ ଅସହଯୋଗ କରି ତାଲିମ ଛାଡ଼ି ଚାଲିଗଲେ। ଆଉ ଜଣେ ଶିକ୍ଷାବିଭାଗର ବାହାରେ ଥିବା ନବବାବୁଙ୍କର ଭଣଜା ତାଲିମରେ ଯୋଗ ଦେଇଥିଲେ । କିନ୍ତୁ ସେ ମଧ୍ୟ ଛାଡ଼ି ଚାଲିଗଲେ।

ମୁଁ ଅନୁଗୁଳ ତାଲିମକେନ୍ଦ୍ରରେ ଥିବାବେଳେ ୧୯୪୭ ଅଗଷ୍ଟ ୧୫ତାରିଖ ଦିନ ଦେଶ ସ୍ୱାଧୀନତା ଲାଭକଲା। ବାଜିରାଉତ ଛାତ୍ରାବାସରେ ନବବାବୁ ଓ ମାଳତୀ ଚୌଧୁରୀଙ୍କ ଉପସ୍ଥିତରେ ନବଜୀବନ ମଣ୍ଡଳ ଓ ବାଜିରାଉତ ଛାତ୍ରାବାସର ସମସ୍ତ ଅନ୍ତେବାସୀ ଏବଂ ଆମ୍ଭେମାନେ ମହାଆନନ୍ଦ ଉତ୍ସାହ ଏବଂ ଆଡ଼ମ୍ବର ସହିତ ସ୍ୱାଧୀନତାଦିବସ ପାଳନ କରିଥିଲୁ । ସେଦିନ ସାରା ରାତି ନାନା ଗୀତ, ନାଚ ଓ ଅଭିନୟ ଆଦି କରିଥିଲୁ। ଏଥିରେ ମୁଁ ଏବଂ ନବବାବୁଙ୍କ ଭଣଜା ସୁରେନ୍ଦ୍ର ମହାନ୍ତି ବିଶେଷ ଭୂମିକା ନେଉଥିଲୁ।

ତାପରେ ଯଥାସମୟରେ ସେବାଗ୍ରାମରେ ପହଞ୍ଚିଲାବେଳକୁ ଦେଖିଲି ଯେ ଆଉ ଦଶଜଣ ଶିକ୍ଷକ ଓଡ଼ିଶାରୁ ଯାଇ ସେଠାରେ ଉପସ୍ଥିତ ହେଲେ । ଏମାନେ ସମସ୍ତେ ମୌଳିକ ଶିକ୍ଷା ସଂଗଠକଙ୍କ ଦ୍ୱାରା ନିର୍ବାଚିତ ହୋଇଥିଲେ ।

**ନଇ ତାଲିମ ଭବନ :** ସେବାଗ୍ରାମରେ କେବଳ ଓଡ଼ିଶାରୁ ନୁହେଁ, ଭାରତର ପ୍ରତ୍ୟେକ ପ୍ରାନ୍ତରୁ ଏବଂ ନେପାଳରୁ ମଧ୍ୟ ଶିକ୍ଷାର୍ଥୀ ଶିକ୍ଷାର୍ଥିନୀମାନେ ମୌଳିକଶିକ୍ଷା ପାଇବାପାଇଁ ଯାଇଥିଲେ। ତାଛଡ଼ା କେତେଗୁଡ଼ିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନର ମୁଖ୍ୟ ବା କର୍ମୀ ତାଲିମପାଇଁ ଯାଇଥିଲେ। ଓଡ଼ିଶାରୁ ସରକାରୀ କର୍ମଚାରୀ ଭାବେ ମୁଁ, ଉଦୟନାଥ ଆଚାର୍ଯ୍ୟ, ବାମନ ମିଶ୍ର, ହରେକୃଷ୍ଣ ମହାନ୍ତି, ଆଦିକନ୍ଦ ନାୟକ, ନିରୁପମା ପାଢ଼ୀ ଏବଂ ପ୍ରମୋଦିନୀ ପ୍ରଧାନ ଇତ୍ୟାଦି ଯାଇଥିଲାବେଳେ ବେସରକାରୀ ଭାବେ ହରେକୃଷ୍ଣ ବହିଦାର ଓ ଇନ୍ଦୁ ରଥ ମଧ୍ୟ ସେଠାରେ ତାଲିମପାଇଁ ଉପସ୍ଥିତ ଥିଲେ। ଏଠାରେ ମୌଳିକ ଶିକ୍ଷାକେନ୍ଦ୍ରକୁ ନଇତାଲିମ ଭବନ ବୋଲି କହୁଥିଲେ। ସେଇ କେନ୍ଦ୍ରଟି ଗାନ୍ଧିଜୀଙ୍କର ସାମୟିକ ବାସସ୍ଥଳୀ କୁଟୀର ସଂଲଗ୍ନ ଥିଲା ଏବଂ ମଝିରେ ଆଶାଦେବୀ ଓ ଆର୍ଯ୍ୟନାୟକମ୍‌ଙ୍କର ରହିବା ଘର। ଆଶାଦେବୀ ଥିଲେ ତାଲିମକେନ୍ଦ୍ରର ଅଧକ୍ଷା ଏବଂ ତାଙ୍କର ସ୍ୱାମୀ E.W. Aryanayakam ଥିଲେ ନଇତାଲିମ ଅନୁଷ୍ଠାନର ସେକ୍ରେଟେରୀ । ଆଶାଦେବୀ ଥିଲେ ସୁପଣ୍ଡିତା, ବୁଦ୍ଧିମତୀ ଏବଂ ସୁବକ୍ତା । ଆର୍ଯ୍ୟନାୟକମ୍ ମୂଳତଃ ଶ୍ରୀଲଙ୍କାର ଲୋକ। ସେ

ଥିଲେ ଅକ୍ସଫୋର୍ଡ ଗ୍ରାଜୁଏଟ୍ । ଦୀର୍ଘକାୟ ଏବଂ ଅଳ୍ପଭାଷୀ। ସେ ଅଳ୍ପଦିନ ପାଇଁ ରବୀନ୍ଦ୍ରନାଥ ଠାକୁରଙ୍କ ସେକ୍ରେଟେରୀ ମଧ୍ୟ ଥିଲେ।

ମୁଁ ସେବାଗ୍ରାମରେ ଥିଲାବେଳେ ମୋର ଗୀତ, ନାଚ ଏବଂ କାମଦ୍ୱାରା ସମସ୍ତଙ୍କ ପାଖରେ ପ୍ରିୟପାତ୍ର ହୋଇ ପାରିଥିଲି। ବିଶେଷକରି ଆଶାଦେବୀ ମୋତେ ବହୁତ ଭଲପାଉଥିଲେ ଏବଂ ଯେତେବେଳେ ଦେଶବିଦେଶରୁ କୌଣସି ବିଶିଷ୍ଟ ଅତିଥି ନଇତାଲିମ ଭବନକୁ ଆସୁଥିଲେ, ଆଶାଦେବୀ ମୋତେ ସେମାନଙ୍କ ସହିତ ପରିଚିତ କରାଇ ଦେଉଥିଲେ।

ନାନାଅଞ୍ଚଳରୁ ବହୁ ଉଚ୍ଚଶିକ୍ଷିତ ଏବଂ ଦେଶପ୍ରାଣ ବ୍ୟକ୍ତିମାନେ ସେଠାକୁ ତାଲିମପାଇଁ ଯାଉଥିଲେ । କିନ୍ତୁ ନାନା ପ୍ରାନ୍ତରରୁ ଯଥା - ଓଡ଼ିଶା, ବେଙ୍ଗଲ, ଆସାମ, ବିହାର, ତାମିଲନାଡୁ ଓ ଆନ୍ଧ୍ର ଇତ୍ୟାଦିରୁ ଯାଇଥିବା ମୋପରି ସରକାରୀ କର୍ମଚାରୀମାନଙ୍କ ପାଇଁ ଏ ତାଲିମ ବଡ଼ କଷ୍ଟକର ହୋଇଥିଲା। ସକାଳ ପାଞ୍ଚଟାରୁ ଉଠି ନିତ୍ୟକର୍ମ ସାରି ପ୍ରାର୍ଥନା ଓ ଜଳଖିଆ ପରେ ଆମ୍ଭେମାନେ ଟୋଲିକାମ (Group Duty)ରେ ଯାଉଥିଲୁ। ସେଗୁଡ଼ିକ ହେଲା ରୋଷେଇ, ପାଇଖାନା ସଫା ଇତ୍ୟାଦି। ପ୍ରତ୍ୟେକଦିନ ଆଠଟାରୁ ବାରଟା ପର୍ଯ୍ୟନ୍ତ ଶିକ୍ଷା ଶ୍ରେଣୀଗୃହରେ ବୌଦ୍ଧିକଶିକ୍ଷା ଦିଆଯାଉଥାଏ । ସାଢ଼େବାରଟା ପରେ ସମସ୍ତେ ସେହି ଶ୍ରେଣୀଗୃହରେ ଏକାଠି ବସି ଭୋଜନ କରୁଥିଲୁ । ଆମ ସାଙ୍ଗରେ ଅଧ୍ୟକ୍ଷ, ସେକ୍ରେଟେରୀ ଏବଂ ମୌଳିକ ସ୍କୁଲର ଛାତ୍ରଛାତ୍ରୀମାନେ ମଧ୍ୟ ଏକାଠିବସି ଭୋଜନ କରୁଥିଲେ। ବାସନ ମାଜିବା ଆଦି କାମ କରୁଥିଲେ। ପରଷିବା, ଘରସଫା କରିବା, ବାସନ ମାଜିବା ଆଦି କାମ ଆମେମାନେ ପାଳିକରି ଟୋଲି ଅନୁସାରେ କରୁଥିଲୁ। ଉପରଓଳି ସାଢ଼େଦୁଇଟାରୁ ଶ୍ରେଣୀଗୃହରେ ଶିକ୍ଷାଦାନ କରାଯାଉଥିଲା। ତା'ଛଡ଼ା ତକଲିରେ ସୂତାକାଟିବା ଏବଂ ତୁଳାଭିଣିବା କାର୍ଯ୍ୟ ଆଦି ମଧ୍ୟ ଆମେ ଶିଖୁଥିଲୁ। ସନ୍ଧ୍ୟା ୫.୩୦ରେ ଭୋଜନ କରିବାକୁ ପଡୁଥିଲା ଏବଂ ୬.୩୦ରେ ପ୍ରାର୍ଥନା ଏବଂ କିଛି ସଂସ୍କୃତିକ କାର୍ଯ୍ୟକ୍ରମର ବ୍ୟବସ୍ଥା ଥିଲା। ଶ୍ରେଣୀଗୃହରେ ବିଶିଷ୍ଟ ବ୍ୟକ୍ତି ହିସାବରେ ବିନୋବା ଭାବେ, କାକା କଲେଲକର, କୁମାରାପ୍ପା, ଶ୍ରୀମନ ନାରାୟଣ ଅଗ୍ରୱାଲ ଏକାଦିକ୍ରମେ ଆମମାନଙ୍କୁ ବହୁବାର ଶିକ୍ଷାପ୍ରଦାନ କରିଛନ୍ତି। ବିଶିଷ୍ଟବ୍ୟକ୍ତି ହିସାବରେ ଡ.ରାଜେନ୍ଦ୍ର ପ୍ରସାଦ, ଜବାହରଲାଲ ନେହେରୁ, ଜାକିର ହୁସେନ, ରାଜକୁମାରୀ ଅମୃତକାଉର ଏବଂ ବହୁ ବିଦେଶାଗତ ବ୍ୟକ୍ତିଙ୍କ ଠାରୁ ଅନେକ ମୂଲ୍ୟବାନ କଥା ଶୁଣିବାକୁ ସୁବିଧା ମିଳିଥିଲା।

ଥରେ ଆମେ ବିନୋବାଜୀଙ୍କ ଆଶ୍ରମ ପୌନାର ଯାଇଥିଲୁ । ସେଠାରେ ବିନୋବାଜୀଙ୍କ ସାଙ୍ଗେ ବହୁ ବିଷୟରେ ଆଲୋଚନା ହୋଇଥିଲା। ମୋର ବନ୍ଧୁମାନଙ୍କ ଅନୁରୋଧକ୍ରମେ ମୁଁ ବିନୋବାଜୀଙ୍କୁ ଗୋଟିଏ ଓଡ଼ିଆ ଭଜନ ଶୁଣାଇଥିଲି। ବିନୋବାଜୀ

ଭଜନ ଶୁଣି ଖୁସିହେଲେ ଏବଂ କହିଲେ ଯେ, ଏହା ଗୋଟିଏ ଭଲ ବଙ୍ଗାଳୀ ଭଜନ। ମୁଁ ତାଙ୍କୁ ଏହା ଓଡ଼ିଆ ଭଜନ ବୋଲି ବୁଝାଇଦେଲି।

ଆଉଥରେ ଆମ ତାଲିମକେନ୍ଦ୍ରରେ ଆମେ ଆବାଳବୃଦ୍ଧବନିତା ସମସ୍ତେ ପ୍ରତିଦିନ ଭଳି ଆମର ଥାଳିଗିନା ନେଇ ଭୋଜନାଳୟରେ ଖାଇ ବସିଥିବାବେଳେ ଦେଖିଲୁ ଯେ, ଆମ ସାଙ୍ଗରେ ଜାକିର ହୁସେନ ମଧ୍ୟ ତଳେ ବସି ଭୋଜନ କରୁଛନ୍ତି। ଏହି ସମୟରେ ଆଶାଦେବୀ ମୋ ପାଖକୁ ଆସି ଗୋଟିଏ ଶ୍ଲୋକ ବୋଲିବାକୁ ଆଦେଶ ଦେଲେ । ମୁଁ ହଠାତ୍ ଏତେଲୋକଙ୍କ ଭିତରେ କି ଶ୍ଲୋକ ବୋଲିବି ଭାବି ବିବ୍ରତ ହୋଇପଡ଼ିଲି। ଆଶାଦେବୀ ବାରମ୍ୱାର ଆସି ମୋତେ ଆଦେଶଦେବାରୁ ବାଧ୍ୟହୋଇ ଶ୍ଲୋକଟିଏ ଉଚ୍ଚସ୍ୱରରେ ଆବୃତ୍ତି କଲି। ଶ୍ଲୋକଟି ହେଲା -

"ଅୟିତେ ରସନେ ପ୍ରଦୀୟତେ
ଦଧି ଦୁଗ୍ଧଂଚ ସିତା ମୁହୁର୍ମୁହୁଃ
ମରଣାବସରେ ବଦିସ୍ୟସି କ୍ଷଣମ୍ ଇନ୍ଦିବର ଲୋଚନମ ହରିଂ ।"

ଏ ଶ୍ଲୋକ ଶୁଣି ଆଶାଦେବୀ ବହୁତ ଖୁସି ହୋଗଲେ । କାରଣ ସେ ଥିଲେ ସଂସ୍କୃତରେ ପଣ୍ଡିତ । ଖାଇବା ସମୟରେ ଭୋଜନ ଅବସରରେ ଏହା ଅତ୍ୟନ୍ତ ଉପଯୋଗ ହୋଇଥିଲା । ଶ୍ଲୋକଟିର ଅର୍ଥ ହେଲା - "ହେ ମୋର ଜିହ୍ୱା, ମୁଁ ତୋତେ ମୁହୁର୍ମୁହୁ ଦହି, ଘିଅ, ଲହୁଣି ଇତ୍ୟାଦି ଖାଇବାକୁ ଦେଉଛି, ତୁ ଟିକିଏ ମୋର ମରଣାବସରରେ ପଦ୍ମଲୋଚନ ହରିଙ୍କର ନାମ ନେବୁ। ଏ ମୋର ଅନୁରୋଧ।" ମହାରାଷ୍ଟ୍ରରେ ଭୋଜନବେଳେ ସାଧୁସନ୍ଥମାନେ ଭାଗବତ ଓ ପୁରାଣରୁ ମଝିରେ ମଝିରେ କିଛି ପଙ୍‌କ୍ତି ଉଦ୍ଧାର କରିବାର ପରମ୍ପରା ଅଛି। ବୋଧହୁଏ ସେଥିପାଇଁ ଆଶାଦେବୀ ମୋତେ ଶ୍ଲୋକ ବୋଲିବାକୁ କହିଥିଲେ। ଏହି ଶ୍ଲୋକଟି ମୁଁ ହାଇସ୍କୁଲରେ ପଢ଼ିବାବେଳେ ଧର୍ମଶିକ୍ଷା କ୍ଲାସ୍‌ରେ ଶିଖିଥିଲି। ଆମ ସମୟରେ ହାଇସ୍କୁଲରେ ପଣ୍ଡିତ, ମୌଲବୀ ଏବଂ କୌଣସି ଖ୍ରୀଷ୍ଟିୟାନ ଶିକ୍ଷକ ଥିଲେ, ସେମାନେ ପିଲାମାନଙ୍କୁ ପୋଥି, ପୁରାଣ, ବାଇବେଲ୍, କୋରାନ୍‌ରୁ ସପ୍ତାହରେ ଗୋଟିଏ ପିରିଅଡ଼ ଶିକ୍ଷା ଦେଉଥିଲେ। ବ୍ରିଟିଶ ଅମଳରେ ଏଇ ବ୍ୟବସ୍ଥା ଥିଲା। କିନ୍ତୁ ସ୍ୱାଧୀନତାପ୍ରାପ୍ତି ପରେ ଏପରି ଶିକ୍ଷାଦାନ ଉଠିଗଲା । ସୁତରାଂ ଆମ ପିଲେ ଏବେ କୌଣସି ନୈତିକଶିକ୍ଷା ପାଇପାରୁ ନାହାଁନ୍ତି ଏବଂ ସେମାନେ ଅଧର୍ମୀ ହୋଇଗଲେ ବୋଲି କହିବାକୁ ହେବ।

**ଗାନ୍ଧିଜୀଙ୍କ ମୃତ୍ୟୁଖବର :** ୧୯୪୮ ମସିହା ଜାନୁଆରୀ ମାସରେ ଗାନ୍ଧିଜୀ ସେବାଗ୍ରାମ ଆସିବେ ବୋଲି ଆମେ ଅନ୍ତେବାସୀମାନେ ବଡ଼ ଉତ୍‌କଣ୍ଠା ଏବଂ ଆବେଗର ସହିତ ଅପେକ୍ଷାରେ ଥିଲୁ । ଆଉ ତିନିଦିନ ଗଲେ ସେବାଗ୍ରାମରେ ଗାନ୍ଧୀଜୀଙ୍କ ଦର୍ଶନ ମିଳିବ ବୋଲି ଆଶାଥିଲା । କିନ୍ତୁ ମୁଁ ଏବଂ ମୌଳିକସ୍କୁଲର କେତେକ ଛାତ୍ର ସନ୍ଧ୍ୟାବେଳେ

ରୋଷେଇଘର ବାସନ ମାଜୁଥିଲାବେଳେ ତନ୍ମଧ୍ୟରୁ ଜଣେ ବାଳକ ଗାନ୍ଧିଜୀଙ୍କୁ ହତ୍ୟା କରାଯାଇଛି ବୋଲି ମୋତେ କହିଲେ। ମୁଁ ତତ୍‌କ୍ଷଣାତ୍ ଅଫିସ୍ ଘରକୁଯାଇ କେରଳର ରାଧାକ୍ରିଷନ୍ ଭାଇଙ୍କୁ ଏ ବିଷୟରେ ପଚାରିବାରୁ ସେ କିଛିସମୟ ନିଶ୍ଚଳ ହୋଇଯାଇଥିଲେ ଏବଂ ବାରମ୍ବାର ପ୍ରଶ୍ନକଲାରୁ ଏହା ସତ୍ୟ ବୋଲି ପ୍ରକାଶ କରିଥିଲେ। ମୁଁ ତତ୍‌କ୍ଷଣାତ୍ ଆମ ବାସସ୍ଥଳୀ ରବୀନ୍ଦ୍ରଭବନକୁ ଯାଇ ଏଇକଥାଟି ସମସ୍ତଙ୍କୁ ଜଣାଇଲି। କେହି ମୋ କଥା ବିଶ୍ୱାସ କଲେନାହିଁ। ସେଦିନ ସନ୍ଧ୍ୟାରେ ଗାନ୍ଧିଜୀଙ୍କ ଆଶ୍ରମରେ ପ୍ରାର୍ଥନାସଭାର ଆୟୋଜନ କରାଗଲା । କିନ୍ତୁ ଗାନ୍ଧିଜୀ ମୃତବୋଲି କେହି କହୁନାହାଁନ୍ତି। ପ୍ରାର୍ଥନା ଶେଷରେ ଆଶ୍ରମରେ ଜଣେ ଅନ୍ତେବାସୀ କ୍ଷୀଣକଣ୍ଠରେ କହିଲେ ଯେ, ଗାନ୍ଧିଜୀ ଆଉ ନାହାଁନ୍ତି। ପ୍ରାର୍ଥନାରୁ ଫେରି ଅନ୍ତେବାସୀମାନେ ବିଷଣ୍ଣ ଓ ବିଚଳିତ ଭାବରେ ଏ ବିଷୟରେ ଆଲୋଚନାକରି ଅଧିକ ଜାଣିବାକୁ ଉଦ୍‌ଗ୍ରୀବ ହୋଇପଡ଼ିଥିଲେ। ତାପରେ ପ୍ରତିଦିନ ସକାଳେ ପ୍ରଭାତଫେରି ଓ ବିଶେଷ ପ୍ରାର୍ଥନା କରାଗଲା। କିନ୍ତୁ ତାଲିମକେନ୍ଦ୍ରର ଦୈନନ୍ଦିନ ଜୀବନରେ କୌଣସି ପରିବର୍ତ୍ତନ ହେଲାନାହିଁ। ପାଠପଢ଼ା, କାମଦାମ ରୀତିମତ ଚାଲିଥାଏ। ଗାନ୍ଧିଜୀଙ୍କର ସମ୍ବନ୍ଧରେ କୌଣସି ଆଲୋଚନା ହେଉନଥାଏ। ଯେଉଁଦିନ ଗାନ୍ଧିଜୀଙ୍କର ଚିତାଭସ୍ମ ବିନୋବାଜୀଙ୍କର ନଦୀକୂଳରେ ଥିବା ପୌନାର ଆଶ୍ରମକୁ କାକା କାଲେଲକର ନେଇଆସିଲେ, ସେଦିନ ନଇତାଲିମର ଆମେ ସମସ୍ତେ ଭାଇଭଉଣୀ ରାମଧୂନ ଓ ଭଜନ ଗାଇଗାଇ ବିନୋବା ଆଶ୍ରମରେ ପହଞ୍ଚିଲୁ। ଧାମନଦୀରେ ଚିତାଭସ୍ମ ବିସର୍ଜନବେଳେ ଆମ୍ଭେମାନେ ରାମଧୂନ ଓ ଗାନ୍ଧିଙ୍କର ପ୍ରିୟ ଭଜନଗୁଡ଼ିକ ଗାନ କରିଥିଲୁ। ସେ କରୁଣ ଦୃଶ୍ୟ ଏବେ ମଧ୍ୟ ମୋର ମନେଅଛି।

୧୯୭୪ ମସିହା ଜାନୁଆରୀ ମାସ ମୁଁ ଆଉଥରେ ବିନୋବାଜୀଙ୍କର ଆଶ୍ରମକୁ ଆଚାର୍ଯ୍ୟକୁଳ ସମ୍ମିଳନୀରେ ଯୋଗଦେବାକୁ ଯାଇଥିବା ସମୟରେ ଧାମନଦୀରେ ସେଇ ଚିତାଭସ୍ମ ବିସର୍ଜିତ ସ୍ଥାନରେ ସ୍ନାନକରିବାର ସୁଯୋଗ ପାଇଥିଲି।

**ସର୍ବସେବା ସଂଘ ଅଧିବେଶନ :** ଆମ୍ଭେମାନେ ସେବାଗ୍ରାମ ଛାଡ଼ିବାର ଅଳ୍ପଦିନ ଥିବାବେଳେ ଗାନ୍ଧିଜୀଙ୍କ ମୃତ୍ୟୁ ପରେପରେ ବୋଧହୁଏ ଫେବୃଆରୀମାସ ଶେଷକୁ କିମ୍ବା ମାର୍ଚ୍ଚମାସ ପ୍ରଥମଭାଗରେ ପ୍ରଥମ ସର୍ବସେବା ସଂଘର ଗୋଟିଏ ଅଧିବେଶନ ବସିଲା ସେବାଗ୍ରାମସ୍ଥ ଖଦୀ ବିଦ୍ୟାଳୟରେ। ସେଠାରେ ଭାରତବର୍ଷର ଚାରିଆଡ଼ର ଛୋଟବଡ଼ ସମସ୍ତ ନେତା ଉପସ୍ଥିତ ଥିଲେ। ଚାରିଆଡ଼େ କଣ୍ଟା ତାରବାଡ଼ ଦିଆଯାଇଥିଲା ଏବଂ ମିଲିଟାରୀ ପୁଲିସ୍ ଜଗି ରହିଥିଲେ। ଜବାହାରଲାଲ ଯେତେବେଳେ ସେଦିନ ସକାଳେ ଗାନ୍ଧିଜୀଙ୍କ କୁଟୀରକୁ ବୁଲି ଯାଉଥିଲେ, ନଇତାଲିମର କର୍ତ୍ତୃପକ୍ଷ ତହିଁ ମଧ୍ୟରେ ପୁଲିସ୍ ବ୍ୟବସ୍ଥା ନକରାଇ ତାଲିମକେନ୍ଦ୍ରର ଶିକ୍ଷାର୍ଥୀମାନଙ୍କୁ ଗାର୍ଡ ଭାବରେ ରଖିଥିଲେ। ମୁଁ ଗାନ୍ଧିଜୀଙ୍କ କୁଟୀରଦ୍ୱାରରେ ପ୍ରହରୀ ଭାବରେ ଠିଆ ହୋଇଥିଲି। ମଧ୍ୟପ୍ରଦେଶର ରାଜ୍ୟପାଳ ମଙ୍ଗଳଦାସ

ପକ୍ୱାସା, ଜବାହରଲାଲ ନେହେରୁ ଏବଂ କାହ୍ନୁ ଗାନ୍ଧୀଙ୍କୁ ସ୍ୱାଗତ ଜଣାଇ ଗାନ୍ଧିଜୀଙ୍କର କୁଟୀର ମଧ୍ୟରେ ପ୍ରବେଶ କରାଇଥିଲି। ନେହେରୁଜୀ ଅତି ଆବେଗପୂର୍ଣ୍ଣ ହୃଦୟରେ ଗାନ୍ଧିଜୀଙ୍କ କୁଟୀର ମଧ୍ୟରେ ପ୍ରାୟ ୧୫/୨୦ ମିନିଟ୍ ବୁଲାବୁଲି କରି ଫେରିଥିଲେ।

ଏହି ଅଧିବେଶନଟି ଡ: ରାଜେନ୍ଦ୍ର ପ୍ରସାଦଙ୍କ ସଭାପତିତ୍ୱରେ ସେଦିନ ଅନୁଷ୍ଠିତ ହୋଇଥିଲା। ନେହେରୁଜୀ ଅତି ବିଚଳିତ ଅବସ୍ଥାରେ ଥିଲା ପରି ଜଣା ପଡୁଥିଲେ। ନେହେରୁଜୀ ସେ ସଭାରେ ଅତି ଭାବବିହ୍ୱଳ ହୋଇ ଅଳ୍ପ କେତୋଟି ବାକ୍ୟ କହି ବସି ପଡିଥିଲେ। ସେ ବାକ୍ୟ ମଧ୍ୟରୁ ପ୍ରଥମ ଦୁଇଟି ବାକ୍ୟ ଏହିପରି, "ୟହ ହମ୍‌କୋ ନହିଁ ମାଲୁମ ପଡ୍‌ତା କି ହମ୍ ଆଗେ ବଢ୍‌ତେ ହେଁ ୟା ଗିରତେ ହେଁ। ଜବ୍ କୁଛ ନତିଜା ହୋ ଯାତା ତବ୍ ମାଲୁମ ହୋତା କି କୁଛ ହୋ ଗୟା।"

ଆଉ ଗୋଟିଏ ଦୁଇଟି ବାକ୍ୟ କହି ନେହେରୁ ଆସନ ଗ୍ରହଣ କଲେ। ଆବୁଲ କଲାମ ଆଜାଦ୍ ଅତି ଓଜସ୍ୱିନୀ ଭାଷାରେ ଭାଷଣଟିଏ ଦେଇଥିଲେ। ତାପରେ ବିନୋବାଜୀ ତାଙ୍କ ସ୍ୱଭାବସୁଲଭ ଢଙ୍ଗରେ ଦେଶର ଭବିଷ୍ୟତ ଗଠନରେ ପୁରୁଣାକଥା ଗୁଡ଼ିକ କିପରି ନୂତନ ଦିଗ୍‌ଦର୍ଶନ ଦେଇ ଗ୍ରହଣ କରିବାକୁ ହେବ ସେ ସମ୍ବନ୍ଧରେ ବୁଝାଇଥିଲେ ଏବଂ ମନୁଷ୍ୟ ଜୀବନରେ ବିନୟ ଆଚରଣର ଗୁରୁତ୍ୱ ସମ୍ବନ୍ଧରେ ସୁନ୍ଦରଭାବେ ବୁଝାଇଥିଲେ। ଆଶାଦେବୀ ସମାଜରେ ନାରୀର ସ୍ଥାନକୁ ଉଚ୍ଚସ୍ତରରେ ରଖି ଅତି ସୁନ୍ଦରଭାବରେ ନାରୀର ଅଧିକାର ସମ୍ବନ୍ଧରେ ଲାଗିଥିବା କେତେକ ଯୁକ୍ତିତର୍କର ସମାଧାନ କରିଥିଲେ।

ସେବାଗ୍ରାମରେ ଥିବା ସମୟରେ ମୁଁ ଦୁଇଜଣ ବିଶିଷ୍ଟବ୍ୟକ୍ତିଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲି। ସେ ହେଲେ ଜେ.ସି.କୁମାରପ୍ପା ଏବଂ ସନ୍ଥ ଟୁକୁଡୋଜୀ ।

**ଜେ.ସି. କୁମାରପ୍ପା :** ଜେ.ସି. କୁମାରପ୍ପା ଥିଲେ ଜଣେ ଅତି ବିଖ୍ୟାତ ଭାରତୀୟ ଅର୍ଥନୀତିଜ୍ଞ। ତାଙ୍କର Cow-Economy ଏବଂ Reservoir Theory ଅତିସୁନ୍ଦର ଭାବେ ଆମମାନଙ୍କୁ ବୁଝାଇଥିଲେ। ଗୋପାଳନ ଗୋଟିଏ ଚିରନ୍ତନ ଅର୍ଥନୀତିର ବ୍ୟବସ୍ଥା। ସେହିପରି ଜଳ, ବାୟୁ, ସୂର୍ଯ୍ୟକିରଣ ଦ୍ୱାରା ଉତ୍ପାଦିତ ଶକ୍ତି ମଧ୍ୟ ଚିରନ୍ତନ। ଏହାର ଆଶ୍ରୟନେବା ମଣିଷସମାଜର କର୍ତ୍ତବ୍ୟ। ଅନ୍ୟପକ୍ଷରେ ଖଣିଜପଦାର୍ଥ ଏବଂ ତତ୍‌ଜାତ ଶିଳ୍ପ ଇତ୍ୟାଦି ଚିରନ୍ତନ ନୁହେଁ। ବରଂ ଭବିଷ୍ୟତ ସମାଜ ପାଇଁ ବିପଦ୍‌ଜନକ। ଓ୍ୱାର୍ଦ୍ଧା ସହରରେ କୁମାରପ୍ପାଜୀ 'ମଗନବାରୀ' ବୋଲି ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ । ସେଥିରେ ନାନାପ୍ରକାର ଢେଙ୍କି, ପେଶଣା ସାହାଯ୍ୟରେ ଧାନରୁ ଚାଉଳ କାଢ଼ିବା ଏବଂ ଗହମ ପେଷିବା ଇତ୍ୟାଦି ଶିକ୍ଷା ଦିଆଯାଉଥିଲା। ସେହିପରି କଷ୍ଟିକ ସୋଡ଼ା ବ୍ୟବହାର ନକରି ସାଜିମାଟି ବ୍ୟବହାରକରି ସାବୁନ ତିଆରି କରିବାର ଶିକ୍ଷା ଦିଆଯାଉଥିଲା ଏବଂ ବହୁ ପ୍ରକାରର ପାଇଖାନା ଯଥା ଟ୍ରେଞ୍ଚ, ପିଟ, ବଡ଼ ବଡ଼ କମ୍ୟୁନିଟି ଲେଟରିନ ତିଆରିକରି ମଳକୁ ଖତରୂପେ ବ୍ୟବହାର କରିବା ଶିକ୍ଷା ଦିଆଯାଉଥିଲା। ଏଇ ଅନୁଷ୍ଠାନକୁ ଭାରତର ଘରିଆଡୁ

ସ୍ୱେଚ୍ଛାସେବୀମାନେ ଆସି ତାଲିମ ପାଉଥିଲେ। ଥରେ ମହାରାଷ୍ଟ୍ର ସରକାରଙ୍କର ସ୍ୱାସ୍ଥ୍ୟବିଭାଗର କେତେକ କର୍ମଚାରୀ ସେଠାକୁ ତାଲିମ ପାଇବାପାଇଁ ଆସିଥିଲେ। ସେମାନେ ସେଠାରେ ପାଇଖାନା ସଫାକରିବାକୁ ଅନିଚ୍ଛା ପ୍ରକାଶକରି ସେ ସ୍ଥାନ ପରିତ୍ୟାଗ କରିବାକୁ ସରକାରଙ୍କୁ ଲେଖିଲେ। ତାଙ୍କ ସରକାର କୁମାରପ୍ପାଙ୍କୁ ଚିଠିଦେଇ ଜଣାଇଲେ ଯେ, ତାଙ୍କର କର୍ମୀମାନଙ୍କୁ ସବୁ ତାଲିମ ଦିଆଯାଉ । କିନ୍ତୁ ପାଇଖାନାସଫା କାର୍ଯ୍ୟରୁ ଅବ୍ୟାହତି ଦିଆଯାଉ। କୁମାରପ୍ପା ଲେଖିଲେ, ସେହି କର୍ମୀମାନେ କୌଣସି କାମ ନକରି କେବଳ ଯଦି ପାଇଖାନା ସଫାକରନ୍ତି, ତାହାହେଲେ ତାହା ସମାଜପ୍ରତି ସେମାନଙ୍କ ମହତ୍ ଅବଦାନ ବୋଲି ବୁଝିବାକୁ ହେବ। କିନ୍ତୁ ଦୁଃଖର କଥା, ସରକାର ସେକଥା ନବୁଝି ତାଙ୍କର କର୍ମୀମାନଙ୍କୁ ଫେରାଇ ନେଲେ।

ଦକ୍ଷିଣଭାରତରେ ଅନେକ ଲୋକ ଧାନଜମି ଗୁଡ଼ିକୁ ଅର୍ଥଲୋଭରେ ମହାଜନ ମାନଙ୍କଠାରେ ବିକ୍ରୟ କରିଦେଲେ। ସେଥିରେ ମହାଜନମାନେ ହଜାର ହଜାର ନଡ଼ିଆଗଛ ଲଗାଇବାକୁ ଲାଗିଲେ ଏବଂ ନଡ଼ିଆତେଲରୁ ହମାମ ଆଦି ନାନାପ୍ରକାର ସାବୁନ ତିଆରିହେଲା। ଏଥିରେ କୁମାରପ୍ପା ବ୍ୟଥିତ ହେଲେ । କାରଣ, ଖାଦ୍ୟ ଆମର ପ୍ରଥମ ଆବଶ୍ୟକତା। ଏଣିକି ସେଇ ଗାଁଲୋକେ ଖାଦ୍ୟପାଇଁ ବାହାରକୁ ଯିବା ଦୁଃଖର କଥା। ହମାମ୍ ସାବୁନ ବା ତାଙ୍କର କ'ଣ ହେବ। ଆଉ ଗୋଟିଏ ଜାଗାରେ ଗୋଟିଏ ନିଉଟ୍ରିସନ୍ ରିସର୍ଚ୍ଚ ସେଣ୍ଟରରେ ବଢ଼ିଆ ଧୋବ ଫରଫର ହାଲ୍‌କା ପାଉଁରୁଟି ତିଆରହେବା ସେ ଦେଖାଇଲେ। ଏଇକେନ୍ଦ୍ରର ପରିଚାଳକ ଗର୍ବର ସହିତ କୁମାରପ୍ପାଙ୍କୁ ଦେଖାଇଲେ। ଏତେ ଖର୍ଚ୍ଚକରି ସେଇ ଅନୁଷ୍ଠାନରେ ଏପରି ଜଣେ ଅଯୋଗ୍ୟ ଲୋକଙ୍କୁ ରଖିବା ନିନ୍ଦନୀୟ ବୋଲି ସେ କହିଲେ ଏବଂ ସେ କହୁଥିଲେ ଯେ, ଗହମର ସମସ୍ତ ଖାଦ୍ୟପ୍ରାଣ ନଷ୍ଟକରି କେବଳ ଷ୍ଟାର୍ଚକୁ ପାଉଁରୁଟି ଆକାରରେ ଲୋକଙ୍କୁ ଖାଇବାକୁ ଦେଇ ଭଣ୍ଡାଇବା ମହାପାପ। ଏପରି ଲୋକଙ୍କୁ ଫାଶୀ ଦିଆଯିବା ଉଚିତ। ସ୍ୱଦେଶୀ ଭାବନାରେ କୁମାରପ୍ପା ହେଉଛନ୍ତି ଗାନ୍ଧିଜୀଙ୍କର ଗୁରୁ।

ଥରେ ଗାନ୍ଧିଜୀଙ୍କର ଆଶ୍ରମରେ କିରାସିନି ତେଲରେ ଦୀପ ଜଳୁଥିବା ଦେଖି ସେ ଗାନ୍ଧିଜୀଙ୍କୁ ଆକଟ କରିଥିଲେ। ଗାନ୍ଧିଜୀ ଥରେ କୁମାରପ୍ପାଙ୍କୁ ଭେଟିବାକୁ ଯାଉଥିଲେ। ନିର୍ଦ୍ଦିଷ୍ଟ ସମୟରୁ ଟିକିଏ ଡେରି ହୋଇଯିବାରୁ ଗାନ୍ଧିଜୀଙ୍କୁ ଦେଖାଦେବା ପାଇଁ ସେ ମନାକରି ଦେଇଥିଲେ । କିନ୍ତୁ ଗାନ୍ଧିଜୀଙ୍କ ପ୍ରତି ତାଙ୍କର ଅଗାଧ ଭକ୍ତି ଓ ସମ୍ମାନ ଥିଲା । ତାଙ୍କର ଗ୍ରାମ ସଂଗଠନ କାର୍ଯ୍ୟ ହିଁ ଦେଶର ମୂଳଦୁଆ ଗଢ଼ିବାରେ ସହାୟକ ହେବ ବୋଲି ସେ ପ୍ରଚାର କରିଥିଲେ। କୁମାରପ୍ପା ଥିଲେ ଅବିବାହିତ ଏବଂ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ଲୋକ। ସେ ହେଉଛନ୍ତି ଧୋତି-ପାଇଜାମାର ଉଦ୍ଭାବକ । ଗୋଟିଏ ଖଦଡ଼ ଧୋତିକୁ କାଟି ଦୁଇଖଣ୍ଡ କରି ପାଇଜାମା କୌଶଳ ସେ ଉଦ୍ଭାବନ କରିଥିଲେ। ମୋର ଦୁଇଖଣ୍ଡ ଧୋତି ପାଇଜାମା

ଅଛି । ମୁଁ ସମୟ ସମୟରେ ତାକୁ ପିନ୍ଧେ। ଏବେ ମାନ୍ଦ୍ରାଜ ସହରରେ ମୋର ତାଲିମ ସହପାଠୀ ଶିବ ରାମକ୍ରିଷ୍ଣନ ଗୋଟିଏ 'କୁମାରପ୍ପା ଟ୍ରଷ୍ଟ' ଗଠନକରି ତାଙ୍କର ଲିଖିତ ସମସ୍ତ ବହି ଏବଂ ଅନ୍ୟାନ୍ୟ ବହିକୁ ନେଇ ଗୋଟିଏ ଲାଇବ୍ରେରୀ ଏବଂ ଷ୍ଟଡି ସାର୍କଲ୍ କରିଛନ୍ତି।

**ସନ୍ଥଟୁକୁଡୋଜୀ :** ସେବାଗ୍ରାମରେ ଥିବାବେଳେ ମୁଁ ଥରେ ଶିବାଜୀଙ୍କ ପର୍ବତ ଉପରେ ଥିବା ଦୁର୍ଗ ଦେଖିବାପାଇଁ ମୋର ସହପାଠୀମାନଙ୍କ ସାଙ୍ଗରେ ଯାଇଥିଲି। ସେଦିନ ରାଜ୍ୟପାଳ ପକ୍ୱାସା ମଧ୍ୟ ସେଠାକୁ ଯାଇଥିଲେ। ଗୋଟିଏ ସଭାର ଆୟୋଜନ କରାଯାଇଥିଲା। ପକ୍ୱାସା ସେଇ ସଭାକୁ ଆସିବାବେଳେ ତାଙ୍କସାଙ୍ଗରେ ଜଣେ ଲଣ୍ଡିତ ମସ୍ତକ ଏବଂ ପାଇକଛା ମାରି ଗେରୁଆବସ୍ତ୍ର ପିନ୍ଧିଥିବା ଲୋକସଭା ମଧ୍ୟକୁ ପ୍ରବେଶ କଲେ। ମୁଁ ଭାବିଲି ଏଇ ବ୍ୟକ୍ତି ବୋଧହୁଏ ଏଠାକାର ଦେବୀ ମନ୍ଦିରର ପୂଜକ । କିନ୍ତୁ ସେ ବ୍ୟକ୍ତି ରାଜ୍ୟପାଳଙ୍କ ପାଖରେ ଲାଗିକରି ବସି ରାଜ୍ୟପାଳଙ୍କୁ ସ୍ୱାଗତ ଜଣାଇଲେ। ତାଙ୍କର ସ୍ୱାଗତ ଭାଷଣରେ ସେ ଭାରତବର୍ଷର ପୂର୍ବ ଓ ବର୍ତ୍ତମାନ ଅବସ୍ଥାର ଏପରି ଚିତ୍ରଣ ଦେଲେ ଯେ, ମୁଁ ଅବାକ ହୋଇଗଲି। ପରେ ମୁଁ ବୁଝିଲି ଯେ, ସେ ହେଉଛନ୍ତି ସନ୍ଥ ଟୁକୁଡ଼ୋଜୀ। ପରେ ରାତି ବିଶ୍ରାମପାଇଁ ଯେତେବେଳେ ଧର୍ମଶାଳାକୁ ଫେରିଆସିଲୁ, ସେତେବେଳେ ମୁଁ ଦେଖିଲି ପାଖରେ ଥିବା ଛୋଟଛୋଟ ଦୋକାନମାନଙ୍କରେ ଟୁକୁଡ଼ୋଜୀଙ୍କ ଫଟୋ ଝୁଲୁଛି। ଟୁକୁଡ଼ୋଜୀଙ୍କର ନାମ ମହାରାଷ୍ଟ୍ର ସମେତ ସମସ୍ତ ଉତ୍ତରଭାରତରେ ଅତି ବିଖ୍ୟାତ । ସେବାଗ୍ରାମରେ ସର୍ବସେବା ସଂଘ ଅଧିବେଶନରେ ଯୋଗଦେବାପାଇଁ ଟୁକୁଡ଼ୋଜୀ ସେବାଗ୍ରାମ ଆସିଥିଲେ। ସେ ଆମ ଶ୍ରେଣୀଗୃହରେ ଗୋଟିଏ ପିରିୟଡ୍ ପାଠ ପଢ଼ାଇ ଥିଲେ। ସେ କହିଲେ ଯେ, ତମେମାନେ ବହୁତ ପାଠପଢ଼ିଛ, ତୁମ ଭିତରୁ ଅନେକ ବିଦେଶରେ ବିଦ୍ୟାଲାଭ କରିଛ, ମୋ ପାଠପଢ଼ା ମରହଟ୍ଟୀରେ କେବଳ ଦ୍ୱିତୀୟଶ୍ରେଣୀ । ମୁଁ ତୁମକୁ କି ପାଠ ପଢ଼ାଇବି ? କିନ୍ତୁ ଶିକ୍ଷା ସମ୍ବନ୍ଧରେ ସେ ଯାହା କହିଥିଲେ, ତାହା ଅତି ଉତ୍କୃଷ୍ଟ ଓ ଉଚ୍ଚଧରଣର ଉପଦେଶ ଆମ ସମାଜପାଇଁ । ସେ ଛୋଟଛୋଟ ଉଦାହରଣ ମାଧମରେ ମନୁଷ୍ୟତ୍ୱର ବ୍ୟାଖ୍ୟା କରିଥିଲେ। ଆମେମାନେ ପାଇଖାନା ସଫେଇ କାର୍ଯ୍ୟରେ ଲାଗିଥିବା ଦେଖି ସେ ଖୁବ୍ ଖୁସି ହୋଇଥିଲେ। ସେଦିନ ସନ୍ଧ୍ୟାରେ ତାଲିମକେନ୍ଦ୍ରର ଗୋଟିଏ ଖୋଲାପଡ଼ିଆରେ ପ୍ରାର୍ଥନାସଭା ହୋଇଥିଲା। ହଜାର ହଜାର ସଂଖ୍ୟାରେ ଲୋକ ଆସିଥିଲେ ଟୁକୁଡ଼ୋଜୀଙ୍କର ଭଜନ ଶୁଣିବା ପାଇଁ। ମଞ୍ଚଉପରେ ଟୁକୁଡୋଜୀ ଏବଂ ତାଙ୍କର ଶିଷ୍ୟମାନେ ବେଞ୍ଜୋ, ହାର୍‌ମାନିଅମ, ଢୋଲକ ଆଦି ବଜାଇଥିଲେ ଏବଂ ସେ ନିଜେ ଖଞ୍ଜଣି ଧରି ସମୟ ସମୟରେ ଦୁଇଟି ଖଞ୍ଜଣି ଏକ ସମୟରେ ବଜାଉଥିଲେ। ତାଙ୍କର ଭଜନର ବିଷୟବସ୍ତୁ ଥିଲା ଗାନ୍ଧିଜୀଙ୍କର ଗ୍ରାମସଂଗଠନ କାର୍ଯ୍ୟ। ସେ ଦିଅଁଦେବତାଙ୍କର ନାଁ ମଧ୍ୟ ନେଇ ନଥିଲେ। ଭଜନ ବୋଲିବା ସମୟରେ ସେ ହଠାତ୍ ଅଟକିଯାଇ ପୁରୋଭାଗରେ ଥିବା ବିଶାଳ ଜନତାଙ୍କୁ କହିଲେ,

"କ୍ୟା ଦେଖ୍ ରହେ ହୋ, ଭଜନ କା ସାଥ ତାଲି ଲଗାଓ, ଯୋ ଭଜନ କା ତାଲି ନହି ଦେ ସକତା ହେ ଉସକା ହରକାମ ବେକାର ହେ" ତାପରେ ଅସୁମାରି ଜନତା ଦୁଇହାତ ଉପରକୁ କରି ତାଳିମାରିବାକୁ ଲାଗିଲେ। ଆଗରେ ବସିଥିବା ଜାକିର ହୋସେନ ମଧ୍ୟ ତାଳି ବଜାଇଥିଲେ। ସନ୍ଥ ଟୁକୁଡ଼ୋଜୀଙ୍କ କାମ ଥିଲା ଗାଁ ଗାଁ ବୁଲି ଗାନ୍ଧିଜୀଙ୍କର ଗ୍ରାମ ସଂଗଠନ କାର୍ଯ୍ୟକୁ ଆଗେଇ ନେବା । ଯଥା- ଅସ୍ପୃଶ୍ୟତା ନିବାରଣ, ପଞ୍ଚାୟତ ଗଠନ, ହିନ୍ଦିଶିକ୍ଷା, ଅହିଂସା, ଗ୍ରାମ ସଫେଇ ଇତ୍ୟାଦି ଇତ୍ୟାଦି।

ସର୍ବସେବା ସଂଘ ସମ୍ମିଳନୀ ସମୟରେ ଆମେ କେତେଜଣ ସଭ୍ୟ ପ୍ରଫେସର ଏନ୍.ଜି.ରଙ୍ଗା ଏବଂ ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କୁ ସାକ୍ଷାତ କରିଥିଲୁ। ପଟ୍ଟବର୍ଦ୍ଧନ କହିଲେ, "ଯାହାହେଉ ସ୍ୱାଧୀନତା ତ ମିଳିଗଲା, ଏବେ ଦେଶଗଠନରେ ଯେ କାର୍ଯ୍ୟ କରିବେ ସେ ହେଉଛନ୍ତି, ଏ ଦେଶର ସଚ୍ଚା ପୁଅ।" ଦେଶଗଠନ କାର୍ଯ୍ୟ କିପରି ଚାଲିଛି ତାହା ତ ଆମେ ଏବେ ଦେଖୁଛୁ। ପଟ୍ଟବର୍ଦ୍ଧନଙ୍କ ଅକାଳବିୟୋଗ ଗୋଟିଏ ଦୁଃଖଦ ଘଟଣା।

## ନବରଙ୍ଗପୁର ବେସିକ୍ ଟ୍ରେନିଂସ୍କୁଲ

ସେବାଗ୍ରାମରୁ ଫେରି ମୁଁ ନବରଙ୍ଗପୁର ବେସିକ୍ ଟ୍ରେନିଂସ୍କୁଲରେ ୧୯୪୮ ଅଗଷ୍ଟ ମାସରେ ପ୍ରଧାନଶିକ୍ଷକ ହିସାବରେ ଯୋଗଦେଲି। ସ୍କୁଲଟି ମୌଳିକଶିକ୍ଷା ସଙ୍ଗଠକ ହରିହର ମିଶ୍ର ଏବଂ ସଦାଶିବ ତ୍ରିପାଠୀଙ୍କର ପ୍ରଚେଷ୍ଟାରେ ସ୍ଥାପିତ ହୋଇଥିଲା । କଞ୍ଚାଇଟାରେ ତିଆରି ମାଟିଘରେ ଚାଳଛପର କରାଯାଇଥିଲା। ଘରଗୁଡ଼ିକ ସେତେବେଳକୁ ସନ୍ତସନ୍ତିଆ ଥିଲା। ଶିକ୍ଷକମାନଙ୍କ ପାଇଁ ଘର ତିଆରି ହୋଇ ନଥିଲା। ଯାହାହେଉ, ଘରେ ୨୬ ଜଣ ଗୁରୁଛାତ୍ର କୌଣସିମତେ ବାସକରି ଶିକ୍ଷାଲାଭ କରିବାକୁ ଆରମ୍ଭକଲେ। ଆମେ ଗୁରୁଜୀମାନଙ୍କୁ ବାଧ୍ୟହୋଇ ନବରଙ୍ଗପୁର ସହରରୁ ଯିବାଆସିବା କରିବାକୁ ପଡ଼ିଲା। କୂଅ ଖୋଳାଯାଇ ନଥିବାରୁ ପିଇବାପାଣି ଆଣିବାକୁ ପ୍ରାୟ ଅଧମାଇଲେ ବାଟ ଗୋଟିଏ ଗ୍ରାମ ନିକଟସ୍ଥ ତୋଟା ମଧ୍ୟରେ ଥିବା କୂଅକୁ ଯିବାକୁ ପଡୁଥିଲା। ସ୍କୁଲକୁ ଲାଗି ଗୋଟିଏ ଅଗଭୀର ପୋଖରୀଟିଏ ଥିଲେ ମଧ୍ୟ ତାହା ବର୍ଷାଦିନ ଛଡ଼ା ଅନ୍ୟଦିନରେ ଶୁଖି ଯାଉଥିଲା। ଜୟପୁର ରାଜାଙ୍କୁ କହି ତାଙ୍କର କର୍ମଚାରୀମାନଙ୍କ ଦ୍ୱାରା ପୋଖରୀଟିର କିଛି ପରିମାଣରେ ଜୀର୍ଣ୍ଣ ସଂସ୍କାର କରାଯାଇଥିଲେ ମଧ୍ୟ ତାହା ବିଶେଷକିଛି କାମଦେଲା ନାହିଁ। ଛଅମାସ ପରେ ଚାରିଜଣ ଶିକ୍ଷକଙ୍କ ପାଇଁ ଦୁଇଦୁଇ ବଖରାଥାଇ ମାଟିଘର ତିଆରିହେଲା ଏବଂ କୂଅଖୋଳା କାମ ସରିଗଲା। ତେଣୁ ମୁଁ ଏବଂ ଜଣେ ଟ୍ରେନିଂସ୍କୁଲ ଶିକ୍ଷକ ଏବଂ ଦୁଇଜଣ ଜୁନିଅର ବେସିକସ୍କୁଲ ଶିକ୍ଷକ ସେହି ଘରଗୁଡ଼ିକରେ ରହିଲୁ। ହତା ମଧ୍ୟରେ ଥିବା ଗୋଟିଏ ଆମ୍ବଗଛ ନିକଟସ୍ଥ ଦୁଇଟି ଗ୍ରାମର ଶିଶୁମାନଙ୍କ ପାଇଁ ଗୋଟିଏ ପ୍ରି-ବେସିକ ସ୍କୁଲ ଆରମ୍ଭ ହେଲା ଏବଂ ଜୁନିଅର ବେସିକ ସ୍କୁଲରେ ଚାରୋଟି ଗ୍ରାମର ମୁଷ୍ଟିମେୟ ଛାତ୍ରଛାତ୍ରୀ ଯୋଗଦେଲେ।

ଏଇ ତାଲିମକେନ୍ଦ୍ର ପାଇଁ ନବରଙ୍ଗପୁର ବଳଭଦ୍ର ନାରାୟଣ ସାମନ୍ତରାଏ ୧୧ ଏକର ଜମି ଦାନ କରିଥିଲେ । ଜାଗାଟି ଥିଲା ଗଡ଼ାଣିଆ ଏବଂ ବୁଦୁବୁଦୁକିଆ ଜଙ୍ଗଲରେ ଭର୍ତ୍ତି ଉଇ, କଙ୍କଡ଼ାବିଛା ଏବଂ ରଣାସାପମାନେ ସେଠାରେ ବହୁସଂଖ୍ୟାରେ ବାସ କରୁଥିଲେ । ସାପ ଓ କଙ୍କଡ଼ାବିଛାମାନଙ୍କୁ ଆମେ ଲୋପ କରିଦେଲୁ ସିନା, ହେଲେ ଉଇହୁଙ୍କା ଲୋପ କରିବାରେ ବଡ଼ କଷ୍ଟହେଲା । ଘର ଭିତରେ ମଧ୍ୟ ଉଇହୁଙ୍କା ହୋଇଗଲା । ଯାହାହେଉ ସେଇଥିରେ ଆମ୍ଭେମାନେ ଚଳିଲୁ । ପାଠପଢ଼ା ଓ ବଗିଚ୍ଚକାମ ଆରମ୍ଭ ହେଲା । ଟ୍ରେଞ୍ଚ ଲେଟରିନ, ପିଟ୍ ଲେଟରିନ ଓ ପଟ୍ ଲେଟରିନର ବ୍ୟବହାର କରାଯାଉଥିଲା । ସ୍କୁଲ ହଷ୍ଟେଲର ପଛପଟକୁ ଲାଗି ନିକଟସ୍ଥ ମିରଗାଙ୍ଗଗୁଡ଼ା ଗ୍ରାମର ଅଧିବାସୀ କବୀରପନ୍ଥୀ ଲୋକେ ତାଙ୍କର ମୃତଲୋକଙ୍କ କବରଖାନା କରିଥିଲେ । ସେଠାରେ ସ୍କୁଲହେବା ପୂର୍ବରୁ ସେମାନଙ୍କୁ ଅନ୍ୟତ୍ର କବରସ୍ଥଳୀ କରିବାପାଇଁ କୁହା ଯାଉଥିଲେ ମଧ୍ୟ ସେମାନେ ଦିନେ ଶବଟିକୁ ଆଣି ମୋ ଦୁଆରେ ଥୋଇଦେଲେ ଏବଂ ଜିଦ୍‌କଲେ ଯେ ସେହିଜାଗାରେ ଶବଟିକୁ କବର ଦେବେ । ସେମାନଙ୍କୁ ବହୁତ ବୁଝାସୁଝା କରି ସ୍କୁଲଜାଗାର ଗୋଟିଏ ସୁଦୂରପ୍ରାନ୍ତରେ କବର ଦେବାପାଇଁ ଅନୁମତି ଦେବାରୁ ସେମାନେ ରାଜିହୋଇ ସେଠାରେ କବର ଦେଲେ । କିନ୍ତୁ ସେଇ ଜାଗାର ନିକଟସ୍ଥ ଗୋଟିଏ ଆଦିବାସୀ ଗାଁ କଇଗୁଡ଼ାର ନାଇକ ଆଉ ଲୋକେ ମୋ ପାଖରେ ପହଞ୍ଚି କହିଲେ ଯେ, ଏଇ ହରିଜନ ଲୋକେ ସେଠାରେ କବର ଦେବାରୁ ତାଙ୍କର ଡୁମାଦେବତା ଆଉ ତେତିଶିକୋଟି ଦେବତା ମାରା ହୋଇଗଲେ । ମୁଁ ତହିଁ ଆରଦିନ ଜୟପୁର ଶ୍ମଶାନ ମେନେଜରଙ୍କୁ ଡାକି ସେଇଗାଁରେ ନାଇକଙ୍କୁ ତାଙ୍କ ସମ୍ମୁଖରେ ବହୁତ ବୁଝାଇଲି । ସେ ଆଉ ମୁଁ ବସି ବିଚ୍ଚରକଲୁ ଏବଂ କହିଲୁ ଯେ, ମିରଗାଙ୍ଗଗୁଡ଼ାର ଲୋକେ କବରକୁ ଲଗାଇ ଗୋଟିଏ ପାଚେରି କରିଦେବେ । ସେଥିରେ ସେମାନେ ରାଜି ହୋଇଗଲେ । ଏକଥା ମୁଁ ମିରଗାଙ୍ଗଗୁଡ଼ାର ନାଇକଙ୍କୁ କହିବାରୁ ତାଙ୍କ ଗାଁଲୋକେ କବରଟିର ଘରିପାଖେ ଗୋଟିଏ କାନ୍ଥ ଦେଇଦେଲେ । ତାପରେ ମୋ ପାଖକୁ କେହି ଆସିନାହାଁନ୍ତି, ମୁଁ ରକ୍ଷାପାଇଗଲି ।

**ରାଜ୍ୟପାଳ ଆସଫ୍ ଅଲ୍ଲିଙ୍କ ସ୍କୁଲ ପରିଦର୍ଶନ :** ସେଇ ବର୍ଷ ଡିସେମ୍ବର ମାସରେ ରାଜ୍ୟପାଳ ଆସଫ ଅଲ୍ଲିଙ୍କର ସ୍କୁଲ ପରିଦର୍ଶନ ପଡ଼ିଲା । ତତ୍କାଳୀନ କଲେକ୍ଟର ରତ୍ନାକର ଷଡ଼ଙ୍ଗୀ ଆମ ସ୍କୁଲକୁ ଆସି ରାଜ୍ୟପାଳ କିପରି ସ୍କୁଲକୁ ଆସିପାରିବେ ସେ ବିଷୟରେ ଆଲୋଚନା କଲେ । କାରଣ, ସ୍କୁଲକୁ ଆସିବାର ରାସ୍ତା ନଥିଲା । ମଝିରେ ଗୋଟିଏ ନାଳ ପଡୁଥିଲା । ସୁତରାଂ କଲେକ୍ଟରଙ୍କ ପାଇଁ ହାତୀର ବନ୍ଦୋବସ୍ତ କଲେ । ନିର୍ଦ୍ଦିଷ୍ଟ ଦିବସରେ ରାଜ୍ୟପାଳ ହାତୀପିଠିରେ ବସି ସ୍କୁଲକୁ ଆସିଲେ । ତାଙ୍କ ସାଙ୍ଗରେ ଥିଲେ ଏମ.ଏଲ.ଏ. ସଦାଶିବ ତ୍ରିପାଠୀ । ମୁଁ ସେମାନଙ୍କୁ ଫୁଲମାଳ ଦେଇ ଗୋଟିଏ ସଜ୍ଜିତ ତୋରଣ ପାଖରେ ସ୍ୱାଗତ ଜଣାଇଲି । ରାଜ୍ୟପାଳ ସାଙ୍ଗେସାଙ୍ଗେ ଦୂରକୁ ଅଙ୍ଗୁଳି

ନିର୍ଦ୍ଦେଶକରି ମୋତେ କହିଲେ, Look there Headmaster! What are those people doing? ମୁଁ କହିଲି, They are making bricks. ତହୁଁ ରାଜ୍ୟପାଳ କହିଲେ, "Why are they making bricks in that old primitive way? ମୁଁ କହିଲ ସେ ଜଣେ contractor, probably, he is making bricks for some private person. I have got nothing to do with him". ତହୁଁ ରାଜ୍ୟପାଳ କହିଲେ "Anyway you have started a Basic Training School here, why have you not trained him to make bricks in modern ways?" କିନ୍ତୁ ରାଜ୍ୟପାଳ Modern ways ବିଷୟରେ କିଛି କହିଲେ ନାହିଁ । ସମସ୍ତେ ଆମ ମାଟିଘର ଭିତରେ ପଶିଲେ। ଯାହାହେଉ, ସେଦିନ ଉଇହଙ୍କାଟି ସଫାକରି ପୋଛି ଦେଇଥିଲୁ। ଅଫିସଘରେ ନାନାପ୍ରକାର ପରିବା ଥୁଆ ହୋଇଥିବା ଦେଖି ସଦାଶିବ ତ୍ରିପାଠୀ କହିଲେ, 'ଏସବୁ କ'ଣ ହାଟର ପରିବା ?' ମୁଁ କହିଲି, 'ଆପଣ ଟିକିଏ ସେ ପାଖକୁ ଚାହାଁନ୍ତୁ, କ'ଣ ସବୁ ଫଳିଛି ?' ସେସବୁ ଦେଖି ସେ ଭାରି ଖୁସିହେଲେ।

ତାପରେ ରାଜ୍ୟପାଳ ଟ୍ରେନିଂସ୍କୁଲ ପାଇଁ ସିଲାବସ୍ ଅଛି କି ନାହିଁ ବୋଲି ମୋତେ ପଚାରିଲେ। ମୁଁ ଅଛି ବୋଲି କହିବାରୁ ସେ ଆଶ୍ଚର୍ଯ୍ୟ ହେଲେ। ମୁଁ ଗୋଟିଏ କପି ଦେବାରୁ ଆଗ୍ରହର ସହ ନେଲେ। ବୋଧହୁଏ ସେ ଭାବିଥିଲେ ବିନା ସିଲାବସ୍ ସାହାଯ୍ୟରେ ଆମେ ମୌଳିକଶିକ୍ଷା ନାଁରେ କିଛି ଗୋଟିଏ ଫାଲ୍‌ତୁକାମ କରୁଥିଲୁ। ତାପରେ ଅନ୍ୟ ଗୋଟିଏ ରୁମ୍ (କୋଠରି)ରେ ଚାରିଜଣ ଗୁରୁ, ଛାତ୍ର ଶଯ୍ୟାଶାୟୀ ଥିବାର ଦେଖି ବଡ଼ ବିରକ୍ତ ହେଲେ। ମୁଁ ତାଙ୍କୁ ବୁଝାଇବାକୁ ଚେଷ୍ଟାକଲି ଯେ ଏମାନେ ବାହାର ଜିଲ୍ଲାର ଛାତ୍ର ଏବଂ ଏହି ଓଦା ମାଟିକାନ୍ଥ ଘରେ ଏବଂ ଋତୁ ପରିବର୍ତ୍ତନ୍ ଯୋଗୁଁ ଏମାନଙ୍କୁ ଥଣ୍ଡାଜ୍ୱର ଧରିଛି। କିନ୍ତୁ ସେ କହିଲେ, ଏକାଥରକେ କାହିଁକି ଏତେ ଲୋକ ପୀଡ଼ିତ ହେଲେ ବୋଲି ଅସନ୍ତୋଷ ପ୍ରକାଶକଲେ। ତାପରେ ସେ ପ୍ରି-ବେସିକ୍ ସ୍କୁଲର ଶିଶୁମାନଙ୍କୁ ଦୂରରୁ ଟିକିଏ ଦେଖିଲେ ଏବଂ ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ବସିଲେ। ମୁଁ ସେଦିନ ନବରଙ୍ଗପୁରର ଏସ୍.ଡି.ଓ. ଓ ସରକାରୀ କର୍ମଚାରୀ ଏବଂ କେତେକ ଗ୍ରାମବାସୀଙ୍କୁ ମଧ୍ୟ ନିମନ୍ତ୍ରଣ କରିଥିଲି। ସେମାନେ ସେଠାରେ ଉପସ୍ଥିତ ଥିଲେ। ଗୁରୁଛାତ୍ର ତଥା ଜୁନିଅର୍ ବେସିକ୍ ସ୍କୁଲର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଗୋଟିଏ ମନୋରଞ୍ଜନ କାର୍ଯ୍ୟକ୍ରମ ପରିବେଷିତ ହୋଇଥିଲା। ସବାଶେଷରେ ରାଜ୍ୟପାଳ ମହୋଦୟ କିଛି କହିଲେ। ସେ ତାଙ୍କର ଭାଷଣ ଉର୍ଦ୍ଦୁରେ ଆରମ୍ଭକରି କିଛି ସମୟପରେ ଇଂରାଜୀରେ ପୂରା କଲେ। ସେ ଅତି ପ୍ରାଞ୍ଜଳ ଭାବରେ ମୌଳିକଶିକ୍ଷାର ଉଦ୍ଦେଶ୍ୟ ବିଷୟରେ କହିଥିଲେ। ତାଙ୍କର ଭାଷଣ ପରେ ରାଜ୍ୟପାଳଙ୍କ ତତ୍କାଳୀନ ସେକ୍ରେଟେରୀ ଭାବଗ୍ରାହୀ ମିଶ୍ର ଓଡ଼ିଆରେ କହିଥିଲେ। ରାଜ୍ୟପାଳ ବିଦାୟ ନେବାବେଳକୁ ମୋତେ କହିଲେ, 'ଆପଣ ଗୋଟିଏ ବେସିକ୍ ଟ୍ରେନିଂସ୍କୁଲ କରିଛନ୍ତି, ଅଥଚ କପା

ଲଗାଇ ନାହାନ୍ତି।' ମୁଁ ତାଙ୍କୁ କହିଲି, 'ଏଇ ଆପଣଙ୍କ ସମ୍ମୁଖରେ କପା ବଗିଚା।' ସେ ତୁନି ହୋଇଗଲେ। ବୋଧହୁଏ ଏହାପୂର୍ବରୁ ସେ କପାଗଛ ଦେଖି ନଥିଲେ। ତାପରେ ମୋର ପୋଷାକ ଦେଖି ପସନ୍ଦ କଲେ ଏବଂ ଗୁରୁ ଛାତ୍ର ମାନଙ୍କର ହାଫସାର୍ଟ ଓ ପେଣ୍ଟ ଦେଖି ମଧ୍ୟ ପସନ୍ଦକଲେ। ମୋଟ ଉପରେ ସେ ମାଟିଘର ଏବଂ ଛପରଚାଳ ଦେଖି ବିରକ୍ତି ପ୍ରକାଶ କରିଥିଲେ।

ରାଜ୍ୟପାଳ ଯିବାର କେତେଦିନ ପରେ ସଦାଶିବ ତ୍ରିପାଠୀ ମୋ ପାଖକୁ ଗୋଟିଏ ଚିଠିଲେଖି ଜଣାଇଲେ ଯେ, ଆମ ତାଲିମ୍ କେନ୍ଦ୍ର ଦେଖି ରାଜ୍ୟପାଳ କେତେକ ରିମାର୍କ କରି ଦେଇଥିବାରୁ ସେ ଦୁଃଖିତ ଏବଂ ଏକଥା ମୋତେ ଜଣାଇଦେବାକୁ ରାଜ୍ୟପାଳ ତାଙ୍କୁ କହିଥିଲେ। ବୋଧହୁଏ ସଦାଶିବ ବାବୁ ରାଜ୍ୟପାଳଙ୍କୁ ଆମ କେନ୍ଦ୍ର ବିଷୟରେ ସବୁକଥା ବୁଝାଇ ଦେଇଥିବାରୁ ରାଜ୍ୟପାଳଙ୍କ ଚୈତନ୍ୟ ଉଦୟ ଘଟିଥିଲା। ସଦାଶିବବାବୁ ପରେ ରାଜସ୍ୱମନ୍ତ୍ରୀ ଭାର ଗ୍ରହଣ କରିଥିଲେ।

**ସନ୍ଦେହଚକ୍ଷୁରେ ଆମସ୍କୁଲ :** କେବଳ ନବରଙ୍ଗପୁରରେ ନୁହେଁ। ଚାରିଆଡ଼େ ଲୋକେ ଆମସ୍କୁଲ କଥା ଶୁଣି ଖାଲି ସଫେଇ ଆଉ ବଗିଚାକାମ ଦେଖି ଗାନ୍ଧୀପାଠ ବୋଲି କହି ବହୁ ସନ୍ଦେହ ପ୍ରକାଶ କରୁଥିଲେ। ଅନେକ ସମୟରେ ଶିକ୍ଷିତଲୋକେ ଗୁପ୍ତଚର ହିସାବରେ ଆମ କାମ ଦେଖିବାକୁ କେତେବେଳେ ଆସି ଚାଲିଯାଆନ୍ତି। ଥରେ ମଧ୍ୟାହ୍ନରେ ଜଣେ ଭଦ୍ରଲୋକ ମୋ ପାଖକୁ ଆସି ସ୍କୁଲ କାର୍ଯ୍ୟର ବହୁତ ପ୍ରଶଂସା କଲେ। ମୁଁ ତାଙ୍କୁ ପରିଚୟ ମାଗିବାରୁ କହିଲେ, ସେ ଥିଲେ ଜିଲ୍ଲାପାଳଙ୍କ ଅଫିସ୍‌ରେ ଜଣେ ବରିଷ୍ଠ କର୍ମଚାରୀ। ସେ ଆମ ଜୁନିଅର ବେସିକ୍ ସ୍କୁଲର ପାଠପଢ଼ା କିଛି ସମୟ ନିରୀକ୍ଷଣ କରିଥିଲେ। ସେଥିରୁ ସେ ମୋ ଆଗରେ ଗଭୀର ସନ୍ତୋଷ ପ୍ରକାଶକଲେ। କାରଣ ପଚାରିବାରୁ ସେ କହିଲେ ଯେ "ଭତ୍ରା ପିଲାମାନେ ଓଡ଼ିଆରେ ଏପରି ପଢ଼ିପାରିବା ଏବଂ ଶୁଦ୍ଧ ଉଚ୍ଚାରଣ କରିପାରିବା ମୁଁ କେବେ କଳ୍ପନା କରିନଥିଲି। ଆପଣଙ୍କ ବଗିଚାରେ ଫୁଲ, ଫଳ, ପନିପରିବା ଦେଖି ଯେତିକି ଆନନ୍ଦିତ ହେଲି, ପିଲାଙ୍କ ପାଠପଢ଼ା ଦେଖି ତାଠାରୁ ଅଧିକ ସନ୍ତୋଷ ଲାଭକଲି।

ଥରେ ନବରଙ୍ଗପୁରରେ ଶିଶୁ କ୍ରୀଡ଼ା ଉତ୍ସବ ହେଲା। ସେଥିରେ ଆମ ଜୁନିଅର ବେସିକ୍ ସ୍କୁଲର ଆଦିବାସୀ ପିଲାମାନେ ଯୋଗଦେଇଥିଲେ। ପ୍ରତିଯୋଗିତାରେ ଆମ ପିଲାମାନେ ପ୍ରାୟ ଶତକଡ଼ା ୭୦ ଭାଗ ପୁରସ୍କାର ଆଣି ପାରିଲେ। ବାକି ପୁରସ୍କାର ପାଇଲେ ମିଶନସ୍କୁଲର ପିଲାମାନେ। ଟାଉନସ୍କୁଲର ପିଲାମାନେ କିଛି ପୁରସ୍କାର ପାଇଲେନାହିଁ ବୋଇଲେ ଚଳେ। ଏହାର କାରଣହେଲା ଆମ ଗୁରୁଜୀମାନେ ଛାତ୍ରମାନଙ୍କୁ ବହୁତଦିନ ଧରି କ୍ରୀଡ଼ାଗୁଡ଼ିକରେ ତାଲିମ୍ ଦେଇଥିଲେ। ଆମର ଭତରା ପିଲା ଆରିଥିମେଟିକ୍ ରେସ୍ ବି ଜିତିଗଲେ ।

ଆମ ସ୍କୁଲକୁ ଦେଖିବାକୁ ଜୟପୁର ରାଜାଙ୍କ ଜାମାତା, ଜୟପୁରର କେତେକ ଭଦ୍ରବ୍ୟକ୍ତି ଏବଂ ସ୍ୱୟଂ ଜୟପୁର ରାଜା ବିକ୍ରମଦେବ ବର୍ମା ଆସିଥିଲେ ଓ ଆମ କେନ୍ଦ୍ର ବୁଲିକରି ଯାଇଥିଲେ। ଆମର ଗୁରୁଛାତ୍ର ତଥା ପିଲାମାନେ ଶ୍ରେଣୀଗୃହରେ ବୌଦ୍ଧିକ ଜ୍ଞାନ ଲାଭକରନ୍ତି ଏବଂ ବଗିଚା, ପାଇଖାନା ସଫେଇ ଇତ୍ୟାଦି କଲାବେଳେ କ'ଣ, କାହିଁକି ? କିପରି ? ଏସବୁ ବିଷୟରେ ସମ୍ପୂର୍ଣ୍ଣ ଜ୍ଞାନଲାଭ କରନ୍ତି। ମଞ୍ଜିରୁ ଚାରାକରି ଗଛଟିଏ ରୋଇବା, ତାର ଯତ୍ନନେବା ଏବଂ କି କି ଖତ ଦେବା ଓ କାହିଁକି କୋଡ଼ାଖୋସା କରିବା, କାହିଁକି ପାଇଖାନା ବ୍ୟବହାର କରିବା, କାହିଁକି ଭଲପାଣି ପିଇବା, ଏସବୁ ବିଷୟରେ ଜାଣିବାଦ୍ୱାରା ସେମାନଙ୍କର ଜୀବନକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଗଢ଼ିବାକୁ ଶିଖନ୍ତି।

ଯାଭିତରେ ବର୍ଷକୁ ବର୍ଷ ଗାଁମାନଙ୍କରେ ଜୁନିଅର ବେସିକ୍ ସ୍କୁଲ ଖୋଲିବାକୁ ଲାଗିଲା। ମୁଁ ଏସ୍.ଡି.ଓ. ଏବଂ ତହସିଲଦାରଙ୍କ ସାହାଯ୍ୟରେ ପ୍ରତି ସ୍କୁଲପାଇଁ କିଛିକିଛି ଜମି କରିଦେଇ ପାରିଲି। ଗ୍ରାମବାସୀମାନେ ମଧ୍ୟ ସ୍କୁଲଘର ତିଆରି କରିବାରେ, କୂଅ ଖୋଳିବାରେ ସାହାଯ୍ୟ କରୁଥିଲେ। ମୁଁ ନବରଙ୍ଗପୁର ଛାଡ଼ିଲାବେଳକୁ ପ୍ରାୟ ୩୦ଟି ଗାଁରେ ବେସିକ୍ ସ୍କୁଲମାନ ଖୋଲି ଯାଇଥିଲା।

ଥରେ ମୁଁ ଜିଲ୍ଲା ଶିକ୍ଷାଧିକାରୀଙ୍କୁ ନେଇ ମୌଳିକଶିକ୍ଷାର ଉପଯୋଗିତା ଦେଖାଇବାପାଇଁ ବୋରିଗୁମାରେ ପହଞ୍ଚିଲି। ସେଠାରେ ପାରମ୍ପରିକ ପ୍ରାଥମିକ ବିଦ୍ୟାଳୟ ଏବଂ ବେସିକ୍ ସ୍କୁଲ ଲଗାଲଗି ହୋଇ କାମ କରୁଥିଲା। ମୁଁ ପ୍ରଥମେ ସେ ମହାଶୟଙ୍କୁ ପାରମ୍ପରିକ ଶିକ୍ଷା ଦିଆଯାଉଥିବା ସ୍କୁଲକୁ ନେଲି। ସେଠାରେ ପଞ୍ଚମଶ୍ରେଣୀର ପିଲାଙ୍କୁ ପଚାରିଲି ତଳୁ ଚାଳ ପର୍ଯ୍ୟନ୍ତ କାନ୍ଥର ଉଚ୍ଚତା କେତେଫୁଟ ? ସେମାନେ ୧୦୦ଫୁଟ, ୮୦ଫୁଟ ଏପରି ଉତ୍ତରଦେଲେ। ତାପରେ ପରିଦର୍ଶକ ସେହି ଏକା ପ୍ରଶ୍ନ ଶ୍ରେଣୀ ପିଲାଙ୍କୁ ପଚାରିଲେ । ସେମାନେ ୯ ଫୁଟ, ୧୦ ଫୁଟ, ୮ ଫୁଟ ବୋଲି କହିଲେ। ମୁଁ ପରିଦର୍ଶକ ମହାଶୟଙ୍କୁ ପଚାରିଲି, ଏଥିରୁ କିଛି ବୁଝିପାରିଲେ ? ସେ ମୋ ମୁହଁକୁ ଚାହିଁଲେ। ମୁଁ କହିଲି ଏଇ ସ୍କୁଲର ତୃତୀୟଶ୍ରେଣୀ ପିଲାମାନେ ଠିକ୍ ଅନୁମାନକରି ଉତ୍ତର ଦେଇପାରିଲେ, କାରଣ ଏମାନେ ଫିତାଧରି ସ୍କୁଲଘର, ବାରଣ୍ଡା ଆଦି ମାପିଛନ୍ତି। ସ୍କେଲ ସାହାଯ୍ୟରେ ବଗିଚା ଓ କିଆରି ମାପିଛନ୍ତି। ସୁତରାଂ ଏମାନେ ପ୍ରତ୍ୟକ୍ଷଜ୍ଞାନ ଲାଭ କରିଛନ୍ତି। ତାପରେ ମୁଁ ମୌଳିକସ୍କୁଲର ପିଲାଙ୍କ ମଧ୍ୟରୁ ଗତ ମାସର କୃଷିମନ୍ତ୍ରୀଙ୍କୁ ମୋ ପାଖକୁ ଡାକିଲି। ତାଙ୍କୁ ପ୍ରଶ୍ନ ପଚାରିଲି, ଗତମାସରେ ତମେ କି କି ପରିବା କରିଥିଲ ? ଫସଲ କିପରି ହୋଇଥିଲା ? କେଉଁ ପରିବା ବା ଶାଗ କେତେକେତେ ପରିମାଣରେ ବିକ୍ରି କଲ ? ବିକ୍ରିଧନ କେତେ ହେଲା ? ଇତ୍ୟାଦି ଇତ୍ୟାଦି।

ପିଲାଟି ସେସବୁର ଠିକ୍ ଉତ୍ତରଦେଲା। ତାପରେ ମୁଁ କହିଲି ମୌଳିକଶିକ୍ଷାରେ କମ୍ୟୁନିଟି ବା ସାମୂହିକ ଜୀବନ ହେଲା ଅସଲ ମୂଳଲକ୍ଷ୍ୟ। ଏଇ ଶିଶୁ କୃଷିମନ୍ତ୍ରୀ

ମାସଶେଷରେ ତାଙ୍କର ବିବରଣୀ ପାଠକରିଥିବେ ଏବଂ ଅନ୍ୟପିଲାଙ୍କ ପ୍ରଶ୍ନର ଉତ୍ତର ଦେଇଥିବେ। କୃଷିମନ୍ତ୍ରୀଙ୍କ ବିବରଣୀ ଖାତା ମଧ୍ୟ ଦେଖିଲୁ। ପରିଦର୍ଶକ ମହାଶୟ ଏସବୁ ଦେଖି କ'ଣ ବୁଝିଲେ କି ନାହିଁ ମୁଁ କହିପାରିବି ନାହିଁ, କିନ୍ତୁ ମୌଳିକଶିକ୍ଷାର ପ୍ରଶଂସା କଲେ।

**ମୁଖ୍ୟମନ୍ତ୍ରୀଙ୍କ ପରିଦର୍ଶନ :** ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ତାଙ୍କର ଜ୍ୟେଷ୍ଠାକନ୍ୟା ବୁବୁ ଏବଂ ଜାମାତା ନାରାୟଣ ଦେଶାଇ ଆମସ୍କୁଲ ପରିଦର୍ଶନରେ ଯାଇଥିଲେ। ସେଦିନ ସନ୍ଧ୍ୟାରେ ସ୍କୁଲପିଲା ଏବଂ ଗୁରୁଛାତ୍ର ମାନଙ୍କର ମନୋରଞ୍ଜନ କାର୍ଯ୍ୟକ୍ରମ କରାଯାଇଥିଲା ଏବଂ ରାତିରେ ପଙ୍‌କ୍ତି ଭୋଜନର ବ୍ୟବସ୍ଥା ହୋଇଥିଲା। ସେଥିରେ ନବରଙ୍ଗପୁରର ପଦସ୍ଥ ସରକାରୀ କର୍ମଚାରୀମାନଙ୍କ ସହ କେତେକ ଭଦ୍ରଲୋକ ଏବଂ ଲୁଥରେଙ୍କ ଚର୍ଚ୍ଚର ମିଶନାରୀମାନଙ୍କୁ ମଧ ନିମନ୍ତ୍ରଣ କରାଯାଇଥିଲା। ସେଦିନର ଏ ରାତ୍ରିଭୋଜନକୁ ଆମେ ସ୍ୱାବଲମ୍ବୀ ଭୋଜି ବୋଲି ଆଖ୍ୟା ଦେଇଥିଲୁ। ଯେଉଁସବୁ ଭୋଜନ ସାମଗ୍ରୀ ପ୍ରସ୍ତୁତି କରାଯାଇଥିଲା, ତାହା ଆମର ସ୍ୱଉତ୍ପାଦିତ ପଦାର୍ଥରେ ହିଁ କରାଯାଇଥିଲା। ଚାଉଳ, ଡାଲି, ପନିପରିବା, ତେଲ, ଶାଗ ଏବଂ ଫଳ ଇତ୍ୟାଦି ଆମ ସ୍ୱଉତ୍ପାଦିତ ଥିଲା ଏବଂ ସେଦିନ ଗୁରୁଛାତ୍ରମାନେ ନିଜନିଜ ସୂତାରେ ଅବଶ୍ୟ ବାହାରେ ବୁଣାଇଥିବା ଖଣ୍ଡିଏ ଖଣ୍ଡିଏ ଖଦଡ଼ଧୋତି ପିନ୍ଧିଥିଲେ। ମୁଖ୍ୟମନ୍ତ୍ରୀ ନବବାବୁ ଆଗ ଭୋଜନ ସାରିଦେଇ ଅନ୍ୟମାନେ ଖାଇବାବେଳେ ଗୋଟିଏ ବେତାଧରି ସମସ୍ତଙ୍କ ଅଇଁଠାପତ୍ର ଜଣଜଣକଠାରୁ ସଂଗ୍ରହ କରିନେଇ ଆମ କମ୍ପୋଷ୍ଟପିଟ୍‌ରେ ପକାଇବାକୁ ଗଲେ। ଏକଥା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ତାଙ୍କୁ ମନା କରିପାଇଲି ନାହିଁ ଏବଂ ସେ ମୋତେ ବୁଝାଇଦେଲେ ଏହିପରି ଗୋଟିଏ ବେତାଧରି ଜଣେ ଯଦି ପତ୍ର ଉଠାଇଦିଏ, ତାହେଲେ ଜଣଜଣ କରି ଅଇଁଠାପତ୍ର ନେବା ଦରକାର ପଡିବନାହିଁ ଏବଂ ଖାଇବା ଘରଟି ସହଜରେ ସଫା ହୋଇଯିବ।

**ରାଜ୍ୟପାଳ ଫଜଲ ଅଲ୍ଲୀଙ୍କ ପରିଦର୍ଶନ :** ୧୯୫୨ ମସିହା ଅକ୍ଟୋବର ମାସରେ ରାଜ୍ୟପାଳ ଫଜଲ ଅଲ୍ଲୀ ଆମ କେନ୍ଦ୍ର ପରିଦର୍ଶନରେ ଆସିଲେ। ସେତେବେଳେ ଆମକେନ୍ଦ୍ରକୁ ରାସ୍ତା ହୋଇଯାଇଥାଏ ଏବଂ ନାଳିଆଟିରେ ମଧ୍ୟ ପୋଲ ହୋଇଯାଇଥାଏ। ସୁତରାଂ ରାଜ୍ୟପାଳ ଏବଂ ତାଙ୍କ ଗହଣରେ ଥିବା ଲୋକେ ସମସ୍ତେ ମୋଟରକାର୍‌ରେ ଆସିପାରିଲେ। ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ତୋରଣ, ଫୁଲମାଳର କୌଣସି ବନ୍ଦୋବସ୍ତ ହୋଇନଥିଲା। ସେ କେବଳ ବୁଲିବୁଲି କେନ୍ଦ୍ରଟିର ସାଂପ୍ରତିକ ସ୍ଥିତି ଦେଖିଥିଲେ। ଟ୍ରେନିଂକ୍ଲାସ, ଜୁନିଅର ବେସିକସ୍କୁଲ ଏବଂ ପ୍ରିସ୍କୁଲରେ ଛାତ୍ରମାନେ କାର୍ଯ୍ୟରତ ଥିଲାବେଳେ ସେ ପରିଦର୍ଶନ କରିଥିଲେ। ପ୍ରିସ୍କୁଲରେ ଛୋଟଛୋଟ ଶିଶୁମାନେ ଆମ୍ବଗଛମୂଳେ ବାଲିଗଦା, କୁଲେଇ, ଢିଙ୍କି, ଦୋଳି ଇତ୍ୟାଦି ସାହାଯ୍ୟରେ ଖେଳୁଥିଲେ ଓ ଗୀତ ଗାଉଥିଲେ। ରାଜ୍ୟପାଳ

ଏବଂ ତାଙ୍କର ଅଙ୍ଗରକ୍ଷକ (ଏ.ଡି.ସି.) ନୀଳମଣି ମହାନ୍ତି ସେ ପିଲାମାନଙ୍କ ପାଖରେ କିଛି ସମୟ ଠିଆ ହୋଇ ନିରୀକ୍ଷଣ କଲେ। ତହିଁରୁ କେତେକ ପିଲା ଦୌଡ଼ିଆସି ରାଜ୍ୟପାଳଙ୍କୁ ଏବଂ Capt ମହାନ୍ତିଙ୍କୁ କୁଣ୍ଢେଇ ପକାଇଲେ । ରାଜ୍ୟପାଳ ଓ ଅନ୍ୟମାନେ ସ୍କୁଲରୁ ବିଦାୟନେଇ ବାହାରିଲାବେଳେ ରାଜ୍ୟପାଳ ମତେ କହିଲେ "Mr Mishra, this is the best school, I have ever seen in my life." ତାପରେ ତାଙ୍କୁ ବିଦାୟ ଦେଲାବେଳେ ସେ ଜାଣିଲେ ଯେ ମୁଁ ବରପାଲିର American Freinds Service Committeeର ଗ୍ରାମଉନ୍ନୟନ ଯୋଜନାରେ ଯୋଗଦେବା ପାଇଁ ଯାଉଛି ବୋଲି । ଓଡ଼ିଶା ସରକାର ମୋତେ ନିର୍ବାଚିତ କରିଥିଲେ A.F.S.C.ର ବରପାଲି ପ୍ରୋଜେକ୍ଟରେ ସେମାନଙ୍କ ସହିତ କାର୍ଯ୍ୟ କରିବାକୁ। ରାଜ୍ୟପାଳ ମହାଶୟ ଏକଥା ଶୁଣି ଖୁସିହେଲେ ଏବଂ କହିଲେ, "ଆପଣ ଓଡ଼ିଶାରେ ତ ରହିବେ" ଭଲ ହେଲା।

## A.F.S.C. ବରପାଲି

**A.F.S.C. କ'ଣ ? :** A.F.S.C. ଆମେରିକାରେ ଥିବା କ୍ୱାକ୍‌ର ସମ୍ପ୍ରଦାୟର ଗୋଟିଏ ସେବା ଅନୁଷ୍ଠାନ। କ୍ୱଏକର ସମ୍ପ୍ରଦାୟ ତିନୋଟି ଦିଗରୁ ମାନବସମାଜର ସେବାକରନ୍ତି। ପ୍ରଥମତଃ ସେମାନେ ମାନବସମାଜରେ ଶାନ୍ତିର ପ୍ରତିଷ୍ଠାପାଇଁ ବିଭିନ୍ନ ଦେଶ ଓ ଗୋଷ୍ଠୀ ମଧ୍ୟରେ ବୁଝାମଣା ଓ ଭ୍ରାତୃତ୍ୱଭାବର ସୁସ୍ଥ ବାତାବରଣ ସୃଷ୍ଟି କରିବାପାଇଁ ବିଭିନ୍ନ ଦେଶର ଅଣସରକାରୀ ସାଧାରଣଲୋକ, ଯୁବକ ଓ ଛାତ୍ରମାନଙ୍କୁ ଏକାଠି କରିବାର ସୁଯୋଗ ସୃଷ୍ଟିକରନ୍ତି। ସେଥିପାଇଁ ସେମାନେ ବିଭିନ୍ନ ଦେଶରେ କେନ୍ଦ୍ରମାନ କରି ବିଭିନ୍ନ ଦେଶର ଏ ଶ୍ରେଣୀ ଲୋକଙ୍କୁ ଡାକି ଏକାଠି ରହିବା, ଆଲୋଚନା କରିବା ଏବଂ ସେଇ କେନ୍ଦ୍ରରେ ଥିବା ଲାଇବ୍ରେରୀର ବହି ପଢ଼ିବା ଇତ୍ୟାଦି କାର୍ଯ୍ୟକ୍ରମକରି ସେମାନଙ୍କ ଭିତରେ ବନ୍ଧୁଭାବର ଉଦ୍ରେକ କରିବାପାଇଁ ଚେଷ୍ଟାକରନ୍ତି। ଦ୍ୱିତୀୟରେ ଯୁଦ୍ଧ ଓ ଦୈବୀ ଦୁର୍ବିପାକରେ ବିପନ୍ନ ଲୋକମାନଙ୍କୁ ସାହାଯ୍ୟ ବଣ୍ଟନ କରନ୍ତି। ତୃତୀୟରେ ଏମାନେ ପୃଥିବୀର ଖୁବ୍ ଅଞ୍ଚଳାଗାରେ ଗୋଷ୍ଠୀଉନ୍ନୟନ ଯୋଜନା ମଧ୍ୟ କରିଥାନ୍ତି। ସେଥିମଧ୍ୟରୁ ବରପାଲି ପ୍ରୋଜେକ୍ଟ ଗୋଟିଏ।

ଏପରି ଗୋଟିଏ ପ୍ରୋଜେକ୍ଟ ବରପାଲିରେ ହେଲା କିପରି ? ନବକୃଷ୍ଣ ଚୌଧୁରୀ ଓଡିଶାରେ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଥରେ ଦିଲ୍ଲୀରେ ତାଙ୍କର କେତେକ କ୍ୱଏକର ନେତାଙ୍କ ସହିତ ଦେଖାହେଲା। ସେମାନେ ଭାରତବର୍ଷର ଗାଁଗଣ୍ଡାର କିଛି ଉନ୍ନୟନ କାମ କରିବାକୁ ଚାହୁଁଥିଲେ। ନବବାବୁ ତାଙ୍କୁ ଓଡ଼ିଶା ଆସିବାପାଇଁ ନିମନ୍ତ୍ରଣ କଲେ। ସେମାନେ ସମ୍ବଲପୁର ଜିଲ୍ଲାର ବରପାଲି ଅଞ୍ଚଳକୁ ବାଛିବାର କାରଣ ହେଲା ଯେ, ହୀରାକୁଦ ଯୋଜନାରୁ ବିଜୁଳି ଉତ୍ପାଦନ ପରେ ସମ୍ବଲପୁର ଜିଲ୍ଲାରେ ବହୁ ଉନ୍ନତିର ସମ୍ଭାବନା

ଥିବାରୁ ସେମାନେ ସମ୍ବଲପୁର ଜିଲ୍ଲାର କୌଣସି ଏକ ଅଞ୍ଚଳର ଲୋକଙ୍କୁ ଭବିଷ୍ୟତ ଉନ୍ନତିକଳ୍ପେ ପ୍ରସ୍ତୁତ କରିବାପାଇଁ ବରପାଲି ଅଞ୍ଚଳକୁ ପସନ୍ଦ କରିଥିଲେ । ବରପାଲି ଅଞ୍ଚଳକୁ ବାଛିବାର ଆଉ ଗୋଟିଏ କାରଣ ହେଲା, ଏଠାକାର ଲୋକେ ଅତି ଉନ୍ନତ ନହେଲେ ମଧ୍ୟ ଅନୁନ୍ନତ ନଥିଲେ ଏବଂ ବରପାଲି ଅଞ୍ଚଳର ସଭ୍ୟତା ଓ ସଂସ୍କୃତି ସମ୍ବଲପୁର ଅଞ୍ଚଳର ପ୍ରତୀକ ଥିଲା ।

**କ୍ବୁଏକର ମାନେ କିଏ ? :** କ୍ବୁଏକର ସମ୍ପ୍ରଦାୟର ଉତ୍ପତ୍ତି ଆଜକୁ ପ୍ରାୟ ୩୦୦ ବର୍ଷ ପୂର୍ବେ ଇଂଲଣ୍ଡରେ ହିଁ ହୋଇଥିଲା । ଏହାର ସୃଷ୍ଟିକର୍ତ୍ତା ଜଣେ ଇଂଲଣ୍ଡ ଅଧିବାସୀ । ସେ ପ୍ରଚାର କଲେ ଯେ, ଆମେ ସମସ୍ତେ ଭଗବାନଙ୍କର ସନ୍ତାନ । ସୁତରାଂ ଆମେ ସମସ୍ତେ ଏକ ଓ ସମାନ । ଆମ ଭିତରେ ବଡ଼ସାନ, ପ୍ରଭୁଭୃତ୍ୟ ଏପରି ସମ୍ପର୍କ ରହିବା ଅନୁଚିତ୍ । ଖ୍ରୀଷ୍ଟିୟାନ ସମ୍ପ୍ରଦାୟରେ ପାଦ୍ରୀମାନଙ୍କ ଭିତରେ ବଡ଼ସାନ ଭାବେ ଶ୍ରେଣୀବିଭାଗକୁ ସେ ପସନ୍ଦ କରୁ ନଥିଲେ । ଜଣକୁ ବଡ଼ଲୋକ ଭାବେ ଗ୍ରହଣକରି ମୁଣ୍ଡନୁଆଁଇ ମୁଣ୍ଡରୁ ଟୋପି କାଢ଼ିଦେବା ପ୍ରଥାକୁ ସେ ଘୃଣା କରୁଥିଲେ । ଏହି ଚିନ୍ତାଧାରାକୁ ସେ ମହାଶୟ କ୍ଲବ ଏବଂ ଗୋଷ୍ଠୀଗତ ଆଲୋଚନା ଜରିଆରେ ପ୍ରଚାର କରିବାକୁ ଲାଗିଲେ । ଇଂଲଣ୍ଡରେ ତତ୍କାଳୀନ ରାଜା ଏହା ଜାଣିପାରି ତାଙ୍କୁ ସତର୍କ କରିଥିଲେ ମଧ୍ୟ ସେ ଶୁଣିଲେ ନାହିଁ । ଏପରି ବାରମ୍ବାର ସତର୍କ ସତ୍ତ୍ୱେ ସେ ମହାଶୟ ଏ ଚିନ୍ତାଧାରାର ପ୍ରଚାର କରିବାରୁ ସେ ଗଢ଼ିଥିବା ସମ୍ପ୍ରଦାୟର ବହୁଲୋକ ଇଂଲଣ୍ଡରୁ ବିତାଡ଼ିତ ହେଲେ । Presbitarianମାନେ ଇଂଲଣ୍ଡରୁ ଆମେରିକା ଚାଲି ଯାଉଥିବା ଭଳି ଏମାନେ ମଧ୍ୟ କେତେକ ସଂଖ୍ୟାରେ ଆମେରିକା ଚାଲି ଯାଇଥିଲେ । ଆମେରିକାରେ ସେମାନେ ଭ୍ରାତୃଭାବର ପ୍ରଚାର କରିବାକୁ ଲାଗିଲେ । ପ୍ରଥମେ ନିଗ୍ରୋମାନଙ୍କ ମଧ୍ୟରେ କାମ ଆରମ୍ଭକଲେ । ତା ପରେପରେ ଉପରଲିଖିତ ମତେ ସେବାକାର୍ଯ୍ୟ କ୍ରମେକ୍ରମେ ପୃଥିବୀଯାକ ବ୍ୟାପିଥିଲା । କ୍ବୁଏକରମାନେ ଖ୍ରୀଷ୍ଟିୟାନ ହେଲେ ମଧ୍ୟ ସେମାନଙ୍କର ଧର୍ମପାଳନରେ ଏତେ ରକମର ଉତ୍ସବ ଆଡ଼ମ୍ବର ଆଦି ନଥାଏ । ସେମାନେ ପ୍ରାୟତଃ ନିରବ ପ୍ରାର୍ଥନା କରନ୍ତି । ଏମାନଙ୍କର ମୁଖ୍ୟ କାର୍ଯ୍ୟାଳୟ ହେଲା ଆମେରିକାର ଫିଲାଡେଲଫିଆ ।

**ପ୍ରଥମ କ୍ବୁଏକର ଦଳର ସଦସ୍ୟ :** ବରପାଲି ପ୍ରୋଜେକ୍ଟ ପାଇଁ ଆସିଥିବା କର୍ମୀମାନେ ବରପାଲିରେ ରହିବା ପୂର୍ବରୁ କିଛିସମୟ ପୁରୀରେ ରହିଥିଲେ । ମୁଁ ପରୋକ୍ଷ ଭାବେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଖବରପାଇ ସେମାନଙ୍କ ସହିତ ପୁରୀରେ ଦେଖାକଲି । ସେମାନଙ୍କ ସଙ୍ଗରେ ବହୁ ବିଷୟରେ ଆଲୋଚନା ହେଲା । ସେମାନେ ମୋର ଚିନ୍ତାଧାରା କେତେଦୂର ବୁଝିଲେ କହି ହେଉନାହିଁ । କିନ୍ତୁ ସେମାନଙ୍କର ଗ୍ରାମଉନ୍ନୟନ ମାର୍ଗ ଆମର ଗାନ୍ଧିଜୀଙ୍କ ଗ୍ରାମସଙ୍ଗଠନ ନୀତିର ଅନୁରୂପ ଥିଲା ବୋଲି ବୁଝିପାରି ଖୁସିହେଲି ଏବଂ ସେମାନଙ୍କ ସହିତ କାମ କରିବାକୁ ସମ୍ମତି ପ୍ରକାଶ କଲି ।

ପ୍ରାୟ ତିନିମାସ ପୁରୀରେ ରହିଲାପରେ ସେମାନେ ବରପାଲି ଆସିଲେ। ସେମାନଙ୍କ ମଧ୍ୟରେ ଥିଲେ Dr. Edwin Abbot ଏବଂ ତାଙ୍କର ଧର୍ମପତ୍ନୀ Dr. Mrs Vivian Abbot ତାଙ୍କର ଗୋଟିଏ ଛଅବର୍ଷର ଝିଅ ଓ ଆଉ ଦୁଇଟି ଛୋଟଛୋଟ ପୁଅ। ଆଉ ଜଣେ ହେଲେ Stanley Myres ଓ ତାଙ୍କ ସ୍ତ୍ରୀ Peddy Stanley ଥିଲେ ଇଂଜିନିଅର । ତାଙ୍କ ସ୍ତ୍ରୀ ଥିଲେ ଜଣେ ଅଫିସ୍ କର୍ମଚାରୀ । ସେମାନେ ଥିଲେ ସଦ୍ୟ ବିବାହିତ। ତାପରେ ଥିଲେ Alston Waring ଏବଂ Beula Waring । ସେମାନେ ଥିଲେ ବୟସ୍କ । ଆଲଷ୍ଟନ ଥିଲେ ଜଣେ ଏକ୍ସଟେନ୍‌ସନ ଓ୍ୱାର୍କର । Phillip Zelly ଥିଲେ ଆମର ଡାଇରେକ୍ଟର । ଫିଲିପ୍ ଥିଲେ ବ୍ରିଟେନର ଲୋକ ଓ ତାଙ୍କର ଧର୍ମପତ୍ନୀ ହେଲିନା ଥିଲେ ପୋଲାଣ୍ଡର ଏବଂ ସେ ପୁରୀରେ ରହି ମଝିରେ ମଝିରେ ବରପାଲି ଆସୁଥିଲେ । Stanley Myres ଆଉ Waringsଥିଲେ ଆମେରିକାର ଏବଂ ଏବଟ୍ ପରିବାର ଥିଲେ କାନାଡ଼ାର। ଭାରତୀୟ କର୍ମୀ ହିସାବରେ ନିତ୍ୟାନନ୍ଦ ପଟ୍ଟନାୟକ ଥିଲେ Social Anthro Projectର ଲୋକ । ବେଲା ବାନାର୍ଜୀ ଥିଲେ staff nurse ଏବଂ ମୁଁ ଥିଲି Village Participation Person ଏବଂ ଗ୍ରାମସାଥୀ ମାନଙ୍କର ଟ୍ରେନିଂ ଅଫିସର। ପରିବାର ଥିବା ଲୋକମାନେ ବରପାଲି ଡାକବଙ୍ଗଳା ନିକଟରେ ତମ୍ବୁପକାଇ ରହୁଥିଲୁ। ତାପରେ ଯେତେବେଳେ ବରପାଲି ଗାଁମୁଣ୍ଡରେ ଗୋଟିଏ ଲମ୍ବା ବହୁକୋଠରି ବିଶିଷ୍ଟ ଘର ତିଆରି ସରିଲା, ସେତେବେଳେ ଆମେ ସମସ୍ତେ କୌଣସିମତେ ସେଠିକି ଚାଲିଗଲୁ। ଆମର ରନ୍ଧାବଢ଼ା, ଖିଆପିଆ ସବୁ ସେଇ ବିଲ୍ଡିଂରେ ହେଉଥିଲା। ସମସ୍ତେ ତଳେ ବସି ଖାଉଥିଲେ। ସେଘର ବାରଣ୍ଡାରେ ଗୋଟିଏ ଅଂଶରେ ଡାକ୍ତରମାନେ ଗୋଟିଏ କ୍ଲିନିକ୍ ଆରମ୍ଭ କରିଦେଲେ। ପରେପରେ ଘରଦୁଆର ତିଆରି ସରିବାରୁ ପରିବାର ଥିବା ଷ୍ଟାଫ୍‌ମାନଙ୍କୁ ବାସସ୍ଥଳୀ ମିଳିଗଲା।

ହେମନ୍ତୀ ଚକ୍ରବର୍ତ୍ତୀ ଥିଲେ ଆମ ଟିମ୍‌ର ଆଡଭାଇଜର । ସେ ଜଣେ ଡେନିସ୍ ମହିଳା। ଅଳ୍ପବୟସରୁ ଡେନମାର୍କରୁ ଆସି ଶାନ୍ତିକେତନରେ ରହି ଅମୀୟ ଚକ୍ରବର୍ତ୍ତୀଙ୍କୁ ବିବାହ ହୋଇଥିଲେ। ଅମୀୟ ଚକ୍ରବର୍ତ୍ତୀ ସେତେବେଳେ ଆମେରିକାରେ ଜଣେ ପ୍ରଫେସର ଥିଲେ। ହୈମନ୍ତୀ ଚକ୍ରବର୍ତ୍ତୀ ଜଣେ ପୂରାପୂରି ଭାରତୀୟ ନାରୀ ହିସାବରେ ଏ ଦେଶର ସଂସ୍କୃତି ଓ ସଭ୍ୟତା ସମ୍ବନ୍ଧରେ ବିଦେଶୀଗୋଷ୍ଠୀଙ୍କୁ ଅବଗତ କରାଉଥିଲେ। ଆମସାଙ୍ଗରେ ଜଣେ କୃଷିବିଶାରଦ ଆନନ୍ଦ ପରିଡ଼ା ଏବଂ ଭାରତୀୟ ଡାକ୍ତର ହିସାବରେ ବଳଭଦ୍ର ମହାପାତ୍ର ସରକାରୀ ସେବାରୁ ବରପାଲି ଯାଇଥିଲେ। ବର୍ଷକ ପରେ ଆନନ୍ଦ ପରିଡ଼ା ତାଙ୍କ ସରକାରୀ କାର୍ଯ୍ୟକୁ ଫେରି ଯାଇଥିଲେ। ସାଢ଼େ ଚାରିବର୍ଷ ପରେ ମୁଁ ଏବଂ ପାଞ୍ଚବର୍ଷ ପରେ ବଳଭଦ୍ର ମହାପାତ୍ର ଆମର ସରକାରୀ କାର୍ଯ୍ୟକ୍ଷେତ୍ରକୁ ଫେରିଆସିଲୁ ।

ଆମର ହତାମଧ୍ୟରେ ଗୋଟିଏ ଛୋଟିଆ ଖପରଲି ଘର, ଆଗରୁ ଲେପ୍ରୋସେରିଅମ ଭାବରେ ବ୍ୟବହୃତ ହେଉଥିଲା। ସେଇ ଗୁମ୍‌ଟିର ଆଗରେ ଥିବା ଛୋଟିଆ ଛଳିଆ ତଳେ ଆମେ ଦୈନନ୍ଦିନ ପ୍ରାର୍ଥନା କରୁଥିଲୁ। ଏଇ ବିଦେଶୀ ସଂସ୍ଥାର ଲୋକମାନଙ୍କୁ ପ୍ରଥମତଃ ବରପାଲି ଲୋକେ ସନ୍ଦେହ ଚକ୍ଷୁରେ ଦେଖୁଥିଲେ। ପ୍ରଚ୍ଛରହେଲା ଯେ ଭାରତ ସରକାର ବରପାଲି ଜମିଦାରୀକୁ ଆମେରିକା ସରକାରକୁ ବିକ୍ରି କରିଦେଇଛି। ଆଉ କେତେକ କହିଲେ ଖ୍ରୀଷ୍ଟିୟାନ ଧର୍ମ ପ୍ରଚ୍ଛରକରିବା ପାଇଁ ବରପାଲି ଆସିଥିଲେ। ଯାହାହେଉ ଗାଁ ସର୍ଭେ ସଙ୍ଗେସଙ୍ଗେ ଆମର କାମ ବହୁତ ମନ୍ଥର ଗତିରେ ଆରମ୍ଭ ହେଲା। ଡାକ୍ତର ଆଉ ନର୍ସ ବାରଣ୍ଡା କ୍ଲିନିକ୍‌ରୁ ଯାଇ ଆଉ ଟିକିଏ ଦୂରରେ ଦୁଇବଖରା ଟିଣଘରେ କ୍ଲିନିକ୍ ଆରମ୍ଭ କଲେ। ବର୍ତ୍ତମାନ ସେଇ ଘରଟି ବରପାଲି ହାଇସ୍କୁଲର କାମରେ ଆସୁଛି । ଏଇ କ୍ଲିନିକ୍‌ରେ ବରପାଲି ଅଞ୍ଚଳର କେତେକ ମହିଳା ଏବଂ କେତେକ କର୍ମଚ୍ଚରୀଙ୍କ ସ୍ତ୍ରୀ ମଧ୍ୟ ମହିଳା ସ୍ୱାସ୍ଥ୍ୟକର୍ମୀ ହିସାବରେ ତାଲିମ ପାଇଲେ ଓ ଗାଁ ଗାଁକୁ ଯାଇ ମହିଳା ଓ ଶିଶୁମାନଙ୍କର ଖାଦ୍ୟ ଓ ସ୍ୱାସ୍ଥ୍ୟସମ୍ବନ୍ଧରେ ଲୋକମାନଙ୍କୁ ଚ୍ଛର୍ଟ, ଛବି ଓ ଫ୍ଲାସ୍‌କାର୍ଡ଼ ଇତ୍ୟାଦି ଜରିଆରେ ଶିକ୍ଷା ଦେଉଥିଲେ।

Dr. Edwin Abbot ଗୋଟିଏ Workshop କରାଇଲେ। ସେଥିରେ Carpentry ଏବଂ Smithy କାମ ନିଜେ କଲେ। ଲେଦ୍‌ମେସିନ ବି ଆଣି ରଖିଲେ। ସେଇ Workshopରେ ବରପାଲି ଲେଟ୍ରିନର ଜନ୍ମ। ବରପାଲି ଲେଟ୍ରିନ ଯେତେବେଳେ ସଫଳଭାବରେ କାର୍ଯ୍ୟକଲା, ସ୍ଥାନୀୟ ଏବଂ ବରପାଲି ବାହାରୁ ଏବଂ ଓଡ଼ିଶା ବାହାରୁ ଅନେକଲୋକ ବରପାଲି ଆସି ସେଇ ପାଇଖାନା ତିଆରି କରିବା ଶିଖିଲେ। ସେତେବେଳେ ଗୋଟିଏ ପାଇଖାନା ତିଆରି କରିବାକୁ ୬୮ ଟଙ୍କା ଖର୍ଚ୍ଚ ହେଉଥିଲା। ପରବର୍ତ୍ତୀକାଳରେ ଏଇପ୍ରକାର ପାଇଖାନାର ପ୍ରଚାର ପାଇଁ ବ୍ଲକ୍‌ମାନଙ୍କରେ ତିଆରି ପାଇଖାନା ଗୋଟିକୁ ସରକାର ରିହାତି ଦେଇ ଟ୪.୫୦ପ. ହିସାବରେ ଲୋକଙ୍କୁ ଯୋଗାଇଦେବାର ବ୍ୟବସ୍ଥା କରିଥିଲେ । ବଡ଼ ଦୁଃଖର କଥା, ବରପାଲିର ତତ୍କାଳୀନ ସରକାରୀ ଡାକ୍ତର ଏବଂ କେତେକ ଲୋକ ଏପରି ପାଇଖାନା ବ୍ୟବହାର କରିବା ଭାରତୀୟ ସଂସ୍କୃତିରେ ପରିପନ୍ଥୀ ବୋଲି ପାଇଖାନା ବ୍ୟବହାର ନ କରିବାକୁ ପ୍ରଚ୍ଛର କରୁଥିଲେ।

**ଡ.ଏଡ୍‌ୱିନ୍ ଏବଟ୍ :** ଡ.ଏବଟ୍ ନିଜେ ଏକାଧାରରେ ଜଣେ ଦକ୍ଷ ବଢ଼େଇ, କମାର, ମିସ୍ତ୍ରୀ ଏବଂ ଇଂଜିନିଅର ଏବଂ ବୈଜ୍ଞାନିକ ଥିଲେ। ସେ କଠିନ ପରିଶ୍ରମ କରିପାରୁଥିଲେ। ସେ ଆମ ରହିବା କ୍ୟାମ୍ପାସର କୂଅରେ ପମ୍ପ୍ ଲଗାଇ ସମସ୍ତ ଅନ୍ତେବାସୀଙ୍କୁ ପାଇପ୍ ଯୋଗେ ପାଣି ପାଇବାର ସୁବିଧା ଦେଇଥିଲେ ଏବଂ ଜେନେରେଟର ଲଗାଇ କେମ୍ପସ୍‌ର ସମସ୍ତ ଘରକୁ ରାତି ୧୧ଟା ପର୍ଯ୍ୟନ୍ତ ବିଜୁଳି ଯୋଗାଇବାର ବନ୍ଦୋବସ୍ତ କରିଥିଲେ।

ଥରେ ଡ.ଏବୋଟ୍ ଡିପଥେରିଆ ଭୋଗୁଥିବା ଗୋଟିଏ ୬/୭ ବର୍ଷ ପିଲାର ଗଳାକୁ ଅପରେସନକରି ଗଳାରେ ଗୋଟିଏ ନଳୀପୂରେଇ ନିଜପାଟିରେ ଶୋଷି ତାହାର ରକ୍ତ, କଫ, ବାହାର କରୁଥିବା ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲି। ପରେ ଚା'ପିଇବା ସମୟରେ ମୁଁ ତାଙ୍କୁ ଛୋଟ ବାରଣ୍ଡାରେ କ୍ଲିନିକ୍‌କରି ଏପରି ଗୋଟିଏ ଦୁଃସାହସିକ କାର୍ଯ୍ୟକରିବା କେତେଦୂର ସଙ୍ଗତ ବୋଲି ପଚାରିଲି। ସେ କହିଲେ ଯେ, ପିଲାଟିଏ ମୃତ୍ୟୁମୁଖରେ ପଡ଼ିବା ଦେଖି ଏଇ ଦୁଃସାହସିକ କାର୍ଯ୍ୟକଲି ଏବଂ ଈଶ୍ୱରଙ୍କ କୃପାରୁ ପିଲାଟି ବଞ୍ଚିଗଲା । ସେ ଏବଂ ତାଙ୍କ ପତ୍ନୀ କୁଷ୍ଠରୋଗୀମାନଙ୍କ ସାଙ୍ଗରେ ଅତି ଅମାୟିକ ଭାବରେ ମିଶୁଥିଲେ। ତାଙ୍କ ଘରଟି ମଧ୍ୟ କୁଷ୍ଠରୋଗୀ ପାଇଁ ଉନ୍ମୁକ୍ତ ଥିଲା । ସେ କୁଷ୍ଠରୋଗୀଙ୍କୁ ମଟରରେ ପାଖରେ ବସାଇ ମଧ୍ୟ ନେଇ ଯାଉଥିଲେ। ସେଥିରୁ ଜଣେ ଦୁଇଜଣଙ୍କୁ ଆମ ବଗିଚାରେ କାମକରିବା ପାଇଁ ନିଯୁକ୍ତ କରିଥିଲେ। ଆମେ ତାଙ୍କୁ ପଚାରିବାରୁ ସେ କହୁଥିଲେ ଯେ, ଏମାନଙ୍କଠାରୁ ରୋଗ ଡେଇଁବାର ଆଶଙ୍କା ଚିରଦିନ ପାଇଁ ଲୋପ ପାଇଯାଇଛି। ସୁତରାଂ ଭୟ କରିବାର କାରଣ ନାହିଁ। କୁଷ୍ଠରୋଗୀଙ୍କ ପାଇଁ ସେତେବେଳେ ବାହାରିଥିବା ଗୋଟିଏ ନୂତନ ଔଷଧ ଡ. ଏବଟ୍ ପ୍ରୟୋଗ କରୁଥିଲେ। ଥରେ ଆମେ ଦୁହେଁ ଶାନ୍ତିନିକେତନ ଯାଇଥିଲୁ। ସେଠାରେ ଟେଗୋରଙ୍କ ଦ୍ୱାରା ପ୍ରତିଷ୍ଠିତ ଗ୍ରାମସେବା କାର୍ଯ୍ୟରେ କୁଷ୍ଠରୋଗୀମାନଙ୍କ ପାଇଁ ସେଠାକାର ଚିକିତ୍ସକମାନେ ଏହି ଔଷଧଟିର ବ୍ୟବହାର ଡ. ଏବଟ୍‌ଙ୍କ ଠାରୁ ଜାଣିଲେ ।

ସେତେବେଳେ ହୀରାକୁଦ ବନ୍ଧ ତିଆରି ଚାଲିଥାଏ। ହୀରାକୁଦବନ୍ଧର ଜଣେ ପ୍ରଖ୍ୟାତ ଇଂଜିନିଅର ଡ.ହୁନ୍‌ଙ୍କ ଠାରୁ ଡ. ଏବଟ୍ ବିଟୁମେନ ବ୍ରିକସ୍ ଓ ପ୍ଲାଷ୍ଟର ବ୍ୟବହାର ଶିଖି ଆମ କେନ୍ଦ୍ରରେ ପରିକ୍ଷୀତ କରିଥିଲେ। ବିଟୁମେନ ବ୍ରିକ୍‌ରେ ଗୋଟିଏ ଆବାସସ୍ଥଳୀ ତିଆରିକଲେ ଏବଂ କେନ୍ଦ୍ରରେ ଥିବା ଗୋଟିଏ ନାଳି ସିଦ୍ଧିଗାଈ ପାଇଁ ଗୁହାଳଟିଏ ତିଆରିକରି ତାହାକୁ ବିଟୁମେନ ପ୍ଲାଷ୍ଟର କରାଇଥିଲେ। ବିଟୁମେନ ଇଟା ଏବଂ ପ୍ଲାଷ୍ଟର ତିଆରି ପାଇଁ ଭାଗମାପ ଥିଲା ଶହେଭାଗରେ ୯୯ଭାଗ ମାଟି, ଗୋବର, କୁଟା ଓ ଭାଗେ ବିଟୁମନ ମିଶୁଥିଲା। ଏହା ଖରା ବର୍ଷରେ ବେଶ୍ ଉଧେଇ ପାରିଥିଲା ବୋଲି ଆମର ହୃଦୟଙ୍ଗମ ହୋଇଥିଲା। ସେ ସୂର୍ଯ୍ୟଚୁଲା ବିଷୟରେ ମଧ୍ୟ ପରୀକ୍ଷା କରୁଥିଲେ। ଆମ୍ବଗଛରେ ଚଢ଼ି ଆମ୍ବ ତୋଳି ପାରୁଥିଲେ। ସେ ଓ ତାଙ୍କ ପତ୍ନୀ ଡ. ଭିଭିଆନ୍ ଏବଟ୍ ଗୀତ ଗାଇ ପାରୁଥିଲେ, ନାଚି ପାରୁଥିଲେ । ତାଙ୍କର ପିଲାମାନଙ୍କୁ ଚିତ୍ରାଙ୍କନ ଶିଖାଉଥିଲେ ଏବଂ ଗୀତଗାଇ ଗପକହି ପିଲାମାନଙ୍କୁ ଶୁଆଇ ଦେଉଥିଲେ।

ସେ ଜଣେ କେବଳ ଡାକ୍ତର ନ ଥିଲେ । ଇଂଜିନିଅର ବି ଥିଲେ । ଦର୍ଶନ, କୃଷିବିଜ୍ଞାନ ଓ ମନସ୍ତତ୍ୱ ସମ୍ବନ୍ଧରେ ମଧ୍ୟ ତାଙ୍କର ଗଭୀର ଜ୍ଞାନଥିଲା। ଥରେ ଡ.ଏବଟ୍ ଓ ତାଙ୍କ ପତ୍ନୀ ଡ.ଭିଭିଆନ୍ ଏବଟ୍ ରାୟପୁରରୁ ବରପାଲି ଆସୁଥିଲେ। ବରପାଲି ପହଞ୍ଚିବାର

୧୨/୧୩ ମାଇଲ ପୂର୍ବରୁ ତାଙ୍କୁ ଗୋଟିଏ ନଈ ପାରିହେବାକୁ ପଡ଼ିଥିଲା । ସେ ନଈରେ ଗୋଟିଏ ଆଇରିସ ବ୍ରିଜ ଥିଲା । ସେତେବେଳେକୁ ସେଇ ବ୍ରିଜଟି ଉପରେ ବର୍ଷା ହେତୁ ପାଣି ପ୍ରବାହିତ ହେଉଥିଲା। ସେମାନେ ସାହସକରି ସେ ବ୍ରିଜ୍ ଉପରେ ଜିପ୍ ଚଳାଇ ନଈଟିକୁ ପାରିହେବାକୁ ଚେଷ୍ଟାକଲେ। କିନ୍ତୁ ବ୍ରିଜ୍ ମଝିରେ ଜିପ୍‌ଟି ରହିଗଲା। ସେତେବେଳେକୁ ରାତି ୧୦/୧୧ଟା ହେବ। ଡ.ଏବଟ୍ ଶ୍ରୀମତୀ ଏବଟ୍‌ଙ୍କୁ ଗାଡ଼ି ଭିତରେ ଛାଡ଼ିଦେଇ ଚାଲିଚାଲି ୧୦/୧୨ ମାଇଲବାଟ ଆସି ଆମକେନ୍ଦ୍ରରେ ପହଞ୍ଚିଲେ। ଗୋଟିଏ ଜାଲ, ଦଉଡ଼ି ଓ ଆଉ ଗୋଟିଏ ଜିପ୍‌ନେଇ ଫେରିଗଲେ। ତାପରେ ନଈ ଭିତରେ ଥିବା ଜିପ୍ ଆଉ ଶ୍ରୀମତୀ ଏବଟ୍‌ଙ୍କୁ ଟାଣିଟାଣି ଆଣି ଆରାମରେ କେନ୍ଦ୍ରରେ ସେଇ ରାତିଭିତରେ ପହଞ୍ଚିଗଲେ। ଆମେ ସକାଳୁଉଠି ଦେଖିଲାବେଳକୁ କିଛି ନହେଲା ପରି ସ୍ୱାମୀସ୍ତ୍ରୀ ଆସି ପ୍ରାର୍ଥନା ଏବଂ ଚା'ପାନରେ ଯୋଗଦେଲେ।

ଆଉଥରେ ଆମ କୂଅରେ ଲାଗିଥିବା ହେଣ୍ଡପମ୍ପର ତଳଅଂଶ କୂଅ ଭିତରେ ରହିଗଲା। ସେତେବେଳେ ଖରାଦିନ ହେଲେ ମଧ୍ୟ କୂଅରେ ପ୍ରାୟ ୮/୯ ଫୁଟ ତଳେ ପାଣିଥିଲା। ପମ୍ପର ସେଇ ଅଂଶଟି ପାଣିଭିତରୁ ଆଣିବାପାଇଁ ସେତେବେଳର ଆମେରିକାର ଜଣେ ଇଂଜିନିଅର Bill Huezel ଏବଂ ଜଣେ ଜର୍ମାନ ଯୁବକ Zim Nayman ଏବଂ ମୁଁ ବହୁବାର କୂଅଭିତରେ ବୁଡ଼ିଲୁ । କିନ୍ତୁ ଜିନଷଟି ପାଇଲୁନାହିଁ ଓ ହାଲିଆ ହୋଇଗଲୁ। ଏହି ସମୟରେ ଡ.ଏବଟ୍ କୌଣସି ଗୋଟିଏ ଗାଁରୁ କାମସାରି ଫେରିଆସି ଆମ ଦୁର୍ଦ୍ଦଶା ଦେଖି କୂଅ ଭିତରକୁ ଲମ୍ଫ ପ୍ରଦାନକଲେ ଏବଂ ଦ୍ୱିତୀୟ ବୁଡ଼ରେ ସେ ପମ୍ପର ସେଇ ଅଂଶଟି ହାତରେ ଧରି ଉପରକୁ ଉଠିଲେ। ଚା'ପାନ ସମୟରେ ମୁଁ ତାଙ୍କର ବାହାଦୁରି କରିବାରୁ ତାଙ୍କର ପତ୍ନୀ Dr. Mrs Abbot, "Don't you see that my husband has got a sixth sense? Look at his face, how honest he looks and that is why my mother chose him for me." ଆମେ ସମସ୍ତେ ସେକଥାକୁ ସ୍ୱୀକାର କଲୁ। ମୁଁ ଅନେକ ସମୟରେ ଲକ୍ଷ୍ୟକରିଛି ଯେ, ଯଦି କୌଣସି ରୋଗୀର ବଞ୍ଚିବାର ଆଶାନଥାଏ ସେ ରୋଗୀଟି କେତେଦିନ ଭିତରେ ମୃତ୍ୟୁବରଣ କରିବ, ସେ ସହଜରେ କହିଦେଇ ପାରୁଥିଲେ।

ଦିନେ ବରପାଲି ଗ୍ରାମର ଜଣେ ୮୦ବର୍ଷର ବୟସ୍କ ଗୋପୀନାଥ ପତି ମୋ ପାଖକୁ ଆସିଲେ ଏବଂ ଗୋଟିଏ ନୂଆଧରଣର ଅଳ୍ପଖର୍ଚ୍ଚରେ କୂଅ କରିବାପାଇଁ ବୁଝାଇଲେ। ମୁଁ ତାଙ୍କୁ ଡ.ଏବଟ୍‌ଙ୍କ ପାଖକୁ ନେଇଗଲି। ଆମ୍ବଗଛ ମୂଳରେ ବସି କୂଅ ତିଆରି ବିଷୟରେ ଚର୍ଚ୍ଚାହେଲା। ସେ କହିଲେ ଗୋଟିଏ କୂଅ ଖୋଳିଦେଇ କୂଅଟିକୁ ତଳୁ ଚାରିପାଞ୍ଚ ଫୁଟ ବାନ୍ଧିଦେଇ ତାକୁ ଗୋଟିଏ କଂକ୍ରିଟ ସ୍ଲାବ୍‌ରେ ଢାଙ୍କିଦେଇ ଭିତରେ ପାଇପଟିଏ ପକାଇଦେଇ କୂଅଟିକୁ ମାଟିରେ ପୋତି ଦିଆଯାଇ ଗୋଟିଏ ହେଣ୍ଡପମ୍ପ ଲଗାଇ ଚାନ୍ଦିନୀଟିଏ କରିଦେଲେ

ଖର୍ଚ୍ଚ ବହୁତ କମିଯିବ । ମୁଁ ଏହିଟି ଡ.ଏବଟ୍‌ଙ୍କୁ ବୁଝାଇ ଦେବାରୁ ସେ ଭାରି ଖୁସି ହୋଇ ସେ ପ୍ରସ୍ତାବଟିକୁ ଗ୍ରହଣ କଲେ। ପ୍ରଥମେ ଗୋପୀ ପତିଙ୍କ ଅଗଣାରେ ୪ଫୁଟ ବ୍ୟାସାର୍ଦ୍ଧର ଗଭୀର କୂଅଟିଏ କରାଗଲା। ତଳେ ଇଟାରେ ୬ ଫୁଟ ଉଚ୍ଚତା ଯାଏଁ ଗଢ଼ାଯାଇ ତାକୁ ଗୋଟିଏ କଂକ୍ରିଟ ସ୍ଲାପ୍‌ଦ୍ୱାରା ଢଙ୍କାଯାଇ ତାଙ୍କୁଣିରେ ୯ଇଞ୍ଚର ଗୋଟିଏ ବର୍ଗାକାର ଖୋଲାଜାଗା ରଖାଗଲା । ସେହି ୯ଇଞ୍ଚ ବର୍ଗାକାରକୁ ନେଇ ଇଟାରେ ଗୋଟିଏ ନଳୀଉପର ପର୍ଯ୍ୟନ୍ତ ତିଆରି କରାଗଲା ତହିଁରେ ପାଇପ୍ ପକାଇ ପମ୍ପ ଫିଟ୍ କରାଗଲା ଏବଂ ତାପରେ କୂଅଟିକୁ ପୂରାପୂରି ପୋତି ଦିଆଗଲା। ସେଦିନ ମୁଁ, ଡଏବଟ୍ ଏବଂ ଜଣେ ଦୁଇଜଣ ମୂଲିଆ ତାଙ୍କ ଘରେ କାମକଲୁ। ଗୋପୀ ପତି ଆମକୁ କାକରା, ଉଖୁଡ଼ା, ଲଡୁ, ଚ' ଇତ୍ୟାଦି ବରାବର ଖାଇବାକୁ ଦେଉଥାନ୍ତି। ସେ କୂଅଟି ତିଆରି ସରିବାପରେ ଡ.ଏବଟ୍ ଏଇ କୂଅଟିକୁ ତିଆରି କରିବାପାଇଁ ଆହୁରି ସହଜ ଉପାୟ ଚିନ୍ତାକରି ତଳୁ ଛଅଫୁଟ ଇଟାରେ ନ ଗଢ଼ି ଦୁଇଟି ସିମେଣ୍ଟ ରିଙ୍ଗରେ ଜଳଭଣ୍ଡାରଟିଏ ତିଆରିକରି ଇଟା ବଦଳରେ ହ୍ୟୁମପାଇପ ଖଞ୍ଜି ଉପର ପର୍ଯ୍ୟନ୍ତ ଆଣିଲେ ଏବଂ ଉପରେ ପମ୍ପ ଫିଟ୍ କରାଗଲା। ଏହି ପମ୍ପ ଫିଟ୍ କଲାବେଳେ ଗୋଟିଏ ରେଡିମେଡ୍ ଛୋଟ କଂକ୍ରିଟ ଗୋଲେଇ ତିଆରିକଲେ। ତାପରେ ପିଗ୍ ଆଇରନ୍‌ରେ ତିଆରି ହେଉଥିବା ହେଣ୍ଡେଲ୍ ଭାଙ୍ଗିଯିବାର ଆଶଙ୍କାକରି କାଠ ହେଣ୍ଡଲ ବ୍ୟବହାର କଲେ ଏବଂ ପମ୍ପର ନଟ୍‌ବୋଲ୍ଟରେ ତେଲ ଦେବାର ବ୍ୟବସ୍ଥା କଲେ। ତାପରେ ଏ ପ୍ରକାର କୂଅ ବରପାଲି ତଥା ଅନ୍ୟାନ୍ୟ ଅଞ୍ଚଳରେ ତିଆରି ହେଲା। ସେତେବେଳେ ଗାଁବାଲା କୂଅଟିକୁ ଖୋଲିଦେଇ କିଛି ବାଲି ଆଉ ମୋରମ୍ ସଂଗ୍ରହକରି ଦେଉଥିଲେ। ସେଥିରୁ କିଛି କୂଅ ଭିତରେ ଯାଉଥିଲା ଏବଂ ରିଙ୍ଗରେ ଚାରିପାଖେ ଦିଆଯାଉଥିଲା। ଗାଁଲୋକଙ୍କର ଏ ଅବଦାନ ଛଡ଼ା କୂଅଟି ତିଆରିପାଇଁ ପମ୍ପ ସହିତ ୪୦୦ଟଙ୍କା ଖର୍ଚ୍ଚ ହେଉଥିଲା।

ବରପାଲିରେ 'ଗଙ୍ଗାଧର ସ୍ମୃତିଭବନ' ନିର୍ମାଣ ହେବାର ପ୍ରସ୍ତାବ ଉଠିଲା। ଡ.ଏବଟ୍ ତାର ପ୍ଲାନ୍, ଏଷ୍ଟିମେଟ୍ ତିଆରି କଲେ। ପ୍ଲାନ୍‌ଟି ହେଲା ଦୁଇପଟେ ଦୁଇଟି କୋଠରି ରଖି ମଝିରେ ଗୋଟିଏ ଚଉଡ଼ା ବାରଣ୍ଡା ରଖାଗଲା । ଯାହାଦ୍ୱାରା କି ଦୁଇଟି କୋଠରିରେ ସଭା ଏବଂ ପୁସ୍ତକାଳୟ କାମଚାଲିବା ଛଡ଼ା ନାଟକ ଅଭିନୟର ସୁବିଧା ମିଳିପାରିଲା। କଥାହେଲା ଟଙ୍କା ଆସିବ କେଉଁଠାରୁ ? ଡ.ଏବଟ୍ ଅର୍ଥର ବ୍ୟବସ୍ଥା ପାଇଁ ଗୋଟିଏ ଅଭୂତପୂର୍ବ କୌଶଳ ପାଞ୍ଚିଲେ। ସେ ପରାମର୍ଶ ଦେଲେ ଯେ, ଜଗନ୍ନାଥ ମନ୍ଦିରଠାରୁ ସ୍ମୃତିଭବନ ନିର୍ମାଣ ସ୍ଥାନ ପର୍ଯ୍ୟନ୍ତ ଗୋଟିଏ 'ଅଣିମୁଦ୍ରା'ର ମାର୍ଗ କରାଯିବ। ଏଇ ଅନୁସାରେ ଚାରିଆଡ଼େ ପ୍ରଚାର କରାଗଲା। ଜଗନ୍ନାଥ ଦେଉଳଠାରୁ ନିର୍ଦ୍ଦିଷ୍ଟସ୍ଥଳ ପର୍ଯ୍ୟନ୍ତ ଅଳ୍ପ ଚଉଡ଼ାର କପଡ଼ାରେ ରାସ୍ତା ତିଆରି କରାଗଲା ଏବଂ ଜଗନ୍ନାଥ ମନ୍ଦିରଠାରୁ ଲୋକେ ଆଗ୍ରହର ସହିତ ସେ କପଡ଼ାର ଉପରେ ଅଣିପରେ ଅଣି ଗୋଟିଏ ଗୋଟିଏ ମୁଦ୍ରା ଖଞ୍ଜିବାକୁ ଲାଗିଲେ।

ଗୋଟିଏ ଅଣିଠାରୁ ବହୁସଂଖ୍ୟାର ଅଣି ପର୍ଯ୍ୟନ୍ତ ଜଣେଜଣେ ରଖିଲେ। ସେଦିନ ସାପ୍ତାହିକ ହାଟଥିବାରୁ ବହୁ ଲୋକଙ୍କ ସମାଗମ ହୋଇଥିଲା। ହୁଳହୁଳି ହରିବୋଲ ମଧ୍ୟରେ ସମସ୍ତେ ସେଇରାସ୍ତାରେ ଅଣିମାନ ଥୋଇ ଚାଲିଲେ। ଏହି ଅଣି ମୁଦ୍ରାମାର୍ଗଟି ଦେଉଳଠାରୁ ସାପ୍ତାହିକ ହାଟ ପର୍ଯ୍ୟନ୍ତ ଆସିଥିଲା। ଡ.ଏବଟ୍ ଗୋଟିଏ ଟିଣଡବା ନେଇ ହାଟମଧ୍ୟରେ ପ୍ରତ୍ୟେକ ଦୋକାନରୁ ଭିକ୍ଷାମାଗିବାରେ ମଧ୍ୟ ଲାଗିଲେ। ଏଥିରେ ଗ୍ରାମବାସୀ ବିଶେଷ ସାହଯ୍ୟ କରିଥିଲେ। ବିଶେଷଭାବରେ ଭାଗୀରଥ ପୂଜାରୀ ଓ କବିପୁତ୍ର ଭଗବାନ ମେହେର ବିଶେଷ ଲାଗିପଡ଼ିଥିଲେ। ସେଥିରେ ଅଣିଯାକ ଏବଂ ଡ.ଏବଟ୍ ହାତରୁ ଭିକ୍ଷାକରିଥିବା ମୁଦ୍ରାଯାକ ସଂଗ୍ରହକରି ହିସାବ କରିବାରୁ ଜଣାଗଲା ଯେ ପ୍ରାୟ ୮୦୦ଟଙ୍କା ମିଳିଲା। ସେଥିରେ ସ୍ମୃତିଭବନ ତିଆରି କାମ ବଳିଷ୍ଠ ପ୍ରଧାନ ବୋଲି ଜଣେ ବ୍ୟକ୍ତି ଆରମ୍ଭ କଲେ। ତାପରେ କିଛି ବଦାନ୍ୟବ୍ୟକ୍ତିଙ୍କ ସାହାଯ୍ୟ ଓ ସରକାରୀ ଅନୁଦାନରେ ଭବନ ନିର୍ମାଣକାର୍ଯ୍ୟ ସମ୍ପୂର୍ଣ୍ଣ ହେଲା। ଗଙ୍ଗାଧର ସ୍ମୃତିଭବନ ପ୍ଲାନ୍ ଅନୁସାରେ ଅଞ୍ଚ କେତୋଟି ଗାଁରେ ଲୋକେ ସ୍କୁଲଘର ମଧ୍ୟ ନିର୍ମାଣ କଲେ।

ତିନିବର୍ଷରେ ଡ.ଏବଟ୍‌ଙ୍କ କାର୍ଯ୍ୟ ପୂରିଯିବାରୁ ସେ ଯେତେବେଳେ ବରପାଲି ଛାଡ଼ିଲେ, ବହୁତଲୋକ ଗାଁରୁ ଆସି କାନ୍ଦିକାନ୍ଦି ତାଙ୍କୁ ବିଦାୟ ଦେଲେ । ଏହାପରେ ଏବଟ୍ ଦମ୍ପତ୍ତି ମଧ୍ୟପ୍ରଦେଶର ରସୁଲିଆଠାରେ ବ୍ରିଟିଶ କ୍ୱଏକରମାନଙ୍କ ଦ୍ୱାରା ଚାଲିଥିବା ଗୋଟିଏ ପ୍ରୋଜେକ୍ଟରେ କାମ କଲେ । ତାଙ୍କ ବଦଳରେ ଜଣେ ଆମେରିକାନ୍ ଡାକ୍ତର ଆସିଲେ । ତାଙ୍କର ନାମ ଡ.ରାଲଫ୍ ଭିକ୍ଟର । ଡ.ଭିକ୍ଟରଙ୍କ ପରିବାରରେ ଥିଲେ ତାଙ୍କ ସ୍ତ୍ରୀ ପଲି ଭିକ୍ଟର ଓ ଆଠବର୍ଷର କନ୍ୟା ଜୋସି । ଜୋସି ବରପାଲି ବାଳିକା ପ୍ରାଇମେରୀ ସ୍କୁଲରେ ନାମ ଲେଖାଇ ପଢୁଥିଲା । ରାଲଫ୍ ଭିକ୍ଟର ଭଲ ବେହେଲା ବଜାଇ ପାରୁଥିଲେ । ଯା ଭିତରେ ଆଇରିସ୍ ଦମ୍ପତ୍ତି ବରପାଲି ଛାଡ଼ିବାରୁ ତାଙ୍କ ବଦଳରେ ୱିଲିୟମ୍ ହୁଜେଲ୍ ନାମରେ ଜଣେ ଇଂଜିନିଅର ଆସି ଯୋଗଦେଲେ ।

ପରେ କେରମିଟ୍ ହ୍ୱାଇଲ୍‌ହେଡ୍ ଏବଟ୍‌ଙ୍କର ପାଇଖାନା ଓ କୂଅକାମ ଚାଲୁ ରଖିଲେ । ଡ.ଏବଟ୍ ଥିଲାବେଳେ ସାଧବ ରଣା, ଅପର୍ତ୍ତି ସାହୁ ଏବଂ ଗୁଣନିଧି ନାମକ ତିନିଜଣ ଯୁବକଙ୍କୁ ଏ ରକମର ତାଲିମ ଦେଇ ଯାଇଥିଲେ । ପରେପରେ ସାଧବ ଓ ଅପର୍ତ୍ତି ଏହାକୁ ବ୍ୟବସାୟ ଆକାରରେ ଗ୍ରହଣକରି ବହୁ ଅର୍ଥ ଉପାର୍ଜନ କରିପାରିଲେ ।

**ଦ୍ୱିତୀୟ କ୍ୱଏକର ଦଳ :** ପରେପରେ ଯେଉଁମାନେ ଆସିଥିଲେ ସେମାନଙ୍କ ଭିତରେ ଡ.ରୟ ଗୁଷଲି, ଡ୍ୱିଟ୍ ପ୍ଲାଟ୍ ଏବଂ ଲେଭେନ୍ ପ୍ଲାଟ୍, ସମୀର ମଜୁମଦାର, ଗୀତା ମଜୁମଦାର, ପରେଶ ଦାସଗୁପ୍ତା ଏବଂ ଡାଇରେକ୍ଟର ହିସାବରେ ମିସ୍ ଆଲିନିଅର ଏଟନ୍, ମାଟ୍ ଥମସନ୍ ଏବଂ ତାଙ୍କ ସ୍ତ୍ରୀ ମେରି, ଗୋଟିଏ ଝିଅ ଏବଂ ଗୋଟିଏ ପୁଅ । ମୁଁ ବରପାଲି ଛାଡ଼ିବା ପର୍ଯ୍ୟନ୍ତ ଏମାନଙ୍କ ସହିତ କାମ କରିଥିଲି ।

ମଜୁମ୍‌ଦାର ପରିବାର କେନ୍ଦ୍ରରେ ରହି ହୈମନ୍ତୀ ଚକ୍ରବର୍ତ୍ତୀଙ୍କ ସହିତ ସମସ୍ତଙ୍କର ଖାଇବା ପିଇବା କଥା ବୁଝୁଥିଲେ । ଦାସଗୁପ୍ତଜୀ ଏବଂ ରୟ ଗୁଷ୍ଲି କୃଷି ବିଶାରଦ ହିସାବରେ କାମ କରୁଥିଲେ । ଦାସଗୁପ୍ତ ଜୀ ଜଣେ ବେଙ୍ଗଲି ରିଫ୍ୟୁଜି ଏବଂ ସେ ଓଡ଼ିଶା ସରକାରଙ୍କର କୃଷି ବିଭାଗରେ ଜଣେ କର୍ମଚାରୀ ଥିଲେ । ତାଙ୍କର କୃଷି ସମ୍ବନ୍ଧରେ ବିଶେଷ ପ୍ରତ୍ୟକ୍ଷ ଜ୍ଞାନ ଥିଲା ଏବଂ ସେ ଜଣେ ପଣ୍ଡିତ ବ୍ୟକ୍ତି ଥିଲେ । ତାଙ୍କରି ଯତ୍ନରେ ଆମ କେନ୍ଦ୍ରଟି ନାନାପ୍ରକାର ଉନ୍ନତଧରଣର ପନିପରିବା ଏବଂ ଫୁଲଫଳ ସମ୍ଭାରରେ ହସି ଉଠୁଥିଲା ।

ଡ.ରାଲଫ୍ ଏବଂ ପରେପରେ ଡେଭିଡ୍ ବାସେଟ୍ ଏବଂ ତାଙ୍କର ଜାପାନୀ ସ୍ତ୍ରୀ ମାୟକୀ ବାସେଟ୍, କ୍ଲିନିକ୍ ଏବଂ ସ୍ୱାସ୍ଥ୍ୟରକ୍ଷା କାର୍ଯ୍ୟକ୍ରମ ସୁଚାରୁରୂପେ ଚଳାଇଥିଲେ । ଡ.ଡିୱିଟ୍ ପ୍ଲାଟ୍ ଏବଂ ମୁଁ ଆମେ ଦୁହେଁ ସହକର୍ମୀ ହିସାବରେ କାମକଲୁ । ଡ.ପ୍ଲାଟ୍‌ଙ୍କ ଠାରୁ ମୁଁ ବହୁତ ବିଷୟ ବିଶେଷତଃ Audio Visual Aidର ତିଆରି ଶିଖିଲି। ଡ.ଡିୱିଟ୍ ପ୍ଲାଟ୍ ଜଣେ ଯୁବକ ଥିଲେ। ସେ Biological Scienceରେ DSc. କରିଥିଲେ। Dr. Dwight Platt Projectକାମ ଛଡ଼ା ସାପ, ବେଙ୍ଗ, ଝିଟିପିଟି ଏଣ୍ଡୁଅଧରି ତାଙ୍କୁ କାଟିବା ପୋଛିବା ଆଦି କାମରେ ମଧ୍ୟ କିଛିସମୟ ଦେଉଥିଲେ। ସେ ଏଠାକୁ ଅସିବାପରେ ତାଙ୍କର ଭାବୀ ସ୍ତ୍ରୀ ଲାଭୋନେ ବରପାଲି ଆସିଲେ। ସେ ଦୁଇଜଣ ଅଲଗା ରହି ନିଜନିଜର କାର୍ଯ୍ୟ କରୁଥିଲେ। ଲାଭୋନେ ଅଫିସ୍ କାମରେ ନିଯୁକ୍ତ ଥିଲେ। ଦୁହେଁ ବର୍ଷେ ଅଲଗା ରହିବାପରେ ବରପାଲିରେ ସେମାନଙ୍କର ବିବାହ ସମ୍ପନ୍ନ ହେଲା। ଜଣେ ପାଦ୍ରୀ ଆସି ଖ୍ରୀଷ୍ଟିୟାନ ପଦ୍ଧତିରେ ବିବାହ କାର୍ଯ୍ୟ ସମ୍ପନ୍ନକଲେ। ତାପରେ କେନ୍ଦ୍ରର ମହିଳାମାନେ ସେମାନଙ୍କୁ ଲୁଗା, ଶାଢ଼ୀ, ମୁକୁଟ ପିନ୍ଧାଇ ସେମାନଙ୍କର ବନ୍ଦାପନା କରିଥିଲେ ଏବଂ ଅଳ୍ପଖର୍ଚ୍ଚରେ ଗୋଟିଏ ଭୋଜିର ଆୟୋଜନ କରାଯାଇଥିଲା। କେନ୍ଦ୍ରରେ କାମ କରୁଥିବା ଅନ୍ୟମାନଙ୍କ ମଧ୍ୟରୁ ଜିମ୍ ନେମେନ୍ ନାମକ ଜଣେ ଜର୍ମାନ ଯୁବକ ଅଳ୍ପ କେତେଦିନ ପାଇଁ ଥିଲେ। ସେ ବିଶେଷ ପାଠପଢ଼ି ନଥିଲେ ମଧ୍ୟ ଅଫିସ୍ କାମରେ ସାହାଯ୍ୟ କରୁଥିଲେ । ସଉଦାପତ୍ର, ଚିଠି ନେବାଆଣିବା ଏବଂ ଏଆଡ଼େ ସେଆଡ଼େ ଯିବା ତାଙ୍କର କାମ । ହିଟଲର୍ ରାଜୁତି ସମୟର ତାଙ୍କର ତିକ୍ତ ଅନୁଭୂତି ଥିଲା । ଯଦିଓ ସେ ସମୟରେ ସେ ଅଳ୍ପବୟସର ଥିଲେ । କେବଳ ତାଙ୍କୁ ହିଟ୍‌ଲର ରାଜୁତି ସମୟର କଥା ପଚାରିଲେ ସେ କିଛି କହୁ ନଥିଲେ। ସେ ବଡ଼ ଖୁସ୍‌ମିଜାଜର ଲୋକ ଥିଲେ ଏବଂ ସମସ୍ତଙ୍କର ସହ ଖୁସିରେ ମିଶି ପାରୁଥିଲେ। ମଝିରେ ମାଶାହୀରୋ ନାମକ ଜଣେ ଜାପନୀ ଭଦ୍ରଲୋକ ଅଳ୍ପଦିନ ପାଇଁ ଆମସାଙ୍ଗରେ ଥିଲେ। ସେ ଜଣେ ଭଦ୍ରଲୋକ ଏବଂ ଭାରତର ଅନୁନ୍ନତ ଅବସ୍ଥା ଦେଖି ସେ ଦୁଃଖ ପ୍ରକାଶ କରୁଥିଲେ। ଏଲେନିଆର ଇଟନ ଥିଲେ ଜଣେ ପଣ୍ଡିତା ଓ ବୁଦ୍ଧିମତୀ । ସେ ସମସ୍ତଙ୍କୁ ଭଲପାଉଥିଲେ, କିନ୍ତୁ Extension କାମ ତାଙ୍କୁ ଭଲ ଜଣାନଥିଲା ବୋଲି ମୋର

ମନେହୁଏ। ମଟ୍ ଥମସନ୍ ଥିଲେ ଜଣେ ଉତ୍ତମ ବ୍ୟକ୍ତି। ସମସ୍ତଙ୍କ ସାଙ୍ଗରେ ମିଳିମିଶି ପାରୁଥିଲେ, କିନ୍ତୁ ସେ କହିଲାବେଳେ ତାଙ୍କର ଉଚ୍ଚାରଣ ଏପରି ଥିଲା ଯେ, ଅନେକ ସମୟରେ ସେ କ'ଣ କହୁଥିଲେ ମୁଁ କିଛି ବୁଝିପାରୁ ନ ଥିଲି।

**ମୋର ଏବଂ ମୋ ସ୍ତ୍ରୀଙ୍କ ଭୂମିକା :** ପ୍ରୋଜେକ୍ଟରେ ମୋର କାମଥିଲା ଗାଁର ଲୋକମାନଙ୍କର ନିଜର ଅବସ୍ଥା ଓ ସୁଖ ଦୁଃଖ ବୁଝି ସେମାନଙ୍କ ସମସ୍ୟାର ସମାଧାନ କରିବା ଦିଗରେ ସେମାନଙ୍କ ମଧ୍ୟରେ ଚେତନା ଜାଗ୍ରତ କରାଇବା । ଏ ଦିଗରେ ବୌଦ୍ଧିକ ଦୃଷ୍ଟିରୁ ମୁଁ କେନ୍ଦ୍ରର ଡାକ୍ତର, କୃଷିବିତ୍ ଆଦି ବିଶେଷଜ୍ଞମାନଙ୍କର କାର୍ଯ୍ୟକ୍ରମ ଅନୁସାରେ ଲୋକମାନଙ୍କ ମଧ୍ୟରେ ମୋର କାର୍ଯ୍ୟପନ୍ଥା ତଥା କୌଶଳ ନିର୍ଦ୍ଧାରିତ କରୁଥିଲି। ତଦନୁଯାୟୀ ଗ୍ରାମସାଥୀମାନଙ୍କୁ ତାଙ୍କର କର୍ମକ୍ଷେତ୍ରରେ ଦିଗ୍‌ଦର୍ଶନ ଦେଉଥିଲି ଏବଂ ସେମାନଙ୍କୁ ଆମ କେନ୍ଦ୍ରରେ ସକଳ ପ୍ରକାର ତାଲିମ୍‌ର ବ୍ୟବସ୍ଥା କରୁଥିଲି। ତାଛଡ଼ା ମୁଁ ନାମକୁ ମାତ୍ର ସାଧାରଣଶିକ୍ଷା ଦାୟିତ୍ୱରେ ଥିଲେ ମଧ୍ୟ ବିଦ୍ୟାଳୟଶିକ୍ଷା ଦିଗରେ ଆମର ସେପରି କିଛି କହିବାର ବା କରିବାର ନଥିଲା। ତଥାପି ମୁଁ ଥରେ ଦୁଇଥର ଅଣଛାତ୍ର ଗ୍ରାମବାସୀମାନଙ୍କ ମଧ୍ୟରେ କ୍ରୀଡ଼ା ପ୍ରତିଯୋଗିତା କରାଇଥିଲି। ଏଥିରେ ପୁରସ୍କାର ରୂପେ ଦିଆଯାଇଥିବା ଦ୍ରବ୍ୟଗୁଡ଼ିକ ଗ୍ରାମବାସୀମାନଙ୍କ ଠାରୁ ଆଦାୟ କରାଯାଇଥିଲା। ୫୦ଜଣ ପ୍ରାଥମିକ ଶିକ୍ଷକଙ୍କୁ ପନ୍ଦରଦିନ ଆମକେନ୍ଦ୍ରରେ ରଖି ନାନାବିଷୟରେ ବୌଦ୍ଧିକ ଶିକ୍ଷାଦେବା ଛଡ଼ା ସେମାନଙ୍କୁ ନାନାପ୍ରକାର ଗୀତ, ନାଚ ଇତ୍ୟାଦି ଶିକ୍ଷା ଦିଆଯାଇଥିଲା। ସେମାନେ ଆଗ୍ରହର ସହିତ ଗୁଜରାଟି କାଠିନାଚ ଶିଖିଥିଲେ ଏବଂ ନାଚ ପ୍ରଦର୍ଶନକରି ସମସ୍ତଙ୍କୁ ଆପ୍ୟାୟିତ କରିଥିଲେ।

ଖାଦ୍ୟ ଓ ସ୍ୱାସ୍ଥ୍ୟ ବିଷୟରେ ଲୋକଙ୍କୁ ବୁଝାଇବା ପାଇଁ ଆମ ଡାକ୍ତର କିଛିକିଛି ଫ୍ଲେକାର୍ଡ ଏବଂ ରଚ୍ ମହିଳା ସ୍ୱାସ୍ଥ୍ୟକର୍ମୀମାନଙ୍କ ଜରିଆରେ ଆମ କ୍ଲିନିକ୍‌ରେ ପ୍ରାଇମେରୀସ୍କୁଲ ମାନଙ୍କରେ ଏବଂ ଗ୍ରାମର ମହିଳାମାନଙ୍କ ମଧ୍ୟରେ ବ୍ୟବହାର କରୁଥିଲେ। ଡ. ଡିୱିଟ୍ ପ୍ଲାଟ୍ ଏବଂ ମୁଁ ଏ ବିଷୟରେ ଚିନ୍ତାକରି ଅଧିକ ଶିକ୍ଷା ଉପକରଣ ସଂଗ୍ରହ ଏବଂ ତିଆରି ଦିଗରେ ଲାଗିପଡ଼ିଲୁ। Poster ଠାରୁ Documentary Film ପର୍ଯ୍ୟନ୍ତ ବହୁତ ଦୃଶ୍ୟ ଶ୍ରାବ୍ୟ ଉପକରଣ ତିଆରି କରି ବ୍ୟବହାର କରିଥିଲୁ। ଡାକ୍ତରମାନେ କ୍ଲିନିକ୍‌ରେ କାମ କଲାବେଳେ ଆମେ ଲୋକମାନଙ୍କୁ ପୋଷ୍ଟର, ଫ୍ଲାକାର୍ଡ଼, ଖଦୀଗ୍ରାଫ୍ ଏବଂ ଫିଲ୍ମ ଷ୍ଟ୍ରିପ୍‌ସ ଜରିଆରେ ଖାଦ୍ୟ ଓ ସ୍ୱାସ୍ଥ୍ୟ ବିଷୟରେ ଶିକ୍ଷା ଦେଉଥିଲୁ । ଆଉ ମଧ୍ୟ ସେଠାରେ ଉନ୍ନତଧରଣର ଶାଗମଞ୍ଜି ବିଶେଷତଃ ପାଳଙ୍ଗ ଶାଗର ମଞ୍ଜି ଏବଂ ଟମାଟୋ ମଞ୍ଜି ଇତ୍ୟାଦି ବିକ୍ରୟ କରୁଥିଲୁ। ଏହାଛଡ଼ା ଗାଁରେ ଡ.ପ୍ଲାଟ୍ ଏବଂ ମୁଁ ପାଳିକରି ଯାଇ ନାନା ବିଷୟରେ ଡକ୍ୟୁମେଣ୍ଟାରୀ ଫିଲ୍ମ ଦେଖାଇ ଫିଲ୍ମଟିର ବିଷୟବସ୍ତୁ ଉପରେ ଗ୍ରାମବାସୀଙ୍କ ସହ ଆଲୋଚନା କରୁଥିଲୁ । ମୁଁ ନିଜେ ଜିପ୍‌ରେ ଜେନେରେଟର, ଫିଲ୍ମ ପ୍ରୋଜେକ୍ଟର ନେଇ

ଜିପ୍‌ଚଳାଇ ଗାଁ ଗାଁ ଯାଇ ସିନେମା ଦେଖାଉଥିଲି। ଆମେ ଗାଁ ଲୋକଙ୍କ ପାଇଁ ଗୋଟିଏ ଗୋଟିଏ ହାତଲେଖା ମେଗାଜିନ Cyclostyle କରି ଆମ ଗ୍ରାମସାଥୀମାନଙ୍କ ଜରିଆରେ ବାଣ୍ଟୁଥିଲୁ। ସେଥିରେ ଋଷବାସ, ଖାଦ୍ୟ, ସ୍ୱାସ୍ଥ୍ୟ, ଶିକ୍ଷା ବିଷୟରେ ସରଳ ଭାଷାରେ ଲୋକମାନଙ୍କ ଋହିଦାକୁ ଋହିଁ ଲେଖାମାନ ବାହାରୁଥାଏ।

ଗୋପୀ ପତିଙ୍କର ପରାମର୍ଶ ଅନୁସାରେ ପମ୍ପଲଗା କୂଅର ପ୍ରଚଳନ ପୂର୍ବରୁ ମୁଁ କେତେକ ଗାଁରେ ଖୋଲା କୂଅ ଖୋଳାଇବାରେ ଲାଗି ପଡ଼ିଥିଲି । ପ୍ରଥମବର୍ଷ ୪ଟିଗାଁରେ ପକ୍କା କୂଅ ଖୋଳାଗଲା। ଗ୍ରାମବାସୀ କୂଅ ଖୋଳୁଥିଲେ। ପଥର ଓ ବାଲି ଜମା କରୁଥିଲେ। ସିମେଣ୍ଟ ଏବଂ ମିସ୍ତ୍ରୀ ମଜୁରିପାଇଁ ଗ୍ରାମବାସୀଙ୍କୁ ଆମେ ସରକାରୀ ଅନୁଦାନର ବ୍ୟବସ୍ଥା କରାଇ ଦେଉଥିଲୁ ଏବଂ ପକ୍କାକୂଅ ଗୁଡ଼ିକ ୪୦୦-୫୦୦/-ଟଙ୍କା ଭିତରେ ହୋଇ ପାରୁଥିଲା। କିନ୍ତୁ ସରକାରୀ ବ୍ୟବସ୍ଥା ଅନୁଯାୟୀ ୧୫୦୦/-ଟଙ୍କା ବ୍ୟବସ୍ଥା ଥିଲେ ସୁଦ୍ଧା ସରକାର ସେଗୁଡ଼ିକ କରାଇପାରୁ ନଥିଲେ ମୁଁ ମଝିରେ ମଝିରେ ପ୍ରୋଜେକ୍ଟର ସ୍ତ୍ରୀ, ପୁରୁଷ, ବିଦେଶୀବନ୍ଧୁ ସମସ୍ତଙ୍କୁ କୂଅ ଖୋଳାଯାଇଥିବା ଗାଁକୁ ନେଇ ଯାଇଥିଲି। ସେମାନେ ସେଠାରେ ଗାଁଲୋକଙ୍କୁ ପଥର ଭାଙ୍ଗିବା ଏବଂ ବୋହିବା କାମରେ ସାହାଯ୍ୟ କରୁଥିଲେ। ଏପରି ଋରୋଟି ଗାଁରେ ଋରିଥର କାର୍ଯ୍ୟକ୍ରମ ରଖା ଯାଇଥିଲା। ଏହାଦ୍ୱାରା ବିଦେଶୀ ଲୋକମାନେ ଗାଁ ଲୋକମାନଙ୍କ ସହିତ ମିଶି ପାରିଥିଲେ ଏବଂ ଲୋକଙ୍କ ଭିତରେ ଏହା ଗୋଟିଏ ଭଲପ୍ରଭାବ ସୃଷ୍ଟିକରି ପାରିଥିଲା। ଆମର ନୀତିଥିଲା ଗାଁଲୋକଙ୍କ ସହିତ କାମକରିବା।

ଦ୍ୱିତୀୟବର୍ଷ ୧୪ଟି ଗାଆଁର ଲୋକେ ଗାଁରେ କୂଅ ଖୋଳିବାପାଇଁ ବାହାରି ପଡ଼ିଲେ। ତନ୍ମଧ୍ୟରୁ କେତେଗୁଡ଼ିଏ ଗାଁରେ ଲୋକଙ୍କ ଭିତରେ ବୁଝାମଣା ଅଭାବରୁ ମତଭେଦ ଘଟି କୂଅଖୋଳା କାମ ଅଧାରୁ ବନ୍ଦ ହୋଇ ଯାଇଥିଲା। ଦୁଇଟି ଗାଁରେ ପଥର ପଡ଼ିବାରୁ କୂଅ ଖୋଳାରେ ଅସୁବିଧା ହେଲା । କିନ୍ତୁ ସେ ଅସୁବିଧାକୁ ଦୂରକଲେ ଡ. ଏଡ୍‌ୱିନ୍ ଏବଟ୍ । ସେ ମୋ ସାଙ୍ଗରେ ନିଜେ ଯାଇ ବ୍ଲାଷ୍ଟିଂ କରାଇଲେ। ୧୪ଟି ଗାଁମଧ୍ୟରୁ ୮ଟି ଗାଁରେ କୂଅ ଖୋଳାଯାଇ ପଥରବନ୍ଧା କାମ ଶେଷହୋଇ କେବଳ ଋନ୍ଦିନି ତିଆରି କାମ ବାକିଥିଲା।

ଏ ସମୟରେ ଥରେ କଲେକ୍ଟର ଆସି ମୋତେ କହିଲେ ଯେ, ଆପଣ ଜଣେ ସରକାରୀ କର୍ମଋରୀ। ଆପଣ ଜାଣନ୍ତି କିପରି ସରକାରୀ ଟଙ୍କା ଖର୍ଚ୍ଚ କରାଯାଏ। ଆପଣ ୧୫ଦିନ ମଧ୍ୟରେ କୂଅକାମ ସାରିଦେଇ ଆପଣଙ୍କୁ ଦିଆଯାଇଥିବା ଟଙ୍କା ଖର୍ଚ୍ଚକରି ଆମକୁ ରିପୋର୍ଟ କରନ୍ତୁ। ସରକାର ଆମକୁ ୬୦୦୦/-ଟଙ୍କା ଦେଇଥିଲେ। ସେଇ ଟ ୬୦୦୦ ରୁ କେବଳ ଟ ୨୮୦୦ ଖର୍ଚ୍ଚକରି ୮ଟି ପକ୍କାକୂଅ କରି ପାରିଥିଲୁ । ୧୫ଦିନ ପରେ ତହସିଲଦାର ଆସି ମୋତେ ସାକ୍ଷାତକଲେ ଏବଂ ଟଙ୍କାର ହିସାବ ମାଗିଲେ। ମୁଁ ତାଙ୍କୁ ଟ

୨୮୦୦ର ହିସାବ ଏବଂ ଭାଉଚର ଦେଲି ଏବଂ ଟ ୩୨୦୦ ନଗଦ ଫେରାଇ ଦେଲି । ସୁତରାଂ କେବଳ ଟ ୨୮୦୦ରେ ଛଅଦନି ବ୍ୟତୀତ ୮ଟି ପକ୍କାକୂଅ ତିଆରି ହୋଇପାରିଥିଲା। ପରେ ଶୁଣିବାକୁ ପାଇଲି ତହସିଲଦାର ଏ ଆଠଟିଗାଁକୁ ଯାଇ ପ୍ରତ୍ୟେକ କୂଅପାଇଁ ଟ ୧୫୦୦ର ଭାଉଚର ସଂଗ୍ରହକରି ଲୋକଙ୍କ ପାଖରୁ ନେଲେ। ଗ୍ରାମବାସୀମାନଙ୍କ ମଧ୍ୟରେ କାମ କରାଇବାରେ ଆମର ମୂଳମନ୍ତ୍ର ଥିଲା ଯେ, ଆମେ ଲୋକଙ୍କୁ ଟଙ୍କାପଇସା ଦିଗରେ କୌଣସି ସାହାଯ୍ୟ କରିବୁନାହିଁ। ଆମେ ତାଙ୍କପାଇଁ କାମ ନକରି ତାଙ୍କ ସହିତ କାମ କରିବୁ।

କେବଳ ମୁଁ ଜାଣିବାରେ, ଆମେ ଗୋଟିଏ ଛୋଟିଆ ତନ୍ତୁବାୟ ସହଯୋଗ ସମିତି କରାଇ ସେମାନଙ୍କୁ ୧୦.୦୦/-ଟଙ୍କା ମୂଳଧନ ଯୋଗାଇ ଦେଇଥିଲୁ । ସେ ଟଙ୍କା କାଳକ୍ରମେ ତାଙ୍କଠାରୁ ଅସୁଲ କରିବା ଆମର ଇଚ୍ଛାଥିଲେ ମଧ୍ୟ ସେ ଟଙ୍କା ଆଦାୟ କରି ନଥିଲୁ। ପ୍ରୋଜେକ୍ଟ ପକ୍ଷରୁ ମଜୁମଦାର ସମିତିର କାର୍ଯ୍ୟରେ ବୁଣାଳୀମାନଙ୍କୁ ସାହାଯ୍ୟ କରୁଥିଲେ ଏବଂ ନୂଆନୂଆ ଡିଜାଇନ୍‌ର ପୋଷାକପତ୍ରକୁ ଲକ୍ଷ୍ୟକରି ବସ୍ତ୍ର ପ୍ରସ୍ତୁତ କରିବାରେ ଦିଗ୍‌ଦର୍ଶନ ଦେଉଥିଲେ । ବିଦେଶ ବଜାରକୁ ଲକ୍ଷ୍ୟକରି ସୁଟ, ସାର୍ଟ ଆଦି ପାଇଁ କପଡ଼ା ବୁଣାଗଲା । ସେଗୁଡ଼ିକ ଦେଶୀ ଓ ବିଦେଶୀ ବଜାରରେ ଆଦରଲାଭ କଲା।

ପ୍ରଥମ ବର୍ଷ ଆମ ପ୍ରୋଜେକ୍ଟ ପକ୍ଷରୁ ତିନିଜଣ ଚାଷୀଙ୍କୁ ପରୀକ୍ଷା ସ୍ୱରୂପ ତାଙ୍କ କ୍ଷେତରେ ପ୍ରୟୋଗ କରିବାପାଇଁ ନାଇଟ୍ରୋଜେନ, ଫସ୍‌ଫେଟ୍ ଏବଂ ପଟାସ ସାର କିଛିକିଛି ଯୋଗାଇ ଦିଆଯାଇଥିଲା। କଥା ଥିଲା, ଫସଲ ଅମଳପରେ ସେମାନେ ସାରର ଦାମ୍ ପ୍ରୋଜେକ୍ଟକୁ ଫେରାଇଦେବେ । କିନ୍ତୁ କେହି କିଛି ଫେରାଇଲେ ନାହିଁ । ଆମର କ୍ଲିନିକ୍‌ରେ ରୋଗୀମାନଙ୍କୁ କୌଣସି ଔଷଧ ମାଗଣାରେ ଦିଆଯାଉନଥିଲା। ଥରେ ମଟ୍ ଥମସନ୍ ମୋ ସାଙ୍ଗରେ ଗୋଟିଏ ଗାଁକୁ ଗଲେ ସେଠାକାର କୂଅ ଦେଖିବା ପାଇଁ। କୂଅଟି ସେ ଗାଁର ହରିଜନ ବସ୍ତିକୁ ଲାଗିକରି କରାଯାଇଥିଲା । କିନ୍ତୁ ହରିଜନମାନେ ସେ କୂଅରୁ ପାଣି ଟାଣିପାରୁ ନଥିଲେ। ଗାଁର ଅନ୍ୟ ଜାତିର ଲୋକ ସେ କୂଅକୁ ବ୍ୟବହାର କରୁଥିଲେ ଏବଂ ହରିଜନମାନଙ୍କୁ ପାଣି କାଢ଼ି ଦେଉଥିଲେ। ଏହାଦେଖି ଥମସନ୍ ଭାରି ଦୁଃଖିତ ହେଲେ । ସେ ଆମକୁ ଏ ସମ୍ବନ୍ଧରେ ଜିଲ୍ଲାପାଳଙ୍କୁ ଜଣାଇବା ପାଇଁ କହିଲେ । ତାଙ୍କୁ ମୁଁ ଗାଁର ଲୋକଙ୍କ ଚଳଣି ଓ ଅସ୍ପୃଶ୍ୟତା ବିଷୟରେ ବୁଝାଇଦେଇ କହିଲି ଯେ କୂଅଟିର ବ୍ୟବହାର ମାତ୍ର ଏଇ ୧୫/୨୦ଦିନ ହେଲା। କିଛିଦିନ ଅପେକ୍ଷା କରନ୍ତୁ, ମୁଁ ଏହାର ସମାଧାନ କରିଦେବି। ହରିଜନମାନେ କୂଅଟିରୁ ସିଧାସଳଖ ପାଣି ଟାଣିବେ ଏବଂ ସେଇଟି ତାଙ୍କର କୂଅବୋଲି ଅଳ୍ପଦିନ ମଧ୍ୟରେ ସମ୍ପୂର୍ଣ୍ଣ ଅଧିକାର ପାଇଯିବେ। ଆଉଥରେ ଗଙ୍ଗାଧର ସ୍ମୃତି ଭବନରେ ଗାଁର କେତେକ ଯୁବକ ଗୋଟିଏ ପଙ୍‌କ୍ତି ଭୋଜନର ଆୟୋଜନ କଲେ। ମୁଁ ସେହି ପଙ୍‌କ୍ତି ଭୋଜନରେ ଯୋଗଦେଇଥିଲି। ଦେଖିଲି ଯେ ମୋଚି ଓ ଗଣ୍ଡପଡ଼ାର

ଲୋକ ଥିଲେ ମଧ୍ୟ ଘାସିପଡ଼ାର କୌଣସି ଲୋକ ପଙ୍‌କ୍ତି ଭୋଜନରେ ନଥିଲେ। ମୁଁ ତଦନ୍ତକରି ଏ କଥା ବୁଝିବାପରେ ଦୁଃଖ ପ୍ରକାଶ କରି ଚାଲି ଆସିବାକୁ ବାହାରଲି। ଏଥିରେ ମୋଚି ଆଉ ଅନ୍ୟାନ୍ୟ ଶ୍ରେଣୀର ହରିଜନମାନେ କହିଲେ ଯେ ଘାସିପଡ଼ାର ଲୋକେ ଆସିଲେ ସେମାନେ ଉଠି ଚାଲିଯିବେ। ସୁତରାଂ ଗୋଟିଏ ବିଭ୍ରାଟକୁ ଏଡ଼ାଇବା ପାଇଁ ବାଧ୍ୟହୋଇ ପଙ୍‌କ୍ତି ଭୋଜନରେ ଯୋଗଦେଲି।

୧୯୫୫ ମସିହାରେ କଟକ ଜିଲ୍ଲାରେ ଦଳେଇଘାଇ ଭାଙ୍ଗି ପ୍ରବଳ ବଢ଼ିହୋଇ ଜଗତ୍‌ସିଂହପୁର ଅଞ୍ଚଳରେ ବହୁତ ଗାଁ ଛାରଖାର ହୋଇ ଯାଇଥିଲା। ଆମ ପ୍ରୋଜେକ୍ଟ ପକ୍ଷରୁ ଡ. ରାଲ୍‌ଫ ଭିକ୍ଟର, ଡ. ବଳଭଦ୍ର ମହାପାତ୍ର, ବିଲ୍ ହୁକେଲ୍, ଜିମ୍, ଦୁଇଜଣ ମହିଳା ସ୍ୱାସ୍ଥ୍ୟକର୍ମୀ ଏବଂ ମୁଁ ସେ ଅଞ୍ଚଳକୁ କାମ କରିବାକୁ ଗଲୁ ଏବଂ ପ୍ରଥମେ ଗୋଟିଏ ଡାକବଙ୍ଗଳା ପାଖରେ ସନ୍ତସନ୍ତିଆ ଜାଗାରେ ଦୁଇଟି ତମ୍ବୁପକାଇ ରହିଲୁ । କାରଣ ଡାକବଙ୍ଗଳାରେ ଗାଁ ଗୁଡ଼ିକରେ ବଣ୍ଟନ ପାଇଁ ଖାଦ୍ୟ ସାମଗ୍ରୀ ରଖାଯାଇଥିଲା। ତାପରେ ଦ୍ୱିତୀୟ କେମ୍ପ ଆମର ହେଲା ତିର୍ତ୍ତୋଲ ଡାକବଙ୍ଗଳାରେ। ଆମର କାମ ଥିଲା ଗାଁ ଗାଁ ଯାଇ ଲୋକଙ୍କ ସ୍ୱାସ୍ଥ୍ୟ ପରୀକ୍ଷାକରି ଔଷଧ ଦେବା, କୂଅ ବିଶୋଧନ କରିବା, ମିଲ୍କ ପାଉଡରରୁ କ୍ଷୀର ତିଆରିକରି ଗାଁ ପିଲାମାନଙ୍କୁ ଦେବା। କୂଅ ବିଶୋଧନ ଓ ମିଲ୍କ ପାଉଡର ବଣ୍ଟନ କାମଥିଲା ମୋର ଆଉ ଜର୍ମାନୀ ଯୁବକ ଜିମ୍‌ର । ଆମେ ଦୁଇଜଣ ନିଜେ ବଡ଼ବଡ଼ ଡେକିଚିରେ ମିଲ୍କ ପାଉଡର ଏବଂ ବ୍ଲିଚିଂ ପାଉଡ଼ର ଆଦି ମୁଣ୍ଡରେ ବୋହି ଗାଁ ଗାଁ ଯାଉଥିଲୁ। ତାଛଡ଼ା ମୁଁ ବନ୍ୟାଅଞ୍ଚଳର ଗୋଟିଏ ଚାର୍ଟ୍ ଆଉ ମେପ୍ ରଖି ଡାକ୍ତରମାନେ କେଉଁକେଉଁ ଗାଁକୁ ଯିବେ ନିର୍ଦ୍ଦେଶ ଦେଉଥିଲି। ଆମେ ପନ୍ଦରଦିନ କଠିନ ପରିଶ୍ରମ କରି ଯେଉଁ ସେବାକାମ କଲୁ, ତାହା Orissa Health Dept. ଏବଂ ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇଥିଲା।

ମୁଁ ବରପାଲିରେ ଥିଲାବେଳେ ମୋର ସ୍ତ୍ରୀ ମଧ୍ୟ ଜଣେ ସ୍ୱାସ୍ଥ୍ୟକର୍ମୀ ହିସାବରେ କେନ୍ଦ୍ରରେ ଥିବା କ୍ଲିନିକ୍‌ରେ କାମକରିବା ସଙ୍ଗେସଙ୍ଗେ ସାଇକେଲ୍‌ରେ ଯାଇ ଗାଁମାନଙ୍କର ଛାତ୍ର ତଥା ମହିଳାମାନଙ୍କୁ ଖାଦ୍ୟ ଏବଂ ସ୍ୱାସ୍ଥ୍ୟ ସମ୍ବନ୍ଧରେ ବୁଝାଉଥିଲେ । ସେ ସ୍ତ୍ରୀମାନଙ୍କୁ ପ୍ରସବ ସମୟରେ ସାହାଯ୍ୟ କରୁଥିଲେ। ଆମେ ଦୁଇଜଣ କାର୍ଯ୍ୟବ୍ୟସ୍ତ ରହୁଥିବାରୁ ଘରର ରନ୍ଧାବଢ଼ାରେ ସାହାଯ୍ୟ କରିବାପାଇଁ ଜଣେ ଦଳିତ ସ୍ତ୍ରୀଲୋକ ଗୋଟିଏ ଓଳିପାଇଁ ଆମଘରେ ରନ୍ଧାବଢ଼ା କରିବାର ଭାର ନେଇଥିଲା। ଗାଁ କାମରେ ଆମର ମହିଳା ସ୍ୱାସ୍ଥ୍ୟକର୍ମୀ, ସେମାନଙ୍କର ଶିକ୍ଷୟିତ୍ରୀ ଏବଂ ନେତ୍ରୀ ବେଲା ବାନାର୍ଜୀ ବହୁତ ଲୋକପ୍ରିୟତା ଅର୍ଜନ କରିଥିଲେ।

ଆମ କ୍ଲିନିକ୍‌ରେ ଗୋଟିଏ ସନ୍ତାନହୀନ ଦମ୍ପତି ଆସି ନିଜକୁ ପରୀକ୍ଷା କରାଇ ଔଷଧ ସେବନପରେ ଗୋଟିଏ ସନ୍ତାନ ପାଇବାରୁ ଗାଁଲୋକଙ୍କର ଡାକ୍ତରମାନଙ୍କ ଉପରେ ଆଶା ବଢ଼ିଗଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ, ସମ୍ବଲପୁରରେ ଉଚ୍ଚଶିକ୍ଷିତ ଲୋକେ

ଏପରିକି ଡାକ୍ତରମାନେ ପ୍ରଚାରକଲେ ଯେ, ଆମ ଡାକ୍ତରମାନେ କୃତ୍ରିମ ପ୍ରଜନନ ଦ୍ୱାରା ସନ୍ତାନ ଜନ୍ମ କରାଇଛନ୍ତି।

ବରପାଲି ଗ୍ରାମର ସ୍ୱନାମଧନ୍ୟ ସ୍ୱାଧୀନତାସଂଗ୍ରାମୀ ଭାଗୀରଥି ପଟ୍ଟନାୟକଙ୍କୁ କମ୍‌ଲୋକ ଜାଣନ୍ତି । କିନ୍ତୁ ସମସ୍ତେ ତାଙ୍କ ବିଷୟରେ ଜାଣିବା କଥା। ଆମ କେନ୍ଦ୍ରରେ ଦେଶୀବିଦେଶୀ ସମସ୍ତ ବନ୍ଧୁ ଯେଉଁଦିନ ଡାକବଙ୍ଗଳା ଓ ଟେଷ୍ଟ୍ ଛାଡ଼ି ସରକାରୀ ଗୃହରେ ପ୍ରବେଶକଲୁ, ସେଦିନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଆମ କେନ୍ଦ୍ରକୁ ଯାଇଥିଲେ। ଅଳ୍ପ କେତେଜଣ ଗ୍ରାମବାସୀ ସେଠାରେ ଜମା ହୋଇଥିଲେ। ତନ୍ମଧ୍ୟରୁ ଭାଗୀରଥି ପଟ୍ଟନାୟକ ଆଗକୁ ଚାଲିଆସି ନବବାବୁଙ୍କୁ ଦେଶଦ୍ରୋହୀ ଏବଂ ସେ ଆମେରିକା ସାମ୍ରାଜ୍ୟର ଶାସନ ଚଳାଇଛନ୍ତି ବୋଲି ଆକ୍ଷେପ କରିଥିଲେ । କିନ୍ତୁ ନବବାବୁ ସେଥିରେ ବିଚଳିତ ହୋଇ ନଥିଲେ। ହସିଦେଇ ଭାଗୀରଥି ବାବୁଙ୍କ ସୁଖଦୁଃଖ କଥା ପଚାରିଲେ। ତାପରେ ମୁଁ ଭାଗୀରଥି ବାବୁଙ୍କ ସହିତ ତାଙ୍କ ଭଗ୍ନକୁଟୀରରେ ତାଙ୍କୁ ବାରମ୍ବାର ସାକ୍ଷାତ କଲି। ମୁଁ ଜାଣିଲି ଯେ ସ୍ୱାଧୀନତାପ୍ରାପ୍ତି ପରେ ସେ କଂଗ୍ରେସରେ ନରହି କମ୍ୟୁନିଷ୍ଟ ଦୀକ୍ଷାଗ୍ରହଣ କରିଥିଲେ । ତାଙ୍କ ସହିତ ମୁଁ ବହୁତ ଦୁଃଖସୁଖ ହୁଏ ଏବଂ ତାଙ୍କର ଆଦର୍ଶ ଏବଂ କାର୍ଯ୍ୟପନ୍ଥାକୁ ମଧ ପସନ୍ଦ କରେ। ସେଥିପାଇଁ ସେ ମୋ ବସାକୁ ମଧ୍ୟ ମଝିରେ ମଝିରେ ଆସିଲେ। ମୁଁ ତାଙ୍କୁ ଅସ୍ତେଆସ୍ତେ କୁଏକର ଏବଂ ଆମେରିକା ବନ୍ଧୁ ସେବାସଂଘର କାର୍ଯ୍ୟ ଏବଂ ବରପାଲି କେନ୍ଦ୍ରର କାର୍ଯ୍ୟ ସମ୍ବନ୍ଧରେ ବୁଝାଇଲି। ସେ ଧୀରେଧୀରେ ଏସବୁ କଥା ବୁଝିଲେ ଏବଂ ବିଦେଶାଗତ ବନ୍ଧୁମାନଙ୍କ ସଙ୍ଗରେ ମିଶି ଏବଂ ଦିନେଦିନେ ଆମ କେନ୍ଦ୍ରକୁ ଆସି ଆମସଙ୍ଗରେ ଗପସପ କରିବାକୁ ଲାଗିଲେ । ଏହିପରି ଭାବରେ ସେ ଆମର କାର୍ଯ୍ୟାବଳୀକୁ ଲକ୍ଷ୍ୟକରି ପସନ୍ଦ କଲେ ଏବଂ ଆମର ଜଣେ ବନ୍ଧୁ ହୋଇଗଲେ।

ମୋର ବରପାଲିରେ ଥିବା ଜୀବନକାଳରେ ମୋତେ ସରକାରୀ ଗୁପ୍ତଚର ବିଭାଗର ଜଣେ ଅଫିସର ବହୁବାର ଡକାଇ ମୋ ସାଙ୍ଗରେ ବନ୍ଧୁତା ସ୍ଥାପନକରି ଏହି ସେବାକେନ୍ଦ୍ର ସମ୍ବନ୍ଧରେ ଜାଣିବାକୁ ଚେଷ୍ଟା କରିଥିଲେ । ତାଙ୍କର ବରାବର ଲକ୍ଷ୍ୟଥିଲା, ବିଦେଶୀମାନଙ୍କର କୌଣସି କୁକର୍ମ ସମ୍ବନ୍ଧରେ ମୁଁ କିଛି ଧାରଣାଦେବି । ମୁଁ ତାଙ୍କୁ ବହୁତ ବୁଝାଇ କହିଲି ଯେ, ଆମେରିକା ବନ୍ଧୁଙ୍କ ସେବାସଂଘ ଗୋଟିଏ ସେବା ଅନୁଷ୍ଠାନ ଏବଂ ଏଠାରେ ଏମାନଙ୍କ କୌଣସି ଅନ୍ୟ ଅଭିସନ୍ଧି ନାହିଁ। ତେବେ ଏମାନେ ରାଜନୈତିକ ଦର୍ଶନ ଦିଗରୁ କମ୍ୟୁନିଷ୍ଟ ମତବାଦର ବିରୋଧୀ।

ରେଭିନ୍ୟୁ କମିଶନର କିମ୍ବା ବଡ଼ବଡ଼ ସରକାରୀ ଅଫିସରମାନେ ବେଳେବେଳେ ଆମ କେନ୍ଦ୍ରକୁ ଆସନ୍ତି । ସେମାନେ ଆସିଲେ ଅଧୀନସ୍ଥ ଅଫିସର୍ ଓ ତଳସ୍ତରର କର୍ମଚାରୀ ମଧ ବହୁସଂଖ୍ୟାରେ କେନ୍ଦ୍ରରେରେ ରୁଣ୍ଡ ହୁଅନ୍ତି। ଏହାଦେଖି ତାଙ୍କ ମଧ୍ୟରୁ ଜଣେ ମୋତେ କହିଲେ ଯେ, ଏତେଲୋକ ଜଣକ ସାଙ୍ଗରେ ଆସି ତାଙ୍କର ସମୟ ନଷ୍ଟ କରୁଛନ୍ତି

କାହିଁକି ? ଆମଦେଶରେ ଏପରି ହୁଏନାହିଁ। ମୁଁ ତାଙ୍କୁ ଏତେଲୋକ ଆସିବାର ଆବଶ୍ୟକତା ସମ୍ବନ୍ଧରେ ବୁଝେଇଦେଲି ସିନା, ମୋ ମନ ମାନିଲାନାହିଁ। ମୁଁ ଦିନେ ତାଙ୍କମଧ୍ୟରୁ ଜଣଙ୍କୁ ପଚାରି ବୁଝିଲି ଯେ, ତାଙ୍କର ବଡ଼ବଡ଼ କର୍ମଚାରୀମାନଙ୍କର ପରିଦର୍ଶନ ଅତି ସରଳ ଓ ନିରାଡ଼ମ୍ବର। ମୋତେ ଜଣେ କହିଲେ, ଯଦି ଜଣେ ବରିଷ୍ଠ କର୍ମଚାରୀ ଗୋଟିଏ କୃଷିଫାର୍ମ ପରିଦର୍ଶନରେ ଯାଆନ୍ତି, ତା ହେଲେ ସେ କେବଳ ଫାର୍ମ ପରିଚାଳକଙ୍କୁ ଲେଖିଦିଅନ୍ତି ଯେ ସେ ଅମୁକ ତାରିଖରେ, ଅମୁକ ସମୟରେ ତାଙ୍କ ଫାର୍ମରେ ପହଞ୍ଚିବେ। ସୁତରାଂ ଦୟାକରି କୃଷିଫାର୍ମର ପରିଚାଳକ ସେତେବେଳେ କାମରେ ଉପସ୍ଥିତ ଥିବେ।

**ଭି.ଆଇ.ପି.ମାନଙ୍କର ପ୍ରୋଜେକ୍ଟ ପରିଦର୍ଶନ :** ପ୍ରୋଜେକ୍ଟ ଆରମ୍ଭ ହେବାର ଅଳ୍ପଦିନ ପରେ ରାଜ୍ୟପାଳ ଫଜଲ ଅଲ୍ଲୀ ଆମ କେନ୍ଦ୍ର ପରିଦର୍ଶନରେ ଯାଇଥିଲେ । ମୁଁ ତାଙ୍କୁ ସ୍ୱାଗତଜଣାଇ ଫାଟକପାଖରୁ ନେଇ ସମସ୍ତଙ୍କ ସାଙ୍ଗରେ ପରିଚୟ କରାଇଦେଲି। ଆମ୍ବଗଛ ମୂଳେ ଆମେ ପ୍ରାର୍ଥନା କରୁଥିବା ସିମେଣ୍ଟପିଣ୍ଡି ଉପରେ ପଟିପକାଇ ସମସ୍ତେ ବସିଲେ। ରାଜ୍ୟପାଳ ମଧ୍ୟ ଆମସାଙ୍ଗରେ ବସିଲେ। ଫଜଲ ଅଲ୍ଲି କହିଲେ ଯେ, ସେ ଗୋଟିଏ ମେଗାଜିନ୍‌ରେ ଏଇ କେନ୍ଦ୍ରର ଜଣେ ଡାକ୍ତରଙ୍କର ଗୋଟିଏ ଲେଖା ପଢ଼ିଥିଲେ। ସେଥିରେ ଡାକ୍ତର ଲେଖିଥିଲେ ଯେ, କେବଳ ମିଲ୍କ ପାଉଡରରେ ପତଳା କ୍ଷୀରକରି ଛୋଟଛୋଟ ପିଲାଙ୍କର ଡାଏରିଆ ଭଲ କରି ଦେଇଥିଲେ। ସେ ଡାକ୍ତର ଜଣକ କିଏ ବୋଲି ଜାଣିବାକୁ ଚାହିଁବାରୁ ଡ. ଏଡ୍‌ୱିନ୍ ଏବଟ୍ ଆସି ସେ ହିଁ ସେଇ ଲେଖକ ବୋଲି କହି ବୁଝାଇଦେଲେ ଯେ, ଡାଏରିଆ ଯୋଗୁଁ ପିଲାଙ୍କର ଡିହାଇଡ୍ରେସନ ହୋଇ ମୃତ୍ୟୁ ହୋଇଥାଏ। ସୁତରାଂ ଯେତେ ଶିଶୁ ସେ ଅବସ୍ଥାରେ ଏଠିକି ଆସନ୍ତି, ଆମେ ତାଙ୍କୁ କେବଳ ମିଲ୍କ ପାଉଡରରୁ ପ୍ରସ୍ତୁତ କ୍ଷୀର ପିଆଇ ଭଲ କରିଦେଉଛୁ। ଏହା ଅତି ସାଧାରଣକଥା । ଏଥିରେ କିଛି ବିଶେଷତା ନାହିଁ। ତାପରେ ରାଜ୍ୟପାଳ ଟିକିଏ ଏପଟ ସେପଟ ଗପସପ କରି ଅସୁସ୍ଥ ଥିବା ଆଲଷ୍ଟନ୍ ୱାରିଙ୍ଗ୍‌ଙ୍କୁ ଦେଖିବା ପରେ ଗାଡ଼ିରେ ବସି ଯିବାକୁ ବାହାରିଲେ। ଗାଡ଼ି ଷ୍ଟାର୍ଟକରିବା ପୂର୍ବରୁ ମୋତେ ହାତଠାରି ଡାକିଲେ ଏବଂ ପଚାରିଲେ ମୋ ସ୍ଥାନରେ ନବରଙ୍ଗପୁର ଟ୍ରେନିଂସ୍କୁଲରେ କିଏ ରହିଲେ ? ତାଙ୍କର ଆବଶ୍ୟକ ଯୋଗ୍ୟତା ଥିଲା କି ନାହିଁ ଇତ୍ୟାଦି । ତାପରେ ଏହି କେନ୍ଦ୍ରରେ କାମ ମୋତେ କେମିତି ଲାଗୁଛି ପଚାରି ଗାଡ଼ି ଛାଡ଼ିଦେଲେ।

ପ୍ରୋଜେକ୍ଟ କାମ ଆରମ୍ଭ ହେବାର ଅଳ୍ପଦିନ ମଧ୍ୟରେ ଭାରତରେ ଥିବା ତତ୍କାଳୀନ ଆମେରିକାର ରାଷ୍ଟ୍ରଦୂତ ଚେଷ୍ଟର ବାଉଲସଙ୍କ ପତ୍ନୀ ଆସି ଆମକେନ୍ଦ୍ରରେ ତିନିଦିନ ରହିଥିଲେ। ସେହି ସମୟରେ ବାସନ ଧୋଇବା, ଘର ଓଳାଇବା ଇତ୍ୟାଦି କାମ ମଧ୍ୟ ସେ କରୁଥିଲେ ଏବଂ ସମସ୍ତଙ୍କ ସାଙ୍ଗରେ ତଳେବସି ଖାଉଥିଲେ। ମୋ ପରି ଭାରତୀୟକର୍ମୀଙ୍କ ପିଲାମାନଙ୍କ ପାଇଁ ଅନ୍ୟ ବିଦେଶୀ ମହିଳାଙ୍କ ସହିତ ଖଟିଆରେ ଫିତା

ମଧ୍ୟ ବୁଣିଲେ। ସେଇଠାରେ ମୁଁ ଅନୁଭବକଲି, ଏପରି ମହତ୍‌ଲୋକ ଥିବା ଦେଶ ଆମେରିକା ପୃଥିବୀରେ ମହତ୍ ହେବା ଆଶ୍ଚର୍ଯ୍ୟଜନକ ନୁହେଁ। ଜର୍ଜ ୱାସିଂଟନ୍, ଆବ୍ରାହାମ ଲିଙ୍କନଙ୍କ ଦେଶ ନିଶ୍ଚୟ ମହତ୍ ହେବ। ଆମେ ଭାରତବର୍ଷରେ ମହତ୍ତ୍ୱର କେବଳ ପ୍ରଚାରକରୁ । କିନ୍ତୁ ବାସ୍ତବକ୍ଷେତ୍ରରେ ଅକର୍ମା ବୋଲି କହିବାକୁ ହେବ।

ମଧ୍ୟପ୍ରଦେଶର ହୁସାଙ୍ଗାବାଦ ଜିଲ୍ଲାର ରସୁଲିଆ କେନ୍ଦ୍ରର ପରିଚାଳକ ଡୋନାଲଡ ଗ୍ରୁମ୍ ଥରେ ବରପାଲି ଆସିଥିଲେ। ସେ ଜଣେ ଗାନ୍ଧିଭକ୍ତ ଓ ଗାନ୍ଧିବାଦୀ ଥିଲେ। ଡୋନାଲ୍‌ଡ ଗ୍ରୁମ୍ ଆମକେନ୍ଦ୍ରର ବିଦେଶାଗତ ବନ୍ଧୁମାନଙ୍କୁ ଭାରତୀୟ ସଂସ୍କୃତି ସମ୍ବନ୍ଧରେ ଗୋଟିଏ ମଜାକଥା କହିଥିଲେ, "ଏ ଦେଶର ଲୋକମାନଙ୍କର ଯଥେଷ୍ଟ ଶକ୍ତି, ନିଷ୍ଠା ଏବଂ ସହିଷ୍ଣୁତା ଅଛି। ଉଦାହରଣ ଦେଇ କହିଲେ, ଜଗନ୍ନାଥ ଦର୍ଶନ କିମ୍ବା ଅନ୍ୟ କୌଣସି ତୀର୍ଥକ୍ଷେତ୍ରକୁ ଚାଲିଚାଲି ଗଲାବେଳେ ଅନେକଲୋକ ରାସ୍ତାରେ ଶୋଇ ମୁଣ୍ଡପଟକୁ ହାତଲମ୍ବାଇ ଖଣ୍ଡିଏ କାଠିରେ ଗାରଦେଇ ଉଠିପଡ଼ି ସେଇ ଗାର ଉପରେ ଠିଆହୋଇ ପୁଣି ଶୋଇ ଗାର ଦେଇଦେଇ ଗନ୍ତବ୍ୟସ୍ଥଳ ଉଦ୍ଦେଶ୍ୟରେ ଦୀର୍ଘପଥ ଅତିକ୍ରମ କରନ୍ତି। ଧର୍ମ ବା ଭଗବତ୍ ପ୍ରାପ୍ତି ଆଶାରେ ଯେଉଁ ଲୋକେ ଏତେ କଷ୍ଟବରଣ କରିପାରନ୍ତି, ସେମାନେ ଯଦି ଉତ୍ପାଦନ ଦିଗରେ ଏପରି ନିଷ୍ଠା ଓ ଶରୀରଶ୍ରମ ପ୍ରଦର୍ଶନ କରନ୍ତେ, ତାହେଲେ ଏ ଦେଶର ଅବସ୍ଥା ବଦଳି ଯାଆନ୍ତା ।" ତାପରେ ସେ ପୁରୀରେ ସର୍ବ ଭାରତୀୟ ସର୍ବୋଦୟ ସମ୍ମିଳନୀରେ ଯୋଗଦେଇ ଫେରିଗଲେ। ସେହିପରି Horace Alexander ମଧ୍ୟ ଦିନେ ଆମ ଗହଣରେ ଉପସ୍ଥିତ ହେଲେ। ସେ ମଧ ଜଣେ ଗାନ୍ଧିବାଦୀ ଥିଲେ। ସେ ୮୦ ବର୍ଷର ଜଣେ ସୁସ୍ଥ ଓ ଦୀର୍ଘକାୟ ପୁରୁଷ ଥିଲେ। ଗାନ୍ଧୀଙ୍କ ସହ ତାଙ୍କର ଗୋଟିଏ ଫଟୋ ଉଠାଇ ନେବାପାଇଁ ଅନୁରୋଧ କରିବାରୁ ସେ ତାହା ନନେଇ ମୋତେ ପାଖରେ ରଖିବାପାଇଁ କହିଥିଲେ। ଏଇ ଦୁଇଜଣ ମହାନ୍ ବ୍ୟକ୍ତି ବିଲାତ ଦେଶର । କିନ୍ତୁ Horace Alexander ପରେ ଆମେରିକାରେ ରହିଲେ ବୋଲି ମୁଁ ଶୁଣିଲି।

**ବିଦାୟ ବରପାଲି :** ବରପାଲିରେ ସାଢ଼େଚାରିବର୍ଷ କାମକଲା ପରେ ସରକାରୀ କର୍ମକ୍ଷେତ୍ରକୁ ଡି.ଏସ୍.ଇ.ଓ. ହିସାବରେ କାମ କରିବାପାଇଁ ପୁଣି ଫେରିଆସିଲି। ମୁଁ ଆସିଲାବେଳେ ସେବାସଂଘର ସମସ୍ତ କର୍ମୀ, ବିଶେଷତଃ ଡାଇରେକ୍ଟର ମଟ୍ ଥମସନ୍ ବହୁତ ଦୁଃଖ ପ୍ରକାଶ କରିଥିଲେ। ଯାହାହେଉ, ସମ୍ବଲପୁରର ଡି.ଏସ୍.ଇ.ଓ. ଭାବରେ ରହିବାରୁ ଏମାନଙ୍କ ସହିତ ଯୋଗାଯୋଗ ଏବଂ ମଧୁର ସମ୍ପର୍କ ପୂର୍ବପରି ରହିଲା।

ମୁଁ ଅନୁଭବ କଲି, ବରପାଲିରେ ବ୍ଲକ୍ ଖୋଲିଯିବାରୁ ବି.ଡି.ଓ. ଏବଂ ତାଙ୍କର ସହକର୍ମୀମାନେ ସରକାରୀ ପନ୍ଥା ଅନୁସାରେ କାମକଲେ ଏବଂ ଯଥେଷ୍ଟ ଟଙ୍କା ଖର୍ଚ୍ଚ ହେବାପାଇଁ ବରପାଲି ଅଞ୍ଚଳକୁ ମିଳିଯିବାରୁ ବନ୍ଧୁ ସେବାସଂଘର ଆଦର୍ଶରେ କାମ କରିବାର ଆଉ ପ୍ରୟୋଜନୀୟତା ରହିଲା ନାହିଁ। ତେଣୁ ମୋର ମଧ୍ୟ ବରପାଲିରେ ମନ ଲାଗିଲା

ନାହିଁ ଏବଂ ଚାଲିଆସିବା ଦ୍ୱାରା ଭଲହେଲା ବୋଲି ଭାବିଲି। ଯାହାହେଉ ବରପାଲି ସେବାସଂଘ ପ୍ରୋଜେକ୍ଟଟିକୁ କୌଣସିମତେ ଦଶବର୍ଷ କାମକଲା। କାରଣ, ଏହା ଦଶବର୍ଷିଆ ପ୍ରୋଜେକ୍ଟ ଥିଲା। ବରପାଲି ରହଣି ସମୟରେ ମୁଁ ବହୁ ଯୋଗ୍ୟ ଲୋକଙ୍କ ସମ୍ପର୍କରେ ଆସିଛି ଏବଂ ଗାନ୍ଧିଜୀଙ୍କର ଗ୍ରାମ ସଂଗଠନ କାର୍ଯ୍ୟକ୍ରମ ଅନୁଯାୟୀ କିଛି କାମକରି ବହୁତ ଶିକ୍ଷାଲାଭ କରିଛି। ଅଉ ମଧ ଏହାଦ୍ୱାରା ମୋର ବ୍ୟକ୍ତିଗତ ଓ ପାରିବାରିକ ଜୀବନରେ ବହୁ ପରିବର୍ତ୍ତନ ଆଣିପାରିଛି ବୋଲି ଆଜି ମଧ୍ୟ ମୁଁ ନିଜକୁ ଧନ୍ୟ ମନେକରେ।

## ଜିଲ୍ଲା ସାମାଜିକ ସଂପ୍ରସାରଣ ଅଧିକାରୀ (ଡି.ଏସ୍.ଇ.ଓ.)

ଡି.ଏସ୍.ଇ.ଓ. ହିସାବରେ ମୋର କାମଥିଲା ବ୍ଲକ୍‌ମାନଙ୍କରେ ସମ୍ପ୍ରସାରଣ କର୍ମୀ (ଏସ୍.ଇ.ଓ.)ମାନଙ୍କୁ କାର୍ଯ୍ୟରେ ସାହାଯ୍ୟକରି ବ୍ଲକ୍‌ର କାର୍ଯ୍ୟକ୍ରମକୁ ଲୋକପ୍ରିୟ କରାଇବା। ଏସ୍.ଇ.ଓ.ମାନଙ୍କର କାମଥିଲା ଲୋକମାନଙ୍କ ମନରେ ସଚେତନତା ଜାଗ୍ରତକରାଇ ବ୍ଲକ୍‌ରେ ଶିକ୍ଷା, ସ୍ୱାସ୍ଥ୍ୟ, କୃଷି ଇତ୍ୟାଦି କାର୍ଯ୍ୟକ୍ରମକୁ ଲୋକମାନଙ୍କ ମଧ୍ୟରେ ଗ୍ରହଣୀୟ କରାଇବା । କିନ୍ତୁ ମୁଁ ଦେଖିଲି, ବ୍ଲକ୍‌ମାନଙ୍କ ଏସ୍.ଇ.ଓ.ମାନେ ତାଙ୍କ ନିଜ କାର୍ଯ୍ୟଛାଡ଼ି ବାକି ସବୁ କାମ କରୁଥିଲେ। ସେମାନେ ବି.ଡିଓ.ଙ୍କର ଆବଶ୍ୟକତା ଅନୁଯାୟୀ ଯେକୌଣସି କାର୍ଯ୍ୟରେ ନିଯୁକ୍ତ ହେଉଥିଲେ। ସେମାନେ ଥିଲେ ବ୍ଲକ୍‌ର ଇରାଣ୍ଡ ବୟ । ମୁଁ ଶିକ୍ଷାବିଭାଗର ଲୋକ ହୋଇଥିବାରୁ ମୋର ସାହାଯ୍ୟ ସେମାନଙ୍କ ପକ୍ଷରେ ଅର୍ଥହୀନ ଉପଦେଶ ବୋଲି ସେମାନେ ମନେ କରୁଥିଲେ। ମୁଁ ମଝିରେ ମଝିରେ ଏସ୍.ଇ.ଓ.ମାନଙ୍କର ଓରିଏଣ୍ଟେସନ୍ କେମ୍ପ ଏବଂ ସଂକ୍ଷିପ୍ତ ତାଲିମ୍‌ର ବନ୍ଦୋବସ୍ତ କରୁଥିଲି। ତାର ମଧ୍ୟ କିଛି ଅର୍ଥ ରହିଲାନାହିଁ।

ଲୋକମାନଙ୍କର ଦୈନନ୍ଦିନ ଜୀବନରେ ବ୍ଲକ୍‌ର କାର୍ଯ୍ୟକ୍ରମ ଅନୁଯାୟୀ ପରିବର୍ତ୍ତନ ଆଣିବାପାଇଁ ମୁଁ କେତେଗୁଡ଼ିଏ ଅତି ସାଧାରଣ ନନ୍ ପ୍ରୋଜେକ୍ଟେଡ୍ ଅଡିଓ-ଭିଜୁଆଲ୍ ଆଡ୍ ସଂଗ୍ରହ କଲି ଏବଂ ନିଜେ ତିଆରି କଲି। ଶିକ୍ଷାବିଭାଗ ଏବଂ ତତ୍କାଳୀନ ଗୋଷ୍ଠୀ ଉନ୍ନୟନ ବିଭାଗକୁ ଅଡିଓ ଭିଜୁଆଲ୍ ଆଡ୍‌ର ବ୍ୟବହାର ପାଇଁ ବ୍ଲକ୍, ଜିଲ୍ଲା ଏବଂ ରାଜ୍ୟସ୍ତରୀୟ ଲାଇବ୍ରେରୀମାନ ଗଠନ କରିବାପାଇଁ ପ୍ରସ୍ତାବ ଦେଲି। ସେଥିରେ ପୋଷ୍ଟର ଠାରୁ ଛବି, ଚାର୍ଟ୍, ପ୍ଲାକାର୍ଡ୍, ଖଦୀଗ୍ରାଫ, ନ୍ୟୁଜଲେଟର, ୱାଲ୍‌ପେପର, ସ୍ଲାଇଡ୍‌ଠାରୁ ଆରମ୍ଭ କରି ଫିଲ୍ମ ପର୍ଯ୍ୟନ୍ତ ବ୍ୟବହାର କରିବାର ପ୍ରସ୍ତାବ ଦେଇ ଯୋଜନା ଓ ଖର୍ଚ୍ଚ ଅଟକଳ ପଠାଇଲି। କିନ୍ତୁ ଏହି ସବୁ ପ୍ରସ୍ତାବକୁ କେହି ଗୁରୁତ୍ୱ ଦେଲେ ନାହିଁ।

ଥରେ ମୁଁ ସୁନ୍ଦରଗଡ଼ ଜିଲ୍ଲାପାଳଙ୍କୁ ସାକ୍ଷାତ କରିବାରୁ ସେ ଏସ୍.ଇ.ଓ.ମାନେ କିଛି କାମ କରୁନାହାଁନ୍ତି ବୋଲି ମୋତେ କହିଲେ। ମୁଁ ତାଙ୍କୁ କହିଲି ଯେ, ଆପଣମାନେ ତାଙ୍କୁ ତାଙ୍କର ନ୍ୟାଯ୍ୟ କାମ କରିବାକୁ ଦେଉନାହାଁନ୍ତି। ସେମାନଙ୍କୁ ଜିପ୍‌ଗାଡ଼ିର ଷ୍ଟେପ୍‌ନି ବା ତରକାରୀରେ ଭୃସୁଙ୍ଗାପତ୍ର ଭଳିଆ ବ୍ୟବହାର କରୁଛନ୍ତି। ସେ ଆଶ୍ଚର୍ଯ୍ୟହୋଇ ମୋତେ

ରହିଁବାରୁ ମୁଁ କହିଲି, "ତାଙ୍କୁ ସେମାନଙ୍କର ନ୍ୟାଯ୍ୟ କାମରେ ନଲଗାଇ ଆପଣଙ୍କ ମନଇଛା ସେମାନଙ୍କୁ କ୍ଷୀରଗୁଣ୍ଡ ବାଣ୍ଟିବାଠାରୁ ଆରମ୍ଭକରି ଦରକାର ଅନୁସାରେ ସବୁ କାମରେ ଲଗାଉଛନ୍ତି। କିନ୍ତୁ କୌଣସି କାମ ସଫଳହେଲେ ସେମାନଙ୍କର ପ୍ରଶଂସା ନାହିଁ। ଭୁସୁଙ୍ଗାପତ୍ର ଭଳିଆ ସେମାନଙ୍କୁ କାଢ଼ି ତରକାରୀ ଖିଆଯାଉଛି।" ମୁଁ ତାଙ୍କୁ ଏସ୍.ଇ.ଓ.ମାନଙ୍କର ନ୍ୟାଯ୍ୟ କାର୍ଯ୍ୟ ସମ୍ବନ୍ଧରେ ବୁଝାଇଲି। ସେ ମୋ କଥାଟାକୁ ପସନ୍ଦକଲେ । କିନ୍ତୁ ମୁଁ ବା ଏସ୍.ଇ.ଓ.ମାନେ କାର୍ଯ୍ୟକ୍ଷେତ୍ରରେ ସ୍ୱାଧୀନତା ପାଇଲୁନାହିଁ।

ମୁଁ ଡି.ଏସ୍.ଇ.ଓ. ଭାବରେ ସମ୍ବଲପୁର, ସୁନ୍ଦରଗଡ଼ ଦୁଇଟି ଜିଲ୍ଲାରେ ଏବଂ ଗଞ୍ଜାମ ଓ ଫୁଲବାଣୀର ବାଲିଗୁଡ଼ା ଅଞ୍ଚଳରେ ଏବଂ ବାଲେଶ୍ୱର ଜିଲ୍ଲାରେ ୪/୬ ବର୍ଷ କାମକରିଛି। ମୋ ପାରୁପର୍ଯ୍ୟନ୍ତ ଚେଷ୍ଟାକରିଛି ଏସ୍.ଇ.ଓ.ମାନଙ୍କୁ ତାଙ୍କ ନ୍ୟାଯ୍ୟକାର୍ଯ୍ୟରେ ଜଡ଼ିତ କରିବାପାଇଁ କିନ୍ତୁ ହତାଶ ଓ ବିଫଳ ହେଲି। ଗଞ୍ଜାମ ଏବଂ ବାଲେଶ୍ୱର ଜିଲ୍ଲାରେ ବହୁ ପରିମାଣରେ ଦୁଗ୍ଧଗୁଣ୍ଡ ଷ୍ଟୋରକରିବା ଏବଂ ବାଣ୍ଟିବା ଭାର ଡି.ଏସ୍.ଇ.ଓ. ହିସାବରେ ମୋ ଉପରେ ଦିଆଯାଇଥିଲା। ଏହା ମୋ ପକ୍ଷରେ ଅତି କଷ୍ଟକର ଓ ମର୍ମନ୍ତୁଦ ବ୍ୟାପାର ଥିଲା।

ବାଲେଶ୍ୱର ଜିଲ୍ଲାରେ ମୋର ପୂର୍ବବର୍ତ୍ତୀ ଡି.ଏସ୍.ଇ.ଓ.ଙ୍କ ସମୟରେ ଗୋଦାମ କଣ୍ଟ୍ରାକ୍ଟର ଏବଂ ଜଣେ ସରପଞ୍ଚ ଗୋଟିଏ ଟ୍ରକ୍ ଦୁଗ୍ଧଗୁଣ୍ଡ (୧୫,୫୦୦ପାଉଣ୍ଡ) କଲିକତା ବଜାରରେ ବିକ୍ରି କରି ଦେଇଥିଲେ। ମୁଁ ପୂର୍ବବର୍ତ୍ତୀ record verify କରୁକରୁ ଏକଥା ଧରାପଡ଼ିଥିଲା। ମୁଁ ଏକଥା ଜିଲ୍ଲାପାଳଙ୍କ ନୋଟିସ୍‌କୁ ଆଣିବାରୁ ସେ କହିଲେ, ଯେ ହଁ ଏପରି ଉରିଆଡ଼େ ହେଉଛି । ଏଗୁଡ଼ିକ ଧରିକରି କ'ଣ ଲାଭ ? ତାପରେ ମୁଁ ବିଶେଷ ଜିଦ୍‌କରିବାରୁ ସେ ଗୋଟିଏ Departmental Enquiry କରିବାପାଇଁ କହିଲେ। ମୁଁ ଗୋଟିଏ ପୂରା ଅନୁସନ୍ଧାନ କରି ତାଙ୍କୁ ରିପୋର୍ଟ ଦେବି ଏବଂ ତାହା ସରକାରକୁ ପଠାଯିବ କହି ବ୍ଲକ୍ ଏବଂ ପଞ୍ଚାୟତସ୍ତରରେ ପୂରା ଅନୁସନ୍ଧାନ କଲି। ଯାଭିତରେ ସଂପୃକ୍ତ ସରପଞ୍ଚ ଆସି ସେ କ୍ଷୀରଗୁଣ୍ଡ ସବୁ ନେଇ ପଞ୍ଚାୟତରେ ବାଣ୍ଟି ଦେଇଛନ୍ତି ବୋଲି କହିଲେ। କିନ୍ତୁ ଅନୁସନ୍ଧାନରେ କୌଣସି କ୍ଷୀରନେବା ବା ବାଣ୍ଟିବା ପ୍ରମାଣ ମିଳିଲା ନାହିଁ ଏବଂ ସେ କାହା ଆଦେଶରେ କ୍ଷୀରଗୁଣ୍ଡ ନେଇଥିଲେ ତାହା ମଧ୍ୟ ଜଣାପଡ଼ିଲା ନାହିଁ। ମୁଁ ପୂରା ଅନୁସନ୍ଧାନ ପରେ କଲେକ୍ଟରଙ୍କୁ ମୋ ରିପୋର୍ଟଟି ଦେଇ ସେ ରିପୋର୍ଟଟି ସରକାରଙ୍କୁ ପଠାଇବାକୁ ଜିଦ୍‌କଲି। ସେ ପ୍ରଥମେ ଅମଙ୍ଗ ହେଉଥିଲେ ଓ ପରେ ରାଜିହେଲେ। କିନ୍ତୁ ରିପୋର୍ଟଟିକୁ ମାଡ଼ିବସିଲେ ରାଜନୈତିକ ଚାପରେ । ଯାଭିତରେ ଭିଜିଲାନ୍ସ ଡିପାର୍ଟମେଣ୍ଟର ଇନିସପେକ୍ଟର ମୋ ପାଖକୁ ଆସି କେସର ଭାର ସେ ନେବାପାଇଁ ପ୍ରସ୍ତାବ ଦେଇଥିଲେ। ମୁଁ ତାଙ୍କୁ ମନାକରି ଦେଉଥିଲି। ସେ କିନ୍ତୁ ସରକାରଙ୍କୁ ରିପୋର୍ଟ କରି ଦେଇଥିଲେ। ଏହା ୧୯୬୨ ମସିହାରେ କଥା। ୧୯୬୭ ମସିହାରେ ଭିଜିଲାନ୍ସ ବିଭାଗ ମୋ ପାଖକୁ ଆସି

ମୋର ରିପୋର୍ଟର ଗୋଟିଏ କପି ମାଗିଲେ। ମୋ ପାଖରେ କପିନାହିଁ, ବାଲେଶ୍ୱରେ ଡି.ଏସ୍.ଇ.ଓ. ଅଫିସ୍ ଏବଂ କଲେକ୍ଟରଙ୍କ ଅଫିସ୍‌ରେ ମିଳିବ ବୋଲି କହିଲି। ହଠାତ୍ ଦିନେ ଭୁବନେଶ୍ୱରେ ଭିଜିଲାନ୍ସ ବିଭାଗର ଜଣେ ଡି.ଏସ୍.ପି. ସାଙ୍ଗରେ ଦେଖା ହୋଇଗଲା, ଯେ କି ପୂର୍ବରୁ ବାଲେଶ୍ୱରରେ ଇନିସ୍‌ପେକ୍ଟର ଥିଲେ । ସେ ମୋତେ କହିଲେ ଯେ କେଶ୍‌ଟି ଗଭର୍ଣ୍ଣମେଣ୍ଟରେ ଅଛି। କୋର୍ଟକୁ ଗଲାଣି ଏବଂ ଯାଭିତରେ ସଂପୃକ୍ତ ସରପଞ୍ଚକୁ ତାଙ୍କ ଗାଁ ଲୋକେ ହତ୍ୟା କରିଦେଲେ । ତାପରେ କେଶ୍ ସମ୍ବନ୍ଧରେ ବାଲେଶ୍ୱର ସବ୍-ଜଜ୍ କୋର୍ଟକୁ ମୁଁ ଯାଇଥିଲି । କିନ୍ତୁ କିଛି ହେଲାନାହିଁ । ଏହାର କାରଣ ହେଲା ଭିଜିଲାନ୍ସ ଡିପାର୍ଟମେଣ୍ଟର ନିଷ୍କ୍ରିୟତା ଏବଂ ମୋର ପୂର୍ବବର୍ତ୍ତୀ ବାଲେଶ୍ୱରରେ ଥିବା ଅଫିସରଙ୍କର ସାକ୍ଷ୍ୟପ୍ରଦାନରେ ବୋକାମି ଏବଂ ଅପରାଗତା ।

ମୁଁ ଗଞ୍ଜାମରେ ଡି.ଏସ୍.ଇ.ଓ. ଥିଲାବେଳେ ଏଇ କ୍ଷୀରଗୁଣ୍ଡ ବଣ୍ଟନକୁ ନେଇ ନାନା ବିଭ୍ରାଟ ହେଉଥିଲା। ଷ୍ଟୋରରେ ରଖାଯାଇଥିବା ବହୁତ ପ୍ୟାକେଟ୍ କ୍ଷୀରଗୁଣ୍ଡ ନଷ୍ଟହୋଇ ଯାଇଥିଲା। ମୁଁ ଅନିଚ୍ଛାସତ୍ତ୍ୱେ କ୍ଷୀରଗୁଣ୍ଡର ଚାର୍ଜ ନେଲି। କିନ୍ତୁ ସେଥିରୁ ରକ୍ଷାପାଇବା ପାଇଁ ବାଧ୍ୟହୋଇ National Fundamental Educational Training Centreରେ ପାଞ୍ଚମାସର ତାଲିମ ପାଇଁ ଦିଲ୍ଲୀ ଚାଲିଗଲି। Development Block ମାନଙ୍କରେ Social Education କାର୍ଯ୍ୟକ୍ରମକୁ ଦିଗ୍‌ଦର୍ଶନ ଦେବାପାଇଁ ଟ୍ରେନିଂଟି ଉଦ୍ଦିଷ୍ଟ ଥିଲା। ଆମ ଦେଶରେ Social Education Programmeର ସୃଷ୍ଟିକର୍ତ୍ତା ହେଉଛନ୍ତି ନାଗପୁରର ଅଧିବାସୀ ଆତ୍ମାରାମ ଦେଶପାଣ୍ଡେ । ସେ ଜଣେ ସୁପଣ୍ଡିତ ଓ ଆଦର୍ଶ ଦେଶସେବୀ ଥିଲେ । ସେ ପ୍ରଥମେ ଜଜ୍ ହିସାବରେ କାମ କରିଥିଲେ । ତାଙ୍କର ସମାଜସେବା ଦେଖି ଭାରତ ସରକାର ତାଙ୍କୁ ଗୋଷ୍ଠୀଉନ୍ନୟନ କାର୍ଯ୍ୟକ୍ରମରେ ପରାମର୍ଶଦାତା କରି ନେଇ ଯାଇଥିଲେ। ଫ୍ରେଣ୍ଡସ୍ କଲୋନିରେ ସେଇ ତାଲିମ କେନ୍ଦ୍ରଟି ଥିଲା। ବିଭିନ୍ନ ପ୍ରଦେଶରୁ ଆମେ ମୋଟ ୧୧ଜଣ ଟ୍ରେନିଂ ଯାଇଥିଲୁ। ଆମକୁ ପାଠପଢ଼ାଇବା ପାଇଁ ଥିଲେ ୧୧ଜଣ ଶିକ୍ଷକ। ଆମେରିକା ସରକାର ସେ ଟ୍ରେନିଂ ସେଣ୍ଟରର ସମସ୍ତ ଖର୍ଚ୍ଚ ବହନ କରିଥିଲେ। ମୋ ବିଚାରରେ ସେ ଟ୍ରେନିଂ ସେଣ୍ଟରର ଶିକ୍ଷାଦାନ ପଦ୍ଧତି ଅତି ନିମ୍ନସ୍ତରର ଥିଲା ଏବଂ ସେକଥା ମଧ୍ୟ ମୁଁ ସେଠାରେ ଶିକ୍ଷକମାନଙ୍କୁ କହିଥିଲି। American Technical Cooperationର ପ୍ରଧାନ ବ୍ୟକ୍ତି ସେହି Friend's Colonyରେ ରହୁଥିଲେ ଏବଂ ସମୟ ସମୟରେ ଆମକୁ ପାଠ ପଢ଼ାଇଥିଲେ । କିନ୍ତୁ ତାହା Syllabus ବହିର୍ଭୂତ ଥିବାରୁ ଆମକୁ ବହୁ ପୁସ୍ତକ ପଢ଼ି ତାଙ୍କ ପାଖରେ ପରୀକ୍ଷା ଦେବାକୁ ପଡ଼ିବାରୁ, ଆମେ ତାଙ୍କୁ କହିଲୁ ଯେ ଆମର ନିୟମିତ ପାଠରେ ପରୀକ୍ଷା ନିକଟେଇ ଆସିଲାଣି । ଏଣୁ, ଆମକୁ ପରୀକ୍ଷାପାଇଁ ପ୍ରସ୍ତୁତ ହେବାକୁ ପଡୁଛି । ଆମର term paper ପ୍ରସ୍ତୁତିପାଇଁ ବହୁତ ସମୟ ବ୍ୟୟ କରିବାକୁ ପଡୁଛି। ଆପଣ ଆମର ପରୀକ୍ଷା ନନେଲେ ଭଲହୁଅନ୍ତା। ସେ

ମହାଶୟ କହିଲେ, "You officers! How insincere! If you won't work who will work, your Jawaharlal will work, your peon will work". ମୁଁ ଉଠି ଏହାର ପ୍ରତିବାଦ କଲି। ମୁଁ କହିଲି, " We are all sicncere people, we take exception to your remark." ଭଦ୍ରଲୋକ ଚୁପ୍ ହୋଇଗଲେ। କିନ୍ତୁ ସେ ଯାହା କହିଲେ କଥାଟା ଠିକ୍ । ମୁଁ କେବଳ ଆମର ପତିଆରା ପାଇଁ ଗାଲୁ ଭୁଗୁଡ଼ି ମାରିଦେଲି ।

ଏହି ତାଲିମ ନେବା ସମୟରେ ମୋର ଜଣେ ସହପାଠୀ ବିହାର ଅଫିସର କଥା ପଡ୍ରୁପଡ୍ରୁ ଖୁବ୍ ଜୋରରେ କହିଲେ, You must all learn to read and write Hindi, We Hindi speaking people rule all over India." ଯୁକ୍ତିକଲାରୁ ସେ କହିଲେ, "English speaking people were ruling over you, now it is our turn." ଯାହାହେଉ ସେ ଟ୍ରେନିଂସାରି ଫେରିଲାବେଳକୁ ବ୍ରହ୍ମପୁରରୁ ମୋର ଢେଙ୍କାନାଳକୁ ବଦଳି ହୋଇଯାଇଥିଲା। ମୁଁ ବହୁତ ଅସୁବିଧାରେ ପଡ଼ିଲି । କାରଣ ସେତେବେଳକୁ ମାର୍ଚ୍ଚମାସ, ପିଲାମାନଙ୍କର ପରୀକ୍ଷା । ମୋ ବଦଳରେ ସେଠାକୁ ଯାଇଥିବା ଜଣେ ମହିଳା ଅଫିସର ମୋର ପରିବାରକୁ ସରକାରୀଘରୁ ବାହାର କରିବା ପାଇଁ ଧମକ ଦେଉଥିଲେ । ମୁଁ ରହୁଥିଲି office cum residenceରେ। ଦିଲ୍ଲୀରୁ ଫେରି ଏ ଅବସ୍ଥା ଦେଖି ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକଲି। ସେ ଅବସ୍ଥା କଥା ଶୁଣି ଦୁଃଖ କଲେ ମଧ୍ୟ ବଦଳି କାଏମ ରଖିଲେ । କିନ୍ତୁ ସରକାରଙ୍କଠାରୁ ଆଦେଶ କରାଇଦେଲେ ଯେ ମୋର ପରିବାର ସେଇଠି ମେ' ମାସ ପର୍ଯ୍ୟନ୍ତ ରହିବେ। ତାପରେ କେତେଦିନ ଛୁଟିରେ ରହି ଡି.ଏସ୍.ଇ.ଓ. ଭାବରେ ବାଲେଶ୍ୱର ଗଲି।

## ପୃଥ୍ୱୀରାଜ ହାଇସ୍କୁଲ

ବାଲେଶ୍ୱରରୁ ମୁଁ ପୁଣି ଶିକ୍ଷାବିଭାଗକୁ ଆସି ବଲାଙ୍ଗୀର ପୃଥ୍ୱୀରାଜ ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବେ ଯୋଗଦେଲି। ମୁଁ ସେ ହାଇସ୍କୁଲର ଯୋଗଦେବା ପୂର୍ବରୁ ଦୁଇବର୍ଷକାଳ ବରିଷ୍ଠ ସହକାରୀ ଶିକ୍ଷକ ପ୍ରଧାନଶିକ୍ଷକ ଦାୟିତ୍ୱରେ ଥିଲେ। ମୁଁ ଦେଖିଲି ଯେ ଶିକ୍ଷକମାନେ ବଡ଼ ନିଷ୍ଠାପର । ସେଥିମଧ୍ୟରୁ ଅଧିକାଂଶ ଅଭିଜ୍ଞ ଏବଂ ସେମାନେ ପଢ଼ାଉଥିବା ବିଷୟ ଉପରେ ସେମାନଙ୍କର ଦକ୍ଷତା ଥିଲା। କିନ୍ତୁ ଅନେକ ଶିକ୍ଷକ ପ୍ରାଇଭେଟ ଟିଉସନରେ ବହୁସମୟ ବ୍ୟୟ କରୁଥିଲେ। ସ୍କୁଲଟି ଗତାନୁଗତିକ ଭାବରେ ଚାଲୁଥିଲା। ଶୃଙ୍ଖଳାର ଅଭାବ ଥିଲା। ସ୍କୁଲରେ ହେଉଥିବା ବୋର୍ଡ଼ପରୀକ୍ଷା ସମୟରେ ପରୀକ୍ଷାର୍ଥୀମାନେ ଅସାଧୁ ଉପାୟ ଅବଲମ୍ୱନ କରି ପାରୁଥିଲେ। ମୁଁ ଅସାଧୁ ଉପାୟ ବନ୍ଦକରିବା ପାଇଁ ଦୃଢ଼ ପଦକ୍ଷେପ ନେଲି। ସେଥିରେ ମୋତେ ବାହାରର କେତେକ ଲୋକ ଧମକଚମକ ଦେଲେ ମଧ୍ୟ ଶୁଣିଲି ନାହିଁ। ଯଥା ସମୟରେ ପ୍ରାର୍ଥନା ଏବଂ କ୍ଲାସ ହେବା ପ୍ରତି ଯଥେଷ୍ଟ ଦୃଷ୍ଟି ଦିଆଗଲା।

ସ୍କୁଲର  ପରିଷ୍କାର, ପରିଚ୍ଛନ୍ନତା, ପାଇଖାନା, ମୂତ୍ରଖାନାର ବନ୍ଦୋବସ୍ତ କରି ଦିଆଗଲା ଏବଂ ଛାତ୍ରାବାସରେ ପିଇବାପାଣି ପାଇଁ ପାଇପ୍ ସଂଯୋଗ କରାଯାଇଥିଲା । ଗଣତନ୍ତ୍ର ଦିବସରେ ଆମସ୍କୁଲ ପିଲାମାନେ  ରିପବ୍ଲିକ୍‌ଡେ ପରେଡ୍‌ରେ ଲାଗଲାଗ ଚାରିବର୍ଷ ଉତ୍ତମ ମାର୍ଚ୍ଚିଂପାଇଁ ପୁରସ୍କାର ପାଇଲେ । ଏହା ସମ୍ଭବ ହୋଇପାରିଲା ମୁଁ ନିଜେ ଏବଂ କେତେକ ଶିକ୍ଷକ ପିଲାମାନଙ୍କ ସାଙ୍ଗରେ ମାର୍ଚ୍ଚିଂକୁ ଯାଇଥିଲୁ ।

କେତେବର୍ଷ ହେଲା ସ୍କୁଲରେ ପୁରସ୍କାର ବିତରଣୀ ଉତ୍ସବ ହେଉନଥିଲା । ସ୍କୁଲ ମେଗାଜିନ୍‌ଟି ମଧ୍ୟ ବାହାରୁ ନଥିଲା । ସ୍କୁଲ ମେଗାଜିନ୍‌ଟି ବାହାରିଲା ଏବଂ ପୁରସ୍କାର ବିତରଣୀ ଉତ୍ସବ ମଧ୍ୟ କରାଗଲା । ପ୍ରଥମବର୍ଷ ପୁରସ୍କାର ବିତରଣୀ ଉତ୍ସବରେ ଛାତ୍ରମାନଙ୍କର ଅଭିନୟ, ଆବୃତ୍ତି, ନାଚ, ଗୀତ ଆଦି ଅତି ଚମ୍ତ୍କାର ହୋଇଥିଲା । ସେ ଗୁଡ଼ିକରୁ ଅଧିକାଂଶ ମୋର ଲେଖାଥିଲା । ମୁଁ ପ୍ରତ୍ୟକ୍ଷ ଭାବରେ ପିଲାମାନଙ୍କୁ ଟ୍ରେନିଂ ଦେଇଥିଲି । ପୁରସ୍କାର ବିତରଣୀ ଉତ୍ସବଟି ଠିକ୍ ସମୟରେ ଆରମ୍ଭ ହୋଇ ଯଥାସମୟରେ ମଧ୍ୟ ଶେଷ ହୋଇଥିଲା । ପିଲାମାନଙ୍କର ଦାଣ୍ଡିଆକାଠି ନାଚ ଏବଂ ମୋଦ୍ୱାରା ଲେଖାଯାଇଥିବା ଏକାଙ୍କିକାକୁ ଲୋକେ ବହୁତ ପସନ୍ଦ କରିଥିଲେ । ସାଭାପତି ହିସାବରେ ନିମନ୍ତ୍ରିତ କଲେକ୍ଟର କୁକେଜା ସାହେବ ପୁରସ୍କାର ବିତରଣ ଉତ୍ସବ ଶେଷରେ ବିଦାୟ ନେବାବେଳେ ମୋତେ କହିଲେ, "Mr Mishra, this is the best function I have ever seen in my life".

ପୃଥ୍ୱୀରାଜ ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବରେ ମୁଁ ଥିଲି Dist Atheletic Associationର Secretary. କିନ୍ତୁ ସ୍କୁଲପଡ଼ିଆଟି ଥିଲା ପାଖଆଖ ଅଞ୍ଚଳର କେତେ ଲୋକଙ୍କର ଧାନ, ବିରି, ମୁଗ, ଆଦି ଅମଳ କରିବାର ଖଳା । ଚତୁର୍ଦ୍ଦିଗରୁ ଲୋକେ ତାହାକୁ ଅନଧିକାର ଦଖଲ କରୁଥିଲେ । ମୁଁ ଏ ସମ୍ବନ୍ଧରେ ଜିଲ୍ଲାପାଳଙ୍କ ଦୃଷ୍ଟି ଆକର୍ଷଣ କଲି । ମଝିରେ ଛଅମାସ Inspector Chargeରେ ଥିବାରୁ ସମୟ ସମୟରେ ପରିଦର୍ଶନରେ ଯାଇ ବ୍ଲକ୍ ଅଧିକାରୀମାନଙ୍କୁ ଭେଟିଲି । ମୋର ଅଭିପ୍ରାୟ ଥିଲା ସମସ୍ତଙ୍କୁ ଅନୁରୋଧ କରି ଚାନ୍ଦାଉଠାଇ ସ୍କୁଲ ଖେଳପଡ଼ିଆର ଚତୁର୍ପାର୍ଶ୍ୱରେ ପକ୍କାକାନ୍ଥ ଦେବାପାଇଁ । ଯାହାହେଉ, ଜିଲ୍ଲାପାଳ ଥରେ District Development Committee meetingକୁ ଡାକିଲେ ଏବଂ ସେଠାରେ ସମସ୍ତଙ୍କୁ ସମୁଦାୟ ଜିଲ୍ଲାର ସମ୍ପତ୍ତି ସ୍କୁଲପଡ଼ିଆଟିର ସୁରକ୍ଷାପାଇଁ ନିବେଦନ ଜଣାଇଲି । ତାପରେ ଜିଲ୍ଲାପାଳ ସେ ଭାର ନେଲେ । ଏ.ଡି.ଏମ୍.ଙ୍କ ଦ୍ୱାରା ସେ କାମ ପରିଚାଳିତ ହୋଇ ପାଚେରିକାମ ପୂର୍ଣ୍ଣ କରାଗଲା ।

ବଲାଙ୍ଗୀର ଜିଲ୍ଲାରେ ଗୋଟିଏ ଯୁବଉତ୍ସବ କରାଇଲି । ସେଥିରେ ଏଥଲେଟିକ, ସଙ୍ଗୀତ, ଡ୍ରାମା ଇତ୍ୟାଦିର ପ୍ରତିଯୋଗିତାମାନ ଜିଲ୍ଲାର ସବୁ ଉଚ୍ଚମାଧ୍ୟମିକ ସ୍କୁଲର ପିଲାମାନଙ୍କ ମଧ୍ୟରେ କରାଯାଇଥିଲା । ସେଥିରେ ମୋର ସହକାରୀ ଶିକ୍ଷକ ଏବଂ ବାହାରର ଦୁଇ ତିନିଜଣ ଶିକ୍ଷକ ମୋତେ ସାହାଯ୍ୟ କରିଥିଲେ । ଆନନ୍ଦର କଥା, ପୃଥ୍ୱୀରାଜ ହାଇସ୍କୁଲର

ଛାତ୍ରମାନେ ଅଧିକାଂଶ ପୁରସ୍କାର ପାଇଥିଲେ। ଏପରି ଗୋଟିଏ ମହୋତ୍ସବ କେବେ ହୋଇ ନଥିଲା।

ସ୍କୁଲର ସୁବର୍ଣ୍ଣ ଜୟନ୍ତୀ ବହୁ ଆଡ଼ମ୍ବର ସହ କରିବାପାଇଁ ମୁଁ ବଲାଙ୍ଗୀର ସହରର ଶିକ୍ଷିତ ସମ୍ପ୍ରଦାୟର ସାହାଯ୍ୟ ଲୋଡ଼ିଥିଲି, କିନ୍ତୁ ସେମାନଙ୍କ ଭିତରେ ସେପରି କିଛି ଉତ୍ସାହ ବା ପ୍ରେରଣାର ନଥିଲା। ଏଣୁ ଶିକ୍ଷକମାନେ ଏଥିରୁ ନିବୃତ୍ତ ହେବାପାଇଁ ମୋତେ ପରାମର୍ଶ ଦେଇଥିଲେ। ଯାହାହେଉ ଉତ୍ସବଟି ଯଥାବିଧି ପାଳିତ ହେଲା। ସ୍କୁଲର ଇତିହାସ ଏବଂ କୃତିତ୍ୱକୁ ଆଧାରକରି ଗୋଟିଏ ସ୍ମରଣିକା ପ୍ରକାଶ ପାଇଥିଲା। ଏଥିରେ ବଲାଙ୍ଗୀର ଜିଲ୍ଲାର କେତେକ ଭଦ୍ରଲୋକ ତଥା ପୁରାତନ ଛାତ୍ରଙ୍କ ଲେଖା ପ୍ରକାଶପାଇ ସ୍ମରଣିକାର ଗୁରୁତ୍ୱ ବର୍ଦ୍ଧନ କରିଥିଲା। ଏଇ ସ୍ମରଣିକାରେ ବୋର୍ଡ଼ ପରୀକ୍ଷାରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିବା ଛାତ୍ରମାନଙ୍କର, ସ୍କୁଲର ପ୍ରଧାନଶିକ୍ଷକ ମାନଙ୍କର ଏବଂ ବଲାଙ୍ଗୀର ରାଜବଂଶର କେତେକ ରାଜାଙ୍କର ଫଟୋ ବାହାରିଥିଲା। ଏତଦ୍‌ବ୍ୟତୀତ ବାଲୁକେଶ୍ୱର ମିଶ୍ର ଏବଂ ଆଉ ଜଣେ ଏମ୍.ଇ. ସ୍କୁଲର ପ୍ରଧାନଶିକ୍ଷକ ତଥା ସେ ସ୍କୁଲରୁ ମେଟ୍ରିକ ପାସ୍ କରିଥିବା ସମସ୍ତ ଛାତ୍ର ଓ ସମସ୍ତ ଶିକ୍ଷକଙ୍କ ନାମ ଦିଆଯାଇଥିଲା।

୧୯୧୬ ମସିହାରେ ସ୍କୁଲର ଛାତ୍ରମାନେ ପ୍ରଥମେ ମେଟ୍ରିକୁଲେସନ ପରୀକ୍ଷା ଦେଇଥିଲେ। ସେଇ ମସିହାଠାରୁ ବହୁବର୍ଷ ଧରି ଛାତ୍ରମାନେ ଚୁଡ଼ା ଗୁଡ଼ଳ ସାଙ୍ଗରେ ଧରି ବନ୍ୟଜନ୍ତୁ ସଂକୁଳ ପାହାଡ଼ ଜଙ୍ଗଲ ପାରିହୋଇ କଟକ ଆସି ପ୍ୟାରୀମୋହନ ଏକାଡେମୀ ସେଣ୍ଟରରେ ପରୀକ୍ଷା ଦେଇଥିଲେ। ଆଜିକାଲି ସ୍କୁଲଠାରୁ ପରୀକ୍ଷାକେନ୍ଦ୍ର ପାଞ୍ଚ କି.ମି. ଦୂର ହୋଇଗଲେ ଛାତ୍ର ଓ ଅଭିଭାବକ ମାନଙ୍କର ଘୋର ଆପତ୍ତି ହେଉଛି। ଏହା ବଡ଼ ଦୁଃଖର କଥା।

ମୋର ରହୁଥିବା କ୍ୱାଟର୍ସରେ ଉଠାପାଇଖାନା ଥିଲା । କିନ୍ତୁ ମୁଁ ବରପାଲି ଲେଟ୍ରିନ ବସାଇବା ଫଳରେ ତାକୁ ଆମ ପରିବାର ବ୍ୟବହାର କଲେ। ଏଠାରେ ଥିବା ସମୟରେ ପିଲାମାନଙ୍କ ସାମୟିକ କ୍ଲାସ ପରୀକ୍ଷା, ପିଲାଙ୍କର କ୍ୟୁମିଲେଟିଭ ରେକର୍ଡ଼ ରଖିବା ଏବଂ ଶିକ୍ଷାଦାନ ପାଇଁ ଯୋଜନା କରିବାରେ କେତେକ ପରିବର୍ତ୍ତନ ଆଣିବା ପାଇଁ ଚେଷ୍ଟାକଲି । କିନ୍ତୁ ଶିକ୍ଷକମାନଙ୍କର ଆଗ୍ରହ ଓ ଉତ୍ସାହ ଅଭାବରୁ ବୁଝିଗଲି ଯେ ଆମ ସମାଜରେ ଶିକ୍ଷକମାନେ ବହୁତ ରକ୍ଷଣଶୀଳ ଏବଂ ସେମାନେ ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ହୋଇ ରହିଛନ୍ତି।

ପିଲାମାନଙ୍କର ସଞ୍ଚୟ ମନୋବୃତ୍ତି ବଢ଼ାଇବା ପାଇଁ ତାଙ୍କ ନାମରେ ପୋଷ୍ଟଅଫିସ୍‌ରେ ପାସ୍‌ବୁକ୍ କରାଇଲି । ଏଥିରୁ କିଛିଟା ସଫଳତା ମିଳିଥିଲା। ବର୍ଷରେ ଦୁଇଥର ସ୍କୁଲଘର ଏବଂ ସ୍କୁଲର ସମୁଦାୟ ପରିସରକୁ ନିଜେ ତଥା କେତେକ ଆଗ୍ରହୀ ଶିକ୍ଷକ ଓ ଛାତ୍ର ମିଶି ପରିଷ୍କାର ପରିଚ୍ଛନ୍ନ କରୁଥିଲୁ। ପିଲାମାନେ ଛୋଟଛୋଟ ଦଳରେ

ବିଭକ୍ତହୋଇ ଶ୍ରେଣୀଗୃହ ସଫାକରିବା, ବ୍ଲାକ୍‌ବୋର୍ଡ଼ରେ କଳାରଙ୍ଗ ଦେବା ଇତ୍ୟାଦି କାମ କରୁଥିଲେ। କିରାଣୀ ଓ ପିଅନମାନେ ଦୁଇଟି ଅଫିସ୍‌ଗୃହକୁ ସଫାସୁତୁରା କରି କାଗଜପତ୍ର ସଜଡ଼ାସଜଡ଼ି କରି ରଖୁଥିଲେ। ଅନ୍ୟମାନେ ସ୍କୁଲହତା ସଫା କରୁଥିଲେ । ମୂତ୍ରଖାନା, ପାଇଖାନା ଓ ଡ୍ରେନ୍ ସଫା କରୁଥିଲେ। ମୁଁ ଏହିଦଳର ମୁଖ୍ୟ ହିସାବରେ କାମ କରୁଥିଲି।

ସ୍କୁଲରେ ହରିଜନ ପିଲା ପଢୁନଥିବା ଦେଖି ମୁଁ ପ୍ରତିବର୍ଷ ୩/୪ ଟି ହରିଜନ ପିଲାଙ୍କୁ ନାମ ଲେଖାଇବା ପାଇଁ ବିଶେଷ ସୁବିଧା ପ୍ରଦାନ କରୁଥିଲି । ଏଥିପାଇଁ କେତେକ ଆପତ୍ତି ଉଠାଇଥିଲେ । ହରିଜନ ପିଲାଙ୍କ ବୃତ୍ତିଟଙ୍କାର ମଞ୍ଜୁରି ଆସିଲେ ମୁଁ ସେମାନଙ୍କୁ ଟଙ୍କା ଦେଲାବେଳେ ଥରେ କହିଲି, ଏ ଟଙ୍କାକୁ ପାଶବୁକରେ ରଖିବା ପାଇଁ । କାରଣ, ବହୁତ ଗୁଡ଼ିଏ ଟଙ୍କା ଏକାଥରେ ଆସୁଥିଲା। ଜଣେ ଦୁଇଜଣ ଶିକ୍ଷକଙ୍କୁ ଏ ବିଷୟରେ ପରାମର୍ଶ ମାଗିବାରୁ ସେମାନେ ଏଥିରୁ ନିବୃତ୍ତ ହେବାପାଇଁ ପରାମର୍ଶ ଦେଲେ। ଯାହାହେଉ ପିଲାମାନଙ୍କର ବାପାମାନେ ଆସି ମୋ ପାଖରେ ପହଞ୍ଚିଲେ। ପାଶବୁକ୍ କରିବା କଥା ମୁଁ, ତାଙ୍କୁ ଯେତେ ବୁଝାଇଲି ଏବଂ ଦରକାରବେଳେ ପିଲା ପାଶବୁକ୍‌ରୁ ଟଙ୍କାକାଢ଼ି ପୋଷାକ, ଖାତା, ବହିପତ୍ର କରିବାପାଇଁ ଉପଦେଶ ଦେଲି, ହେଲେ ସେମାନେ ଶୁଣିଲେ ନାହିଁ। ସରକାର ଆମକୁ ଟଙ୍କା ଦେଉଛନ୍ତି, ଆମଟଙ୍କା ଆମକୁ ଦେଇଦିଅନ୍ତୁ ବୋଲି କହିଲେ । ବାଧ୍ୟହୋଇ ପିଲାଙ୍କ ଦସ୍ତଖତ ନେଇ ବାପାମାନଙ୍କ ସମ୍ମୁଖରେ ପିଲାମାନଙ୍କୁ ଟଙ୍କା ବାଣ୍ଟିଦେଲି।

## ଟ୍ରେନିଂ ସ୍କୁଲ

୧୯୬୭ ମସିହାରେ କଟକ Secondary Trg. Schoolରେ ପ୍ରଧାନଶିକ୍ଷକ ଭାବରେ ଯୋଗଦେଲି। ଏହା ଓଡ଼ିଶାର ସର୍ବପୁରାତନ ଶିକ୍ଷକ ତାଲିମକେନ୍ଦ୍ର। ଆଗକାଳରେ ଏହାକୁ ନର୍ମାଲ ଟ୍ରେନିଂସ୍କୁଲ କୁହାଯାଉଥିଲା । ଏଥିରେ ଭର୍ଣ୍ଣାକୁଲର ପାସ୍ କରିଥିବା ଶିକ୍ଷାର୍ଥୀମାନେ ପଢ଼ିବାକୁ ଆସୁଥିଲେ। ସେ ସମୟରେ ଭର୍ଣ୍ଣାକୁଲର ସ୍କୁଲଗୁଡ଼ିକର ଅଷ୍ଟମଶ୍ରେଣୀ ପର୍ଯ୍ୟନ୍ତ ପଢ଼ାଯାଉଥିଲା। ମୋ ବାପା ଏହି ସ୍କୁଲରେ ପଢ଼ିଥିଲେ ଏବଂ ତାଙ୍କର ପ୍ରଧାନଶିକ୍ଷକ ଥିଲେ ମଧୁସୂଦନ ରାଓ। ଏହି ନର୍ମାଲ ସ୍କଲରୁ ପାସ୍‌କରି ବହୁ ଲୋକେ ପଣ୍ଡିତ ହିସାବରେ ଓଡ଼ିଆ ସାହିତ୍ୟକୁ ଅମୂଲ୍ୟ ଅବଦାନ ଦେଇ ଧନ୍ୟ ଓ ବିଖ୍ୟାତ ହୋଇଛନ୍ତି। ସେମାନଙ୍କ ମଧ୍ୟରେ ନୟାଗଡ଼ର ବିନାୟକ ମିଶ୍ର, ଭୁବନେଶ୍ୱର ମିଶ୍ର, ସମ୍ବଲପୁରର ରାଘବ ମିଶ୍ର ଇତ୍ୟାଦିଙ୍କର ନାମ ଉଲ୍ଲେଖଯୋଗ୍ୟ।

ମୁଁ ଏହି ଅନୁଷ୍ଠାନରେ ଯୋଗଦେଇ ଦୁଇଟି ଅଘଟଣ ଆବିଷ୍କାର କଲି। ପ୍ରଧାନଶିକ୍ଷକଙ୍କର ବାସସ୍ଥଳୀଟି ଯେପରି ଅନ୍ଧକାରାଚ୍ଛନ୍ନ ଥିଲା, ସେହିପରି ଅନ୍ଧକାରାଚ୍ଛନ୍ନ ଥିଲା ତାଲିମକେନ୍ଦ୍ରର କାର୍ଯ୍ୟାବଳୀ। ପୁରୁଷଙ୍କ ପାଇଁ ଟ୍ରେନିଂସ୍କୁଲ ଓ ମହିଳା ଟ୍ରେନିଂସ୍କୁଲ,

ଟ୍ରେନିଂ କଲେଜ ଓ Practising M.E.School ଗୋଟିଏ ହତା ମଧ୍ୟରେ ହେଉଥିଲା । ହତା ମଧ୍ୟରେ ଥିବା ପିଅନର ବାସଘରେ ବିଜୁଳି ଆଲୁଅ ଜକ୍‌ଜକ୍ କରୁଥିଲାବେଳେ ଏବଂ ପଙ୍ଖା ଘରଘର ହୋଇ ବୁଲୁଥିବାବେଳେ ପ୍ରଧାନଶିକ୍ଷକଙ୍କ ଘରେ ଡିବିରି ଜଳୁଥିଲା । ସେହିପରି ଟ୍ରେନିଂସ୍କୁଲର ପାଠପଢ଼ା ଗତାନୁଗତିକ ଭାବରେ ଚାଲିଥିଲା । ପ୍ରଧାନଶିକ୍ଷକ ଓ ଶିକ୍ଷକମାନେ ପିଲାମାନଙ୍କୁ ପରୀକ୍ଷାହଲ୍‌ରେ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରୁଥିଲେ । ମୁଁ ଟ୍ରେନିଂସ୍କୁଲ ପାର୍ଶ୍ୱସ୍ଥିତ ଡି.ପି.ଆଇ. ଅଫିସ୍‌କୁ ଯାଇ ମୋର ବାସସ୍ଥଳୀକୁ ବିଜୁଳି ଆଲୁଅର ବ୍ୟବସ୍ଥା ପାଇଁ ଆଲର୍ଟମେଣ୍ଟ କରାଇଲି । ତା ପୂର୍ବରୁ ସ୍କୁଲ୍‌ରୁ ଲାଇନଟାଣି ବିଜୁଳି ଆଲୋକର ସୁଯୋଗ ନେଇଥିଲି ।

ଟ୍ରେନିଂସ୍କୁଲରେ ତତ୍କାଳୀନ ଶିକ୍ଷାମନ୍ତ୍ରୀଙ୍କୁ ଡାକି ପୁରସ୍କାର ବିତରଣୀ ଉତ୍ସବର ଆୟୋଜନ କଲି । ଏତଦ୍‌ବ୍ୟତୀତ ମୋ ଲିଖିତ ତଥା ଗୁରୁ-ଛାତ୍ରମାନଙ୍କ ଦ୍ୱାରା ଅଭିନୀତ ଗୋଟିଏ ଏକାଙ୍କିକା କରାଇଥିଲି । ତାହା ସମସ୍ତେ ଉପଭୋଗ କରିଥିଲେ । ପରୀକ୍ଷାରେ ଦୁର୍ନୀତିର ମୂଳୋତ୍ପାଟନ ପାଇଁ ଗୋଟିଏ ଉପାୟ ପାଞ୍ଚିଲି । ପୂର୍ବରୁ Education Code ଅନୁଯାୟୀ ଟ୍ରେନିଂସ୍କୁଲଟି ହିଁ ପରୀକ୍ଷାକେନ୍ଦ୍ର ଥିଲା । ପ୍ରଧାନଶିକ୍ଷକ ତାର Centre Suparintendent ହେଉଥିଲେ । ମୁଁ D.P.I. Officeରେ ଧରାଧରି କରି କୌଶଳକ୍ରମେ ପରୀକ୍ଷାକେନ୍ଦ୍ରଟି କଲେଜିଏଟ୍ ସ୍କୁଲକୁ ସ୍ଥାନାନ୍ତରିତ କରି ସେହି ସ୍କୁଲର ପ୍ରଧାନଶିକ୍ଷକଙ୍କୁ Centre Superintendent କରାଇବାର ବ୍ୟବସ୍ଥା କରାଇଦେଲି । ସୁତରାଂ ପରୀକ୍ଷାରେ ଅସାଧୁ ଉପାୟ ବହୁ ପରିମାଣରେ କମିଲା । ସେ ବର୍ଷ ସ୍କୁଲର ପରୀକ୍ଷା ଫଳାଫଳରେ ମଧ ଆଞ୍ଚ ଆସିଲା । ମୋ ଉପରେ ଛାତ୍ର, ଶିକ୍ଷକ ଏବଂ ବହୁଲୋକ ଅସନ୍ତୁଷ୍ଟ ହେଲେ । କିନ୍ତୁ ମୁଁ ଗୁରୁ ଛାତ୍ରମାନଙ୍କର ପରୀକ୍ଷାଫଳ ବାହାରିବା ପୂର୍ବରୁ ୧୯୬୮ ମସିହାରେ ବୋଧହୁଏ ମେ ମାସରେ Circleରେ ଇନିସ୍‌ପେକ୍ଟର ହିସାବରେ ଯୋଗଦେଲି ।

## ସ୍କୁଲ ଇନିସ୍‌ପେକ୍ଟର

କଟକ Inspector Officeରେ ଚାଲିଥିଲା ଜଙ୍ଗଲିରାଜ । ମୁଁ ଯୋଗଦେବା ସାଙ୍ଗେସାଙ୍ଗେ A.G. Officeରୁ ଜଣେ ଆସିଷ୍ଟାଣ୍ଟ ଏକାଉଣ୍ଟ ଅଫିସର୍, ଜଣେ ସୁପରିନ୍‌ଟେଣ୍ଡେଣ୍ଟ ଆଉ ଜଣେ ସିନିଅର୍ କ୍ଲର୍କ ଅଡିଟ୍ କରିବାପାଇଁ ପହଞ୍ଚିଗଲେ । ସେମାନେ ତୃତୀୟଦିନ ୪୫,୬୦୦ଟଙ୍କା ତୋଷରପାତ ହୋଇଥିବା ଧରିଲେ । ଆଉ ଦୁଇଦିନ ପରେ ତାହା ୫୬,୦୦୦ଟଙ୍କା ହୋଇଗଲା । ଅଡିଟ୍ କରୁଥିବା ସୁପରିନ୍‌ଟେଣ୍ଡେଣ୍ଟ ମୋତେ ଅଫିସ୍‌ର Head Clerk cum Accountantଙ୍କୁ ସସ୍‌ପେଣ୍ଡ କରିବାକୁ ପରାମର୍ଶ ଦେଲେ । ମୁଁ ତଦନୁଯାୟୀ Asst. Inspectorଙ୍କ ହାତରେ ଡି.ପି.ଆଇ. ଙ୍କୁ ଚିଠିଦେଲି ଏବଂ ସେ D.P.I.Officeରୁ ସସ୍‌ପେନସନ୍ ଅର୍ଡ଼ର କରାଇନେଲେ । ସେ Accountant ମହାଶୟ

ଆରେଷ୍ଟ ହେବାକୁ ଯାଉଥିବା ଜାଣିପାରି କୋର୍ଟରେ ହାଜର ହୋଇ ଚାରିଲକ୍ଷ ଟଙ୍କାର ଆଗୁଆ ଜାମିନ୍‌ରେ ଗଲେ । ଅଡିଟ୍ ଚାଲିଲା । ତୋଷରପାତର ପରିମାଣ ଏକଲକ୍ଷ ସାତହଜାର ପର୍ଯ୍ୟନ୍ତ ଗଲା । ମୋର ଇଚ୍ଛାଥିଲା ଆହୁରି ଆହୁରି ପଛକୁ ପଛକୁ ଅଡିଟ୍ କରାଇବାକୁ । କିନ୍ତୁ ଡି.ପି.ଆଇ ଅଫିସ୍‌ରୁ ବୋଧହୁଏ କୌଣସି ଇଙ୍ଗିତରେ ଅଡିଟ୍ ବନ୍ଦହେଲା ।

ସରକାରଙ୍କ ଆଦେଶ ଥିଲା ମୋର ପୂର୍ବବର୍ତ୍ତୀ ଅଫିସର, Accts ଏବଂ ଟଙ୍କା ପଇସାକୁ ଦୁଇଭାଗକରି କଟକ I Circleର ଭାଗ ମୋତେ ଦେବେ ଏବଂ ସେ କଟକ II Circleର charge ଭାରନେବେ । ତାହା ସେ କରିପାରିଲେ ନାହିଁ । A.G.officeର Asst. Accts Officer ତାଙ୍କୁ କଟକ I Circleର ଭାଗ ମୋତେ ଦେବାପାଇଁ ଯେତେ କହିଲେ ମଧ୍ୟ ସେ Accts କିମ୍ବା ହାତରେ ଥିବା ଟଙ୍କାକୁ ଭାଗଭାଗ କରିପାରିଲେ ନାହିଁ । ସବାଶେଷକୁ ମୋତେ ପୂରା ଚାର୍ଜନେବାକୁ ପଡ଼ିଲା ଏବଂ Accts, ଟଙ୍କା ପଇସା ଆଦି ଦୁଇଭାଗ କରି ତାଙ୍କୁ ସମର୍ପିବାକୁ ପଡ଼ିଲା । ତହିଁରୁ ମୁଁ ଦେଖିଲି Accts ସାଙ୍ଗରେ Cash ମିଳୁନାହିଁ ଏବଂ ଅତୀତରେ ଅଫିସ୍ ଟ୍ରେଜେରିରେ ଲକ୍ଷଲକ୍ଷ ଟଙ୍କା କ୍ୟାସ୍ ରହୁଥିବାର ମଧ୍ୟ ଦେଖିଲି । Double lock system ମଧ୍ୟ ନଥିଲା । ଏସବୁକୁ ସଜାଡ଼ିବା ପାଇଁ ମୋତେ ବହୁତ ପରିଶ୍ରମ କରିବାକୁ ପଡ଼ିଥିଲା । ଏହାସତ୍ତ୍ୱେ ମୋ ବିରୁଦ୍ଧରେ ଡି.ପି.ଆଇ. ଅଫିସ୍‌ରେ ଚକ୍ରାନ୍ତ ହେଲା । ମୁଁ କିପରି ଇନିସ୍‌ପେକ୍ଟର ହେଲି ଏବଂ କଟକରେ ରହିବାରୁ ସମସ୍ତଙ୍କ ଚକ୍ଷୁଶୀଳ ହେଲି । Class IIରେ ମୋର Seniority ସେମାନଙ୍କର ଆଖିକୁ ଗଲାନାହିଁ ଏବଂ ମୁଁ ମନ୍ତ୍ରୀଙ୍କର ଲୋକ ବୋଲି କଟକରେ ରହିଲି ବୋଲି ଧାରଣା ହେଲା । କିନ୍ତୁ ଏହା ମିଥ୍ୟା । Appointment ଓ Posting ଆଇନ୍‌ଗତ ଭାବରେ ସିଦ୍ଧ ଥିଲା । D.P.I. Officeରୁ ମୋତେ ନିର୍ଦ୍ଦେଶ ଆସିଲା, କଟକ ଇନ୍ସପେକ୍ଟର ଅଫିସ୍‌କୁ ଆଉ ଗୋଟିଏ ଭଡ଼ାଘରକୁ ଘୁଞ୍ଚାଇ ନେବାକୁ । ମୁଁ ଏଥିରେ ସ୍ତମ୍ଭୀଭୂତ ହେଲି । ବ୍ରିଟିଶ ଅମଳର ପୁରୁଣା Inspector Office ଏବଂ ରେକର୍ଡ଼ ସବୁ ସେଠାରୁ ଉଠିଯାଇ ଭଡ଼ାଘରେ ରହିବ ଏବଂ Cuttack II Office ସେଇଠାରେ କରାଯିବ । ଏକଥା ଶୁଣିଲେ ଯେକୌଣସି ଲୋକ କ୍ଷୋଭପ୍ରକାଶ କରିବାର କଥା । ମୁଁ ବହୁ ମାନସିକ ଯନ୍ତ୍ରଣା ଭୋଗକଲି । ଯାହାହେଉ, ପରିଶେଷରେ ସରକାର ତାଙ୍କ ମତ ବଦଳାଇଲେ । ସେତେବେଳେ ଯାଜପୁର ଓ କେନ୍ଦ୍ରାପଡ଼ା ସବ୍‌ଡିଭିଜନ ଦୁଇଟିକୁ ନେଇ କଟକ II Circle କରାଯାଇଥିଲା । ଅନୁସନ୍ଧାନରୁ ମୁଁ ଦେଖିଲି, ମୋର ପୂର୍ବବର୍ତ୍ତୀ ତିନିଜଣ ଇନିସ୍‌ପେକ୍ଟର ଏଇ ଦୁର୍ନୀତିରେ ଭାଗୀଦାର ଥିଲେ । ଦୁଇଜଣ ବୋଧହୁଏ ତାଙ୍କର ଅଜ୍ଞତାବଶତଃ ଦସ୍ତଖତ କରି ଚାଲିଥିଲେ, ଯାହାର ସୁବିଧା ଅନ୍ୟମାନେ ଉପଭୋଗ କଲେ । କିନ୍ତୁ ଜଣେ ଅନ୍ୟାୟଲବ୍ଧ ଧନ ଜାଣିଶୁଣି ଉପଭୋଗ କରୁଥିଲେ । ତାଙ୍କର ଘରଖର୍ଚ୍ଚ ଏବଂ ଆସବାବପତ୍ର, ଅଫିସ୍ ଖର୍ଚ୍ଚ Accountant Cum Head clerk ସବୁ ବୁଝୁଥିଲେ ବୋଲି ଶୁଣିବାକୁ ପାଇଲି । ତାପରେ ମୁଁ ଯାହା ଅନୁମାନ

କଲି, ବଜେଟ୍‌ରେ ଗୋଟିଏ ଇନ୍‌ଫ୍ଲାଟେଡ ଏମାଉଣ୍ଟ ଦେଖାଇ ସେଇ ଅନୁସାରେ ବହୁତ ଅର୍ଥ ଆଲର୍ଟମେଣ୍ଟ ପାଉଥିଲେ ଏବଂ ବଳକା ଟଙ୍କାକୁ ବାଣ୍ଟିବୁଣ୍ଟି ନେଉଥିଲେ । ଏ ବିଷୟରେ କେହି ଅନୁସନ୍ଧାନ କରିନଥିଲେ ବୋଧହୁଏ । False voucher ଦ୍ୱାରା ଏହି ଖର୍ଚ୍ଚକୁ ଦେଖାଇ ଦିଆଯାଉଥିଲା ।

ଏହିପରି ଗୋଟିଏ ମାନସିକଙ୍ଘପ ମଧ୍ୟରେ ମୋତେ ନିୟମିତ କାମରେ ଅଗ୍ରସର ହେବାକୁ ପଡ଼ିଲା । Crime Branch Police ଆସି ରେକର୍ଡ଼ ସିଲ୍ କରିନେଲେ । କେଶ୍ ଚାଲିଲା । ଯଦିଓ Accountantଙ୍କ ଛଡ଼ା ଅନ୍ୟ ଜଣେ ଦୁଇଜଣ କିରାଣୀ ଏ ଦୁର୍ନୀତିରେ ଲିପ୍ତଥିଲେ, ସେମାନେ ରାଜସାକ୍ଷୀ ହୋଇଯିବାରୁ କେଶ୍ କେବଳ Accountant Cum Head Clerkଙ୍କ ବିରୋଧରେ ହେଲା । ଯଦିଓ ଅଡିଟ୍ ଚାଲିଥିଲାବେଳେ ସମାଜ ଓ ପ୍ରଜାତନ୍ତ୍ର ଅଫିସ୍‌ରୁ ଫୋନ୍‌ଦ୍ୱାରା ମଝିରେ ମଝିରେ ମୋଠାରୁ ଖବର ସଂଗ୍ରହ କରାଯାଉଥିଲା, ଅଡିଟ୍ ପରେ ଏ ବିଷୟରେ କେହି ଆଉ କୌଣସି ଅନୁସନ୍ଧାନ କଲେନାହିଁ । ସସ୍‌ପେଣ୍ଡ ହେବାପରେ ହେଡ୍‌କ୍ଲର୍କ ମହାଶୟ ମୋତେ ଧନ୍ୟବାଦ ଦେଇ କହିଲେ ଯେ, ସେ ବିହାର ଏବଂ ଓଡ଼ିଶା ସରକାର ଅମଳରେ ଚାକିରି ଆରମ୍ଭ କରିଥିବାରୁ କେଶ୍ ଫଇସଲା ହେବା ପର୍ଯ୍ୟନ୍ତ ପୂରା ଦରମା ପାଇବେ । Suspension ଥିଲା ତାଙ୍କ ପ୍ରତି ଆଶୀର୍ବାଦ ଏବଂ ତାହାହିଁ ହେଲା । ବୋଧହୁଏ ୧୯୭୪ ମସିହାରେ ଜଣେ ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟରେ କେଶ୍ ପଡ଼ିବାରୁ ମୁଁ ଏବଂ ବୈଦ୍ୟନାଥ ରଥ ଅସୁସ୍ଥତା ସତ୍ତ୍ୱେ ସାକ୍ଷ୍ୟପ୍ରଦାନ ପାଇଁ କୋର୍ଟରେ ଉପସ୍ଥିତ ହେଲୁ । ସେତେବେଳେ ଆମେ ଦୁଇଜଣଯାକ ଅବସର ପ୍ରାପ୍ତ । ବୈଦ୍ୟନାଥ ରଥ ଅସୁସ୍ଥତାବଶତଃ କିଛି କହିବାପାଇଁ ଅସାମର୍ଥ୍ୟ ପ୍ରକାଶ କଲେ । ମୁଁ କେତେକ ରେକର୍ଡ଼ ଚିହ୍ନଟ କଲି । ମାଜିଷ୍ଟ୍ରେଟ୍ ଆକାଉଣ୍ଟାଣ୍ଟଙ୍କୁ ଏକବର୍ଷର ସଶ୍ରମ କାରାଦଣ୍ଡର ରାୟ ଦେଲେ । ଆକାଉଣ୍ଟାଣ୍ଟ ମହାଶୟ ହାଇକୋର୍ଟରେ ଅପିଲ୍‌କଲେ ଓ ହାଇକୋର୍ଟରେ ବିଚାର ପୂର୍ବରୁ ତାଙ୍କର ପରଲୋକ ହୋଇଯାଇଥିଲା ।

ଦୁର୍ନୀତିରେ ଆଉ କେତେକ ଉପାୟ ଅବଲମ୍ବନ କରାଯାଇଥିଲା । ୨୦,୦୦୦ଟଙ୍କା ଟ୍ରେଜେରିରୁ ଆସିବାର ପ୍ରମାଣ ଥିଲା । କିନ୍ତୁ Acctsରେ ଚଢ଼ିନଥିଲା । ୯୦,୦୦୦ ଟଙ୍କା ଟ୍ରେଜେରୀରୁ ଆସିଲା, କିନ୍ତୁ ହିସାବ ଖାତାରେ ଚଢ଼ିଲା ୭୦,୦୦୦ଟଙ୍କା । କେତେଗୁଡ଼ିଏ False Voucher ମଧ୍ୟ ଧରା ପଡ଼ିଥିଲା । ଗେରେଜ ତିଆରି କାମରେ ମଧ୍ୟ ମିଛ ଭାଉଚର ଦିଆ ଯାଇଥିଲା । ଇନିସ୍‌ପେକ୍ଟରମାନେ ପ୍ରାୟ ମାସକୁ ଥରେ ଲେଖାଏଁ ବ୍ରାକେଟ ଦେଇ ଦସ୍ତଖତ କରି ଦେଉଥିଲେ । ଏପରି କ୍ଷେତ୍ରରେ ଦୁର୍ନୀତି ପ୍ରତିରୋଧ କରିବାର ପଦ୍ଧତି ଓ ନିୟମ ଅତି ଦୁର୍ବଳ ଥିବାରୁ କେବଳ ଏହି ଘଟଣା ନୁହେଁ, ଅନ୍ୟ ବହୁ ଦୁର୍ନୀତିଗ୍ରସ୍ତ ଲୋକ ମଧ୍ୟ ଖସି ଯାଉଛନ୍ତି ।

କଟକରେ ମୁଁ ଇନିସ୍‌ପେକ୍ଟର ଥିଲାବେଳେ ପ୍ରଥମେ ଭଡ଼ାଘରେ ରହୁଥିଲି । ତାପରେ ଖ୍ରୀଏଷ୍ଟ କଲେଜ ସମ୍ମୁଖସ୍ଥ ମୁଖ୍ୟରାସ୍ତାକୁ ଲାଗି ବ୍ରିଟିଶ ଅମଳରେ ନାରୀଶିକ୍ଷା ପାଇଁ ଥିବା Deputy Inspectorଙ୍କ କ୍ୱାର୍ଟର୍ସରେ ରହିଲି । ଯଦିଓ ଆମର ଗୋଟିଏ ଜିପ୍‌ଗାଡ଼ି ଥିଲା, ଜିପ୍ ଓ ଡ୍ରାଇଭର ମୋ କ୍ୱାର୍ଟର୍ସର ହତାମଧ୍ୟରେ ଥିଲେ ମଧ୍ୟ ମୁଁ ପ୍ରତିଦିନ ଅଫିସ୍‌କୁ ସାଇକେଲ୍‌ରେ ଯିବାଆସିବା କରୁଥିଲି । ସହର ମଧ୍ୟରେ ଖୁବ୍ କ୍ୱଚିତ୍ ସରକାରୀ ଗାଡ଼ିର ବ୍ୟବହାର କରିଛି । କେବଳ ଟୁର୍‌ରେ ଗଲାବେଳେ ସରକାରୀ ଗାଡ଼ି ବ୍ୟବହାର କରୁଥିଲି ।

ତାପରେ ମୁଁ ଯାଜପୁର ସର୍କଲର ଇନିସ୍‌ପେକ୍ଟର ହୋଇ ରହିଲି । କିନ୍ତୁ ଏହାର ଅଫିସ୍ ତଳତେଲେଙ୍ଗା ବଜାରର ଗୋଟିଏ ଭଡ଼ାଘରେ ଚାଲିଲା । ଏହି ସମୟରେ Cuttack III Circleରେ Inspectorଙ୍କୁ ଢେଙ୍କାନାଳ ବଦଳି ହେବାରୁ ମୋତେ କଟକ III Circleକୁ ବଦଳି କରାଗଲା । ସେଠିକାର ଅଫିସର୍ ଜଣେ ଭଦ୍ରମହିଳା ଥିଲେ । ସେ ମୋତେ ଚାର୍ଜ ଦେଲେନାହିଁ ବା ସରକାରଙ୍କର ଆଦେଶ ମାନିଲେ ନାହିଁ । କିନ୍ତୁ ସରକାର ଦୃଢ଼ହେବାରୁ ସେ ବାଧ୍ୟହୋଇ ଢେଙ୍କାନାଳକୁ ଗଲେ ଏବଂ ମୁଁ ପୂର୍ବବତ୍ ଯାଜପୁର ସର୍କଲରେ ରହିଲି ଏବଂ ଆଉଜଣେ କଟକ III Circleରେ ଯୋଗଦେଲେ ।

## ଉପ-ନିର୍ଦ୍ଦେଶକ

ମୋର କାର୍ଯ୍ୟକାଳ ଯେତେବେଳେ ଦଶ-ଏଗାର ମାସଥିଲା, ମୋତେ Secondary Education Deputy Director ଭାବେ ବଦଳି କରାଗଲା । କିନ୍ତୁ ବଦଳି କରିଥିବା ଶିକ୍ଷାମନ୍ତ୍ରୀଙ୍କର ବିଭାଗ ବଦଳି ଯିବାରୁ ନୂତନ ଶିକ୍ଷାମନ୍ତ୍ରୀ ମୋତେ ଡି.ପି.ଆଇ. ଅଫିସ୍‌ରେ ଜଏନ୍ କରାଇ ନଦେବା ପାଇଁ ଡି.ପି.ଆଇ.ଙ୍କୁ ନିର୍ଦ୍ଦେଶ ଦେଲେ । ବାଧ୍ୟହୋଇ ମୁଁ ତିନିମାସକାଳ ଦଉଡ଼ାଦଉଡ଼ି କରି ହତାଶ ହେଲି । ଯାପରେ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରିହେବାରୁ ମୁଁ ସିଧା ରାଜ୍ୟପାଳଙ୍କୁ ଚିଠି ଲେଖିଲି । ବୋଧହୁଏ ତାରି ଫଳରେ ମୋର ସଙ୍ଗେସଙ୍ଗେ ଡି.ପି.ଆଇ. ଅଫିସ୍‌କୁ ବଦଳି ହେଲା ।

ଡି.ପି.ଆଇ. ଅଫିସ୍‌ରେ ଥିଲାବେଳେ ସରକାରଙ୍କର ମୋ ଉପରେ ଅଖଣ୍ଡ ବିଶ୍ୱାସ ଥିବାରୁ ମୋତେ ବିଭିନ୍ନ ଦୁର୍ନୀତିଗ୍ରସ୍ତ ଅଫିସରଙ୍କ ବିରୁଦ୍ଧରେ ତଦନ୍ତ କରିବାପାଇଁ ପଠାଇଥିଲେ । ଯାଫଳରେ ମୋର ଜଣେ ସହପାଠୀ ଏବଂ ଘନିଷ୍ଠ ବନ୍ଧୁଙ୍କୁ ସସ୍‌ପେଣ୍ଡ ହେବାକୁ ପଡ଼ିଲା ଏବଂ ଆଉ ଜଣେ ବନ୍ଧୁଙ୍କୁ ତତ୍କାଳ ସ୍ଥାନାନ୍ତରିତ ହେବାକୁ ପଡ଼ିଲା । ମୋର ପୂର୍ବବର୍ତ୍ତୀ ଅଫିସରଙ୍କର ଦୁଇଟି ଅନ୍ୟାୟପୂର୍ଣ୍ଣ ଆଦେଶକୁ ଜନସାଧାରଣଙ୍କ ଆପତ୍ତି ଯୋଗୁଁ ଓ କିରାଣୀମାନଙ୍କର ଆପତ୍ତି ସତ୍ତ୍ୱେ ଆଦେଶକୁ ଅନ୍ୟାୟ ବୋଲି ହୃଦ୍‌ବୋଧ ହେବାରୁ ମୁଁ ସାହସର ସହିତ ଡି.ପି.ଆଇ. ଅଫିସ୍‌ର ପୂର୍ବବର୍ତ୍ତୀ ଆଦେଶକୁ ବାତିଲ କଲି ।

ଥରେ ଶିକ୍ଷକସଂଘର ବରିଷ୍ଠ କର୍ମକର୍ତ୍ତାମାନେ ମୋ ପାଖରେ ପହଞ୍ଚିଲେ। ତହିଁରୁ ଜଣେ ବୟସ୍କ ଓ ମାନ୍ୟବ୍ୟକ୍ତି ଗୋଟିଏ ମାଇନର ସ୍କୁଲର ଦୁଇଜଣ ଶିକ୍ଷକଙ୍କର ବନ୍ଦ ହୋଇଥିବା ଦରମା ଦେବାପାଇଁ ଅଶାଳୀନ ଭାଷାରେ ଧମକଦେଇ କହିବାରୁ ମୁଁ ତାଙ୍କପ୍ରତି ଅସଭ୍ୟ ଭାଷା ବ୍ୟବହାର କଲି । ଅଫିସରୁ ବାହାର କରିଦେଲି। ଡି.ପି.ଆଇ. ଏବଂ ଶିକ୍ଷାବିଭାଗର ସେକ୍ରେଟେରୀ କେଉଁଠାରୁ ଏକଥା ଶୁଣିପାରି ମୋତେ ବଧାଇ ଜଣାଇଥିଲେ।

ଆଉଥରେ ପୂର୍ବତନ ମୁଖ୍ୟମନ୍ତ୍ରୀ ଗୋଟିଏ ହାଇସ୍କୁଲ ସମ୍ବନ୍ଧରେ ମୋତେ ନିଷ୍ପତ୍ତି ନେବାକୁ ଅନୁରୋଧ କଲେ। ମୁଁ ତାଙ୍କୁ କହିଲି ଯେ, ହାଇସ୍କୁଲରେ ଦୁଇଟି ଷ୍ଟାଫ୍ ଦୁଇଟି Management ହୋଇ ଭୀଷଣ ଗଣ୍ଡଗୋଳ ଘଟି ହାଇକୋର୍ଟରେ କେସ୍ ଅଛି। ସୁତରାଂ ଏହି ଅଫିସ୍ କିଛି କାର୍ଯ୍ୟାନୁଷ୍ଠାନ କରିପାରିବ ନାହିଁ। ତହୁଁ ସେ ଉକ୍ତ ହାଇସ୍କୁଲ ଥିବା ଗାଁର ଲୋକଙ୍କୁ ମୋ ପାଖକୁ ପଠେଇଲେ। ଲୋକଟି ବୟସ୍କ ଏବଂ ଅତି ସାଧାରଣ ମଫସଲି। ସେ ସ୍କୁଲ ବିଷୟରେ ମୁଁ ତାଙ୍କୁ ବୁଝାଇଦେଲି, କିନ୍ତୁ ସେ ପକେଟ୍‌ରୁ କିଛି ପଇସା କାଢ଼ିଲେ ମୋତେ ଦେବାପାଇଁ ମୁଁ ତାଙ୍କୁ ନମସ୍କାର କଲି ଏବଂ ଚାଲିଯିବା ପାଇଁ ଅନୁରୋଧ କରିବାରୁ ସେ ବାହାରିଗଲେ।

୧୯୭୩ ମସିହା ନଭେମ୍ବର ୨୭ତାରିଖରେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କଲି। ସରକାରୀ କାର୍ଯ୍ୟରେ ଥାଇ ମଧ୍ୟ ସତ୍ୟକୁ ଆଶ୍ରୟକରି ବିବେକ ଅନୁସାରେ କାର୍ଯ୍ୟ କରିବାପାଇଁ ମୁଁ ସଦାବେଳେ ଚେଷ୍ଟା କରିଥିଲି। ମୋର ଚାକିରିକାଳ ମଧ୍ୟରେ ଦେଶପ୍ରତି ମୋର ଅତି ବିଶିଷ୍ଟ ସେବା ହେଲା ଆଠଜଣ ଶିକ୍ଷକ ଏବଂ ତିନିଜଣ ପିଅନଙ୍କୁ ତାଙ୍କର କାର୍ଯ୍ୟକ୍ଷେତ୍ରରେ ଅସ୍ୱାଭାବିକ ହେଲା ଓ ଅକ୍ଷମଣୀୟ ବ୍ୟକ୍ତିଗତ ଚରିତ୍ର ଯୋଗୁଁ ସରକାରୀ ସେବାରୁ ବହିଷ୍କାର କରିବା।



# ପଞ୍ଚମ ଅଧ୍ୟାୟ

## ମୋ ଅବସର ଜୀବନ

### ଅବସର ପାଇଁ ଯୋଜନା

ସରକାରୀ ଚାକିରି ଆରମ୍ଭରୁ ୧୯୪୧ ମସିହାରୁ ୫୦ଟଙ୍କା ଦରମାରୁ ୧୯୭୩ ମସିହାରେ ୧୧୦୦ଟଙ୍କା ଦରମାପାଇ ୩୨ବର୍ଷ ସରକାରୀ ଚାକିରି କରି ମୋତେ ଅବସର ନେବାକୁ ହୋଇଥିଲା। ଚାକିରିକାଳ ମଧ୍ୟରେ ବହୁକଷ୍ଟରେ କୁଟୁମ୍ବ ପ୍ରତିପୋଷଣ କରିବାକୁ ପଡ଼ିଥିଲା। ନିଜର କୁଟୁମ୍ବ ପ୍ରତିପୋଷଣ ଛଡ଼ା ଚାକିରିକାଳ ମଧ୍ୟରେ ପନ୍ଦରବର୍ଷ କାଳ ମୁଁ ମୋର ପିତାଙ୍କୁ ପ୍ରତିମାସରେ କିଛି ଅର୍ଥ ସାହାଯ୍ୟ ମଧ୍ୟ କରୁଥିଲି । ମୋର ପରିବାରଟି ଚଳେଇବା ପାଇଁ ମୋର ସ୍ତ୍ରୀଙ୍କୁ ଯଥେଷ୍ଟ କଷ୍ଟ ସ୍ୱୀକାର କରିବାକୁ ପଡୁଥିଲା। ଅର୍ଥାଭାବରୁ ନିଜର ଚାରୋଟି କନ୍ୟାସନ୍ତାନଙ୍କୁ କଲେଜର ଡିଗ୍ରୀଶିକ୍ଷା ସମାପ୍ତ କରିବାପାଇଁ ମୋର ସାମର୍ଥ୍ୟ ନଥିଲା। ତେଣୁ ମୁଁ ଚାକିରିକାଳ ମଧ୍ୟରେ ଏହି ଚାରୋଟି କନ୍ୟାଙ୍କର ବିବାହ ସମ୍ପନ୍ନ କରିବାକୁ ବାଧ୍ୟ ହୋଇଥିଲି। ପ୍ରତ୍ୟେକ କ୍ଷେତ୍ରରେ କେବଳ ନଅହଜାର ଟଙ୍କା ବ୍ୟୟରେ ବିବାହକାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା। କୌଣସି କ୍ଷେତ୍ରରେ ବିଶେଷ ଦେବାନେବା ବା ଯୌତୁକ ପ୍ରଦାନ କରିବାକୁ ପଡ଼ିନଥିଲା ଏବଂ କୌଣସି କ୍ଷେତ୍ରରେ ଯୌତୁକ ମଧ୍ୟ ଦାବି କରାଯାଇ ନଥିଲା। ବିବାହଖର୍ଚ୍ଚ ପାଇଁ ମୋର ବନ୍ଧୁବାନ୍ଧବମାନେ କରଜ ସୂତ୍ରରେ ବହୁତ ସାହାଯ୍ୟ କରିଥିଲେ ଏବଂ ମୋର ଏକମାତ୍ର ପୁତ୍ର ବହୁ କଷ୍ଟରେ ଅଧ୍ୟୟନ କରି ଏମ୍.ଏ. ପାସ୍ କରିଥିଲା।

ଅବସର ନେବାପରେ ..ର ପେନସନ୍ ୪୦୨ଟଙ୍କାରୁ କମ୍ୟୁଟେସନ ଯାଇ ମୁଁ କେବଳ ମାସିକ ୨୭୨ଟଙ୍କା ପନସନ ପାଇଲି । ଅବଶ୍ୟ କୋଅପରେଟିଭ୍ ଲୋନ୍ ନେଇ ଭୁବନେଶ୍ୱରରେ ଖଣ୍ଡିଏ ଘର କରିଥିବାରୁ ମୁଣ୍ଡଗୁଞ୍ଜିବାକୁ ମୋର ଆଶ୍ରୟ ସ୍ଥଳଟିଏ ଥିଲା । କିନ୍ତୁ ଏତେ ଅଳ୍ପଆୟରେ ଆମେ ଦୁଇଜଣ ଏବଂ ମୋର ପୁତ୍ରର ପରିବାରକୁ ଚଳାଇବା ଅତି କଷ୍ଟକର ହୋଇପଡିଥିଲା। ମୋର ପୁତ୍ର ସାମୟିକ କାର୍ଯ୍ୟକରି ସ୍ୱଳ୍ପ ଦରମା ପାଉଥିଲା। ତେଣୁ ମୁଁ କେତୋଟି ଗାଈ ଓ କୁକୁଡ଼ା ରଖି ତହିଁରୁ ଉପଲବ୍ଧ କ୍ଷୀର ଏବଂ ଅଣ୍ଡା

ବିକ୍ରୟକରି କୁଟୁମ୍ବ ପ୍ରତିପୋଷଣ କରିବାକୁ ଲାଗିଲି। ଗାଈ ଏବଂ କୁକୁଡ଼ା ପାଳନର ଭାର ମୋର ସ୍ତ୍ରୀ ଏବଂ ପୁତ୍ର ବହନ କରୁଥିଲେ।

ଏହିପରି କେତୋଟି ବର୍ଷ କଟିଗଲା ପରେ ମୋର ପୁତ୍ର ଗୋଟିଏ ନିୟମିତ କମ୍ପାନୀ କାର୍ଯ୍ୟରେ ନିଯୁକ୍ତ ହେବାରୁ ତାର ଆୟ ବଢ଼ିଲା ଏବଂ ସେ ତାର ପରିବାର ନେଇ ସ୍ଥାନାନ୍ତରିତ ହେଲା।

ଆଉ ଗୋଟିଏ ବଡ଼କଥା ହେଲା, ଅବସର ପରେ ବହୁ ସମାଜସେବୀ ଅନୁଷ୍ଠାନ ସେମାନଙ୍କର ସମାଜସେବା କାର୍ଯ୍ୟରେ ମୋର ସାହାଯ୍ୟ ଓ ପରାମର୍ଶ ଲୋଡ଼ିଲେ। ମୁଁ ସେମାନଙ୍କ କର୍ମୀମାନଙ୍କର ତାଲିମ ଏବଂ ପୁସ୍ତକ ଲେଖାଲେଖିରେ ବହୁତ ସାହାଯ୍ୟ କଲି। ଏଥିପାଇଁ ପାଉଥିବା ଅର୍ଥରୁ ମୁଁ ପ୍ରାୟ ଅର୍ଦ୍ଧାଧିକ ଅଂଶ ସେମାନଙ୍କର ସଂସ୍ଥାକୁ ଦାନ କରୁଥିଲି। ଏଥିନିମନ୍ତେ ମୋତେ ଓଡ଼ିଶାର ବହୁ ଦୂରଦୂରାନ୍ତ ସ୍ଥାନକୁ ଯିବାକୁ ପଡୁଥିଲା।

ଏହାଛଡ଼ା ବହୁ ସରକାରୀ ବିଭାଗ, Unicef Danida, SRC, SCERT, SIRD ଆଦି ସଂସ୍ଥାମାନ ସେମାନଙ୍କର କର୍ମୀମାନଙ୍କର ତାଲିମ, ସେମିନାର ଏବଂ ନାନାପ୍ରକାରର ଲେଖାଲେଖିରେ ମୋତେ ଜଡ଼ିତ କଲେ। ସେଥିରୁ ମଧ୍ୟ କିଛି ଅର୍ଥ ମିଳିଲା । ମୁଁ କେତେଦିନ ଭାରତ Scouts ଓ Guideର ସମ୍ପାଦକ ହିସାବରେ ମଧ୍ୟ କାର୍ଯ୍ୟକଲି। ଗୋଷ୍ଠୀଉନ୍ନୟନ ବିଭାଗ ମୋତେ ଗୋଟିଏ ନିୟମିତ କାର୍ଯ୍ୟରେ ସବେତନ ନିଯୁକ୍ତି ଦେବାପଇଁ ନିମନ୍ତ୍ରଣ କରିଥିଲେ, କିନ୍ତୁ ମୁଁ ତାହା ଗ୍ରହଣକରି ନଥିଲି। ଶ୍ରୀଯୁକ୍ତ ରାଧାକାନ୍ତ ନାୟକଙ୍କ ଅନୁରୋଧକ୍ରମେ ତାଙ୍କ ପରିଚାଳିତ ସ୍ୱେଚ୍ଛାସେବୀ ଅନୁଷ୍ଠାନ NISWASH (National Institute of Social Work and Social Sciences)ରେ ଫୁଲବାଣୀ ଜିଲ୍ଲାରେ ଆଦିବାସୀ ଓ ହରିଜନ ଯୁବକମାନଙ୍କୁ ତାଲିମ ଦେବାରେ କିଛିସମୟ ଅତିବାହିତ କରିଥିଲି। ସର୍ବଭାରତୀୟ ପ୍ରୌଢ଼ଶିକ୍ଷା ସଂଘର ଆଜୀବନ ସଭ୍ୟ ହିସାବରେ ସଂଘର କାଉନସିଲ ଏବଂ କାର୍ଯ୍ୟକାରୀ କମିଟିରେ ମଧ୍ୟ ସଭ୍ୟଥିଲି । ଦେଶର ନାନା ସ୍ଥାନରେ ପ୍ରୌଢ଼ଶିକ୍ଷା ସମ୍ମିଳନୀ, ସେମିନାର ଓ କର୍ମଶାଳାମାନଙ୍କରେ ଯୋଗଦେଉଥିଲି।

## ଜାତୀୟ ପ୍ରୌଢ଼ଶିକ୍ଷା ମିଶନ

୧୯୩୯ ମସିହାରେ Dr Laubach ଏ ଦେଶରେ ପ୍ରୌଢ଼ଶିକ୍ଷାର ଭିତ୍ତିସ୍ଥାପନ କରିବା ଦିନଠାରୁ ମୁଁ ଏ ଆନ୍ଦୋଳନ ସହିତ ଜଡ଼ିତ ଥିଲି। Laubach ସାହେବଙ୍କୁ ଆମେ କେତେଜଣ ଛାତ୍ର ରେଭେନ୍ସା କଲେଜରେ ତାଙ୍କୁ ଦେଖିବାର ଏବଂ ତାଙ୍କର ବକ୍ତବ୍ୟ ଶୁଣିବାର ସୁଯୋଗ ପାଇଥିଲୁ । ଆମେ ଆଠ ଦଶଜଣ ଛାତ୍ର କଟକ ସହରର କେତେଗୁଡ଼ିଏ ବସ୍ତି ଅଞ୍ଚଳର ଲୋକମାନଙ୍କ ମଧ୍ୟରେ ସାକ୍ଷରତା କାର୍ଯ୍ୟକ୍ରମ ଆରମ୍ଭ କରିଥିଲୁ। ମୁଁ ନୂଆବଜାରର କେତେକ ଯୁବକଙ୍କୁ ଓ୍ୱେଷ୍ଟ ହଷ୍ଟେଲରୁ ଯାଇ ପଢ଼ାଉଥିଲି। ସେ ଅନୁଭୂତି

ଅତି ବିଚିତ୍ର ଏବଂ ମଧୁମୟ। ତେବେ ଯାହାହେଉ, ଆମେ ଛାତ୍ରମାନେ ଏ କାର୍ଯ୍ୟକ୍ରମଟି କରିପାରିଲୁ ନାହିଁ ଏବଂ ତା ଦେହରୁ ବିରତ ହେବାକୁ ବାଧ୍ୟହେଲୁ। ଆମମାନଙ୍କର ପଢ଼ାପଢ଼ି, ପରୀକ୍ଷା ଓ ଅନ୍ୟାନ୍ୟ ବ୍ୟସ୍ତତା ଏହି ପବିତ୍ର କାର୍ଯ୍ୟରୁ ଆମକୁ ବିରତ କରାଇଲା। ସେ ସମୟର ଅକ୍ଷରଶିକ୍ଷା କଥା ମନେପଡ଼ିଲେ ଏବେ ମଧ୍ୟ ହସମାଡ଼େ।

୧୯୭୭ ମସିହାରେ ଦଶବାର ଜଣଙ୍କୁ ନେଇ ଗୋଟିଏ କମିଟି ଗଢ଼ାଗଲା। ଦିଲ୍ଲୀରେ ଏଇ କମିଟି ତିନିଦିନ ବସି National Adult Education Programmeର ରୂପରେଖ ତିଆରିକଲେ । ଏଇ କମିଟିରେ ମୁଁ ମଧ୍ୟ ଜଣେ ସକ୍ରିୟ ସଭ୍ୟଥିଲି। ଏଇ କମିଟିର ପ୍ରସ୍ତାବକୁ ସରକାର ପୂରାପୂରି ଗ୍ରହଣକଲେ ଏବଂ ଏହା ୧୯୭୮ ମସିହା ଅକ୍ଟୋବର ୨ ତାରିଖରେ ଅର୍ଥାତ୍ ଗାନ୍ଧୀଜୟନ୍ତୀ ଦିନରୁ ଦେଶରେ ପ୍ରଚଳିତ ହେଲା। ୧୯୮୮ ମସିହାରୁ ଏହାର ପରିବର୍ତ୍ତନ କରି National Literacy Mission ଗଢ଼ାଗଲା ଏବଂ ସାକ୍ଷରତା କ୍ରମକୁ ଜନଶିକ୍ଷା ବୋଲି କୁହଗଲା।

୧୯୭୮ ମସିହାରେ ଲକ୍ଷ୍ନୌରେ C.D.S. ଯୋଜାନାକୁ ଆଧାରକରି ଗୋଟିଏ Functional Literacy Primer ଲେଖିବାକୁ ଠିକ୍ କରାଗଲା। ଏହାକୁ ବିଭିନ୍ନ ଭାଷାରେ ଲେଖିବାପାଇଁ ବିଭିନ୍ନ ରାଜ୍ୟରୁ ଲେଖକମାନେ ଯାଇଥିଲେ। ଓଡିଶାରୁ ମୁଁ ଏକାକୀ ଯାଇଥିଲି । ମୋର ଲିଖିତ "ବହି ପଢ଼ିଲେ ସିନା ଜାଣିବା" ଆଦୃତ ହୋଇଥିଲା। ପରବର୍ତ୍ତୀ କାଳରେ ଏବଂ ଆଜିପର୍ଯ୍ୟନ୍ତ ସାକ୍ଷରତା ଆନ୍ଦୋଳନ ସହିତ ମୁଁ ପ୍ରତ୍ୟକ୍ଷ ଭାବରେ ଜଡ଼ିତ । ଯେହେତୁ ରାଜ୍ୟ ସାକ୍ଷରତା ସାଧନକେନ୍ଦ୍ର ଏବଂ ସର୍ବଭାରତୀୟ Adult education ସଂଘ ସହିତ ମୋର ସମ୍ପର୍କ ରହିଛି, ମୁଁ UNICEFଙ୍କ ଅନୁରୋଧରେ C.D.S.କୁ କେନ୍ଦ୍ରକରି UNICEFର ପଦସ୍ଥ କର୍ମଚାରୀ ଏବଂ ଅନ୍ୟଜଣେ ମୋର ବନ୍ଧୁଙ୍କ ସହାୟତାରେ ଅତ୍ୟାଧୁନିକ ଅତି ଉପାଦେୟ Functional Literacy Primer ଲେଖିଛି। ଏ ବହିଟି ନିରକ୍ଷର ବା ସ୍କୁଲ ଛାଡ଼ିଥିବା ଅଳ୍ପ ସାକ୍ଷର ଅଙ୍ଗନବାଡ଼ି କର୍ମୀଙ୍କ ପାଇଁ ଉଦିଷ୍ଟ। ଏହି ପୁସ୍ତକଟି ଦିଲ୍ଲୀସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଛି । ବହିଟିର ନାମ 'ଅଙ୍ଗନ ଆଲୋକ' । ଆହୁରି ବହୁତ primer ଏବଂ ସାକ୍ଷରତା ପରବର୍ତ୍ତୀ କାର୍ଯ୍ୟକ୍ରମ ପାଇଁ Follow up Literature ଲେଖିଅଛି । ସେଥିମଧ୍ୟରୁ ଗଂଗା, ଯମୁନା, ଘରସଂସାର, ଶୁଣ ସୁଜନେ, ସଦେଇର ସପନ ନାରାୟଣଙ୍କ ଇଚ୍ଛା, ବରୁଣ ପୂଜା, ନିରୋଗ ରହନ୍ତୁ ସରବେ, ବାପାମାଆଙ୍କ ପାଇଁ, ଆମରି କଥା, ଇତ୍ୟାଦି ବହୁତ ବହି ଲେଖିଛି । ଏଥିମଧ୍ୟରୁ ଅଧିକାଂଶ ଦାସକାଠିଆ, ଘୋଡ଼ାନାଚ, ଶବର ଶବରୁଣୀ ଗୀତ ଏବଂ ବୈଷ୍ଣବ ପାଣିଙ୍କ ସୁଆଙ୍ଗ ଢଙ୍ଗରେ ଲେଖାଯାଇଛି । ଏଥିମଧ୍ୟରୁ କେତେକ ଅଲ୍ ଇଣ୍ଡିଆ ରେଡିଓ ପ୍ରଚାର କରିଛି ଏବଂ ଗୋଟିଏ story SRC Documentary film ହିସାବରେ ପ୍ରସ୍ତୁତ କରିଛନ୍ତି । ଓଡ଼ିଶା ସରକାରଙ୍କର ଅନୁରୋଧ କ୍ରମେ ସାଧାରଣ ସ୍ୱାସ୍ଥ୍ୟରକ୍ଷା ଉପରେ ମୁଁ ଲେଖିଥିବା 'ନିର୍ମଳା' ବୋଲି ଗୋଟିଏ ଗଳ୍ପକୁ

ଭିତ୍ତିକରି ଓଡ଼ିଶା ସରକାର ଗୋଟିଏ ଡକ୍ୟୁମେଣ୍ଟାରୀ ଫିଲ୍ମ ପ୍ରସ୍ତୁତ କରିଅଛନ୍ତି । ବର୍ତ୍ତମାନ ବୟସାଧିକ୍ୟ ହେତୁ ମୁଁ ହାତରେ ଲେଖିପାରୁ ନଥିବାରୁ ମୋର ଲେଖାଲେଖି ପ୍ରାୟ ବନ୍ଦ ବୋଲି କହିବାକୁ ହେବ । ତଥାପି ଶିଶୁମାନଙ୍କ ପାଇଁ ଏବଂ ଜନସାଧାରଣଙ୍କ ପାଇଁ ଆଉ ଖଣ୍ଡିଏ ଦୁଇଖଣ୍ଡି ବହି ଲେଖିବାପାଇଁ ମୋର ଇଚ୍ଛା ଏବଂ ଆକାଂକ୍ଷା । ମୁଁ ଅଲ୍ ଇଣ୍ଡିଆ ଆଡଲ୍ଟ ଏଜୁକେଶନ ଆସୋସିଏସନ୍‌ର ଜଣେ ଆଜୀବନ ସଭ୍ୟ । ଏକ ସମୟରେ ଏଇ ଆସୋସିଏସନ୍‌ର କାଉନ୍‌ସିଲ ଏବଂ ଏକଜିକ୍ୟୁଟିଭ୍ କମିଟିର ସଭ୍ୟ ଥିଲି । ଏଇ ସଂକ୍ରାନ୍ତରେ ମୁଁ ଦେଶର ଚାରିଆଡ଼େ ବୁଲି, ସଭାସମିତିରେ ଯୋଗଦେଇ ସହର ଏବଂ ମଫସଲରେ ଅନେକ ଅନୁଷ୍ଠାନର ସାକ୍ଷରତା କାର୍ଯ୍ୟକ୍ରମର ଅନୁଧ୍ୟାନ କରିବାର ସୁଯୋଗ ପାଇଥିଲି । ବାର୍ଷିକ କନଫରେନ୍ସ ଗୁଡ଼ିକରେ ମୁଁ ସମସ୍ତ ସଭ୍ୟମାନଙ୍କୁ ଗୀତ ବୋଲାଏ, ନଚାଏ ଏବଂ କଉତୁକପୂର୍ଣ୍ଣ ଡ୍ରାମା କରାଏ ବୋଲି ମୋତେ ସମସ୍ତେ ଭଲପାଉଥିଲେ ।

ଥରେ ରାଜସ୍ଥାନରେ ଆଡଲ୍ଟ ଏଜୁକେଶନ ଆସୋସିଏସନ୍‌ର ଗୋଟିଏ ସେମିନାର୍ ହୋଇଥିଲା । ଏଥିରେ ମୁଁ ଯୋଗଦେଇ ରାଜସ୍ଥାନରେ ଅନ୍ତ୍ୟୋଦୟ କାର୍ଯ୍ୟକ୍ରମ ସମ୍ବନ୍ଧରେ ଜାଣିବାକୁ ପାଇଲି ଯେ, ଏହା କେବଳ ଭଣ୍ଡାମି ଛଡ଼ା କିଛି ନୁହେଁ । ଏହା କେବଳ ଯେ ସେଠାରେ କେତେକ ଅଧ୍ୟାପକ କହିଲେ ତା' ନୁହେଁ, ଜଣେ ରିସର୍ଚ୍ଚ ସ୍କଲର ମଧ୍ୟ ଗୋଟିଏ ମେଗାଜିନ୍‌ରେ ଏ ବିଷୟରେ ବିସ୍ତୃତ ବିବରଣୀ ଦେଇଥିଲେ । ୧୯୬୨ ମସିହାରେ ମୁଁ ରାଜସ୍ଥାନରେ ପଞ୍ଚାୟତ ଗୁଡ଼ିକର କାର୍ଯ୍ୟକ୍ରମ ଦେଖିବାକୁ ଯାଇଥିଲି । ରାଜସ୍ଥାନରେ ଗ୍ରାମପଞ୍ଚାୟତ ବ୍ୟବସ୍ଥା ଅତି ଉଚ୍ଚକୋଟୀର ଥିଲା ବୋଲି ସମସ୍ତେ କହୁଥିଲେ ଏବଂ ଜବାହାରଲାଲ ନେହେରୁ ମଧ୍ୟ ପ୍ରଶଂସା କରିଥିଲେ । କିନ୍ତୁ ମୁଁ ଯାହା ଦେଖିଲି, ପଞ୍ଚାୟତ ଗୁଡ଼ିକ ଆଦୌ ଠିକ୍‌ଭାବରେ କାର୍ଯ୍ୟ କରୁନଥିଲା ।

ମହାରାଷ୍ଟ୍ରର ଗ୍ରାମଶିକ୍ଷଣ ମହିମ ବୋଲି ଗୋଟିଏ ସାକ୍ଷରତା ଅଭିଯାନ ଷାଠିଏ ଦଶକରେ ଚାଲିଥିଲା । ଏହି ଅଭିଯାନଟି ପୃଥିବୀରେ ନାମ କରିଥିଲା । ମୁଁ ଯାଇ କେତୋଟି ଗାଁ ବୁଲି ଦେଖି ଭାରି ଖୁସିହେଲି । ସେମାନେ ଜିଲ୍ଲାକୁ ଜିଲ୍ଲା ନେଇ କାର୍ଯ୍ୟକ୍ରମର ପ୍ରସାର କରିଥିଲେ । କିନ୍ତୁ Follow-up programmeର ଅଭାବ ହେତୁ, ଏହି ଅଭିଯାନ ସଂପୂର୍ଣ୍ଣ ନିଷ୍ଫଳ ହେଲା । ଏକଥା ଶ୍ରୀମତୀ ଚିତ୍ରା ନାୟକ, ଯେ କି ମହାରାଷ୍ଟ୍ରର ଡି.ପି.ଆଇ. ଥିଲେ, ମୋ ଆଗରେ ସ୍ୱୀକାର କରିଥିଲେ । ଡକ୍ଟର ଆଇ.ଏ. କୋଶୀ ଆନ୍ଧ୍ରପ୍ରଦେଶରେ ଦୁଇଟି କେଉଟ ଗାଁରେ ଅତି ବୈଜ୍ଞାନିକ ପଦ୍ଧତିରେ ମହିଳାମାନଙ୍କର ମଧ୍ୟରେ ସାକ୍ଷରତା କାର୍ଯ୍ୟକ୍ରମ କରାଇଥିଲେ । କିନ୍ତୁ ଶେଷରେ ମୂଲ୍ୟାଙ୍କନରୁ ଜଣାଗଲା ଏହି ମହିଳାମାନେ ସାକ୍ଷରତାର ଧାର ଧାରିନଥିଲେ ।

ମୋଟ ଉପରେ ଅବସରଗ୍ରହଣ·ପରେ ମୋତେ ଗୋଟିଏ ଅତି ବ୍ୟସ୍ତ କର୍ମମୟ ଜୀବନ ଆରମ୍ଭ କରିବାର ସୁଯୋଗ ମିଳିଥିଲା । ପ୍ରୌଢ଼ଶିକ୍ଷା, ଅନୌପଚାରିକ ଶିକ୍ଷା

ଏବଂ Intergrated Child and Women Development କ୍ଷେତ୍ରରେ ମୋଦ୍ୱାରା ଲିଖିତ ବହୁ ପୁସ୍ତକ ଆଦୃତ ହୋଇଥିଲା । ମୁଁ ଅଙ୍ଗନବାଡ଼ି କର୍ମୀ, ସେମାନଙ୍କର ସୁପରଭାଇଜର ତଥା ଜନଶିକ୍ଷା ସାଧନ କେନ୍ଦ୍ରର ନାନା କାର୍ଯ୍ୟକ୍ରମରେ ବିଶେଷତଃ ତାଲିମ୍ ପ୍ରଦାନ କାର୍ଯ୍ୟକ୍ରମରେ ଏବଂ ପୁସ୍ତକ ରଚନାରେ ଏ ପର୍ଯ୍ୟନ୍ତ ମଧ୍ୟ କେତେକ ପରିମାଣରେ ଭାଗ ନେଉଅଛି । ରାଜ୍ୟର ପ୍ରଶିକ୍ଷଣ ଓ ଗବେଷଣା କେନ୍ଦ୍ର, ଏ ଦୁଇ ଅନୁଷ୍ଠାନ ସହ ପ୍ରାରମ୍ଭରୁ ମୁଁ ଜଡ଼ିତ ଅଛି । କିନ୍ତୁ ବୟସାଧିକ୍ୟ ଏବଂ ସ୍ୱାସ୍ଥ୍ୟହାନି ହେତୁ ମୁଁ ଏସବୁ କାର୍ଯ୍ୟରୁ ବହୁ ପରିମାଣରେ ବିରତ ହେବାକୁ ବାଧ ହେଉଅଛି । କିନ୍ତୁ ଖାଦ୍ୟପେୟ, ରନ୍ଧାବଢ଼ା ଓ ଶିଶୁପାଳନ କ୍ଷେତ୍ରରେ ସେମାନଙ୍କ (ଅଙ୍ଗନବାଡ଼ିକର୍ମୀମାନଙ୍କ) ଜୀବନରେ ବହୁ ପରିବର୍ତ୍ତନ ଆସି ପାରିଥିଲା । ଏକଥା ଡକ୍ଟର କୋଶୀ ମୋତେ ବିସ୍ତୃତ ଭାବରେ କହିଥିଲେ ।

## ମୋ ପୋଷ୍ୟଗାଁ

ଅବସର ଗ୍ରହଣପରେ ଭୁବନେଶ୍ୱରର ଅନତି ଦୂରରେ ଧଉଳି ନିକଟସ୍ଥ 'ନଖରା' ଗ୍ରାମଟିକୁ ପୋଷ୍ୟ କଲି। ସେହି ଗ୍ରାମରେ ୧୮୬୮ ମସିହାରୁ ଗୋଟିଏ ନିମ୍ନପ୍ରାଥମିକ ବିଦ୍ୟାଳୟ ଖୋଲିଥିଲା । କିନ୍ତୁ ତାହା ନିୟମିତ କାର୍ଯ୍ୟ କରୁନଥିଲା ବୋଲି କହିବାକୁ ହେବ। ଏଇ ସ୍କୁଲଟିକୁ ଉଚ୍ଚପ୍ରାଥମିକ ଏବଂ ନିମ୍ନମାଧ୍ୟମିକ ବିଦ୍ୟାଳୟରେ ପରିଣତ କରିବାକୁ ମୁଁ ଗ୍ରାମବାସୀମାନଙ୍କୁ ସାହାଯ୍ୟ କଲି। ସେହି ବିଦ୍ୟାଳୟରେ ପୁରସ୍କାର ବିତରଣୀ ଉତ୍ସବ ମଧ୍ୟ କରାଗଲା। ସ୍କୁଲଗୃହ ନିର୍ମାଣପାଇଁ ସରକାରୀ ଅର୍ଥର ବ୍ୟବସ୍ଥା ମଧ୍ୟହେଲା। ଜିଲ୍ଲାପାଳ ଓ ଉଚ୍ଚପଦସ୍ଥ କର୍ମଚାରୀଙ୍କୁ ସେହିଗ୍ରାମର ପରିଦର୍ଶନ ପାଇଁ ନିମନ୍ତ୍ରଣକରି ଗ୍ରାମବାସୀଙ୍କର ଆବଶ୍ୟକତା ପ୍ରତି ଦୃଷ୍ଟି ଆକର୍ଷଣ କରାଇଥିଲି। ତାହା ଫଳରେ ଗ୍ରାମ୍ୟରାସ୍ତା, ଗ୍ରାମ୍ୟ ପୁଷ୍କରିଣୀର ପଙ୍କୋଦ୍ଧାର ଓ ପୋଷ୍ଟଅଫିସ୍ ଇତ୍ୟାଦି ସମ୍ଭବ ହୋଇପାରିଥିଲା। ଗ୍ରାମରେ ଗୋଟିଏ ଯୁବକସଂଘ ଗଢ଼ା ଯାଇଥିଲା ଓ ସେମାନେ ମୋ ସହିତ ସମ୍ପର୍କରଖି ଗ୍ରାମ-ଉନ୍ନୟନ ପାଇଁ ଚେଷ୍ଟିତ ଥିଲେ। କିନ୍ତୁ ସବୁଠୁ ବଡ଼କଥା ହେଲା, ସେ ଗ୍ରାମରେ ନାରିକେଳ ବୃକ୍ଷରୋପଣ। ଏପର୍ଯ୍ୟନ୍ତ ସେ ଗ୍ରାମର ଲୋକେ କୁସଂସ୍କାରର ବଶବର୍ତ୍ତୀ ହୋଇ ନଡ଼ିଆ ଲଗାଇ ନଥିଲେ। ମୁଁ ସେମାନଙ୍କୁ ନଡ଼ିଆଗଛ ଲଗାଇବା ପାଇଁ ବହୁତ ବୁଝାବୁଝି କଲି । ସେମାନେ ମୋ କଥାକୁ ଗ୍ରହଣ କରିବାକୁ ପ୍ରାୟ ଦଶମାସଖଣ୍ଡେ ଲାଗି ଯାଇଥିଲା। ତେବେ ଯାହାହେଉ, ସେମାନେ ସାକ୍ଷୀଗୋପାଳ ନଡ଼ିଆଫାର୍ମରୁ ପ୍ରଥମେ ୫୦ଟି ନଡ଼ିଆଗଛ ଆଣି ଲଗାଇଥିଲେ। ତା ପରେପରେ ସେ ଗାଁରେ ଲୋକେ ବହୁଳ ପରିମାଣରେ ନଡ଼ିଆଗଛ ଲଗାଇଥିଲେ ଏବଂ ବର୍ତ୍ତମାନ ସେମାନେ ନଡ଼ିଆ ଉତ୍ପାଦନ କରିଥିବାରୁ ବହୁତ ଖୁସିଅଛନ୍ତି । ସେ ଗାଁର ଲୋକମାନେ ନିଜ ଚେଷ୍ଟାରେ କ୍ଲବ୍‌ଘରଟିଏ ମଧ୍ୟ କରିଛନ୍ତି ।

## ପ୍ରାକ୍-ପ୍ରାଥମିକ ଶିକ୍ଷା ସମିତି

ଅବସର ପ୍ରାପ୍ତିପରେ କେତେକ ଶିକ୍ଷାବିତ୍ ଯଥା ଅବସର ପ୍ରାପ୍ତ ଶିକ୍ଷା ବିଭାଗର ଜଏଣ୍ଟ ଡାରେକ୍ଟର ଶ୍ରୀଯୁକ୍ତ ହରିହର ମିଶ୍ର, ଶ୍ରୀମତୀ ଇନ୍ଦ୍ରଜିତ ଖୁରାନା, ମୁଁ ଓ ଅନ୍ୟକେତେକ ଶିକ୍ଷାପ୍ରେମୀ "Indian Association of Pre-School Education, Orissa" ଗଠନ କଲୁ। ସ୍ୱର୍ଗତ ହରିହର ମିଶ୍ର ଏହାର Founder President ଅଛନ୍ତି । Pre Basic School ଗଢ଼ିବା ଏବଂ ଚଳେଇବାରେ ମୋର ଯଥେଷ୍ଟ ଅଭିଜ୍ଞତା ଥିଲା। ସୁତରାଂ ଏହି ଅନୁଷ୍ଠାନର କାର୍ଯ୍ୟକ୍ରମରେ ମୁଁ ପୂରାପୂରି ଜଡ଼ିତ ରହିଲି। ଆମେମାନେ ମଝିରେ ମଝିରେ ନର୍ସରୀ ଓ କିଣ୍ଡରଗାର୍ଟନ ସ୍ତରର ପିଲାଙ୍କ ପାଇଁ ଖେଳ, ଗୀତ, ଗଳ୍ପକଥନ, ଅଭିନୟ, ଚିତ୍ରାଙ୍କନ ଏବଂ କଣ୍ଢେଇନାଚ ପ୍ରଦର୍ଶନ କଲୁ । ମୁଁ ଏଥିରେ ମୁଖ୍ୟଭାଗ ନେଉଥିଲି। ପିଲାଙ୍କ ପାଇଁ ଗୀତ ରଚନା କରିବା ସେମାନଙ୍କର ସାଙ୍ଗରେ ନାଚିବା, ଗାଇବା ଖେଳିବାଛଡ଼ା ପିଲାଙ୍କର ଶିକ୍ଷାଦାନ ଉଦ୍ଦେଶ୍ୟରେ ନାନା ଶିକ୍ଷା ଉପକରଣ ମଧ୍ୟ ତିଆରିକଲି, ଯଥା Zig-shaw-puzzle, Flash card ଖଦୀଗ୍ରାଫ ଛବି, ପପେଟ ଇତ୍ୟାଦି ବହୁରକମର ଶିକ୍ଷା ଉପକରଣ ବ୍ୟବହାର କଲି। ଏହି ଅନୁଷ୍ଠାନ ତରଫରୁ ଗୋଟିଏ Rhyme book ଓ ଗୋଟିଏ Story book ମଧ୍ୟ ମୁଦ୍ରିତ ହେଲା। ତହିଁରେ ମୁଁ ମୁଖ୍ୟଭାଗ ନେଲି। ଏ ଅନୁଷ୍ଠାନରେ ପରବର୍ତ୍ତୀକାଳରେ ଗୋଟିଏ ଥରପାଇଁ ସଭାପତି ମଧ୍ୟ ଥିଲି।

ଶିଶୁ ଶିକ୍ଷାରେ ମୋର ସକଳ ଅଭିଜ୍ଞାତାକୁ ଆଶ୍ରୟକରି ମୁଁ ଏବେ "ପିଲାଙ୍କ - ଗୀତ-ଝୁଣ୍ଟୁଡ଼ି" ବୋଲି ଖଣ୍ଡିଏ ଅତି ଉପାଦେୟ Rhyme book ଲେଖିଛି। ଏଥିରେ ମୁଁ ଓଡ଼ିଆ ଭାଷା, ସଂସ୍କୃତି ଏବଂ ଶିଶୁର ସର୍ବାଙ୍ଗୀନ ବିକାଶପ୍ରତି ଯଥା ତାର ସୃଜନଶକ୍ତି, କଳ୍ପନାଶକ୍ତି, ପରିବେଶ ପ୍ରତି ସଚେତନତା ଇତ୍ୟାଦିକୁ ପ୍ରାଧାନ୍ୟ ଦେଇ ଶିଶୁ ଅବସ୍ଥାରୁ ତାର ଗୋଟିଏ ବୈଜ୍ଞାନିକ ଦୃଷ୍ଟିକୋଣ ସୃଷ୍ଟିକରିବାକୁ ଚେଷ୍ଟା କରିଛି। ଏ ବହିଟି ବାଲବାଡ଼ି, ଅଙ୍ଗନବାଡ଼ି, English Medium School, Nursery, Kindergarten class ଏବଂ ବିଶେଷକରି ଆଦିବାସୀ ଅଞ୍ଚଳରେ ପ୍ରଚଳିତ ହେଲେ ଶିଶୁର ବିକାଶ ସଙ୍ଗେସଙ୍ଗେ ଓଡ଼ିଆଭାଷା ବହୁ ପରିମାଣରେ ରକ୍ଷା ପାଇଯିବ ବୋଲି ଆଶା। ବହିଟିକୁ ଶିକ୍ଷକ, ଶିକ୍ଷୟିତ୍ରୀ, ବାପା, ମା ଉଭୟେ ଶିଶୁର ଶାରୀରିକ, ମାନସିକ ଓ ବୌଦ୍ଧିକ ବିକାଶପାଇଁ ବ୍ୟବହାର କରିପାରିବେ। ଏ ବହିଟି କ୍ରମେକ୍ରମେ ଲୋକପ୍ରିୟ ହେବାରେ ଲାଗିଛି।

## ସମ୍ମାନ ଓ ସମ୍ବର୍ଦ୍ଧନା

ମୁଁ ବିଭିନ୍ନ ସମୟରେ ଶିଶୁମାନଙ୍କ ସଙ୍ଗେ ଗାଏଁ, ନାଚେ, ଅଭିନୟ କରେ । ସଭାସମିତିରେ ସାମୟିକ ଗୀତବୋଲେ ବୋଲି ମୋର କେତେକ ଯୁବବନ୍ଧୁ ମୋତେ ଟାଣିନେଇ ଗୋଟିଏ ଷ୍ଟୁଡିଓରେ ବସେଇ ଦେଲେ। ମୁଁ ବାଧ୍ୟହୋଇ କେତେକ Nursery

Rhyme ଏବଂ ସାମୂହିକ ଗୀତ ଗାଇଲି। ତାର ଗୋଟିଏ କ୍ୟାସେଟ୍ ଭୁବନେଶ୍ୱରସ୍ଥ 'ନାଟ୍ୟଚେତନା'ର ଯୁବବନ୍ଧୁମାନେ ବିଶେଷକରି ଅନୁଷ୍ଠାନର ଡାଇରେକ୍ଟର ସୁବୋଧ ପଟ୍ଟନାୟକ ତିଆରି କରିଛନ୍ତି। ଏ ବୟସରେ ମୋର ଗୀତଗୁଡ଼ିକ ଅତି ସୁଶ୍ରାବ୍ୟ ନହେଲେ ମଧ୍ୟ ଶିଶୁ ଓ ବାଳକ ବାଳିକାମାନଙ୍କ ପାଇଁ ଅନୁକରଣୀୟ ଓ ଶିକ୍ଷଣୀୟ ହୋଇଛି। ନାଟ୍ୟଚେତନା ଅନୁଷ୍ଠାନକୁ ମୋର ବହୁତ ବହୁତ ଧନ୍ୟବାଦ।

ମୋ ଜୀବନରେ ମୁଁ ଏକାଧିକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛି। ତନ୍ମଧ୍ୟରୁ ବିଶେଷ ଉଲ୍ଲେଖ୍ୟଯୋଗ୍ୟ ହେଲା, ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଶିଶୁ ସାହିତ୍ୟ ପାଇଁ ପୁରସ୍କାର ମିଳିବା । ଏତଦ୍ବ୍ୟତୀତ ଅନ୍ୟାନ୍ୟ କେତେକ ଅନୁଷ୍ଠାନ ମଧ ମୋତେ ସମ୍ମାନିତ କରି ପ୍ରଶଂସାପତ୍ର ଦେଇଛନ୍ତି, ସେମାନେ ହେଲେ ନାଟ୍ୟଚେତନା, NISWASH, Orissa Scouts and Guide, ବାପୁଜୀନଗର ବୃଦ୍ଧନାଗରିକ ସମିତି ଆଦି କେତେକ ଅନୁଷ୍ଠାନ ।

ମୁଁ ନିମ୍ନଲିଖିତ ଅନୁଷ୍ଠାନ ଗୁଡ଼ିକର ଆଜୀବନ ସଭ୍ୟ ମଧ ରହିଛି -

1. Indian Audult Education Association.
2. Retired Govt. Employee's Association, Orissa
3. Indian Association for Pre-School Education
4. Bharat Scouts and Guide
5. Indian Red Cross Society
6. Orissa Environmental Society
7. Sisu Sahitya Academy, Orissa
8. Utkala Sammilani
9. All India Juvenile Conference.



# ଶ୍ରଦ୍ଧାଞ୍ଜଳି

## ଅନ୍ନପୂର୍ଣ୍ଣା ମହାରଣା

୧୯୪୦ମସିହାରେ ପୁରୀ ଜିଲ୍ଲାର ବୀରନରସିଂହପୁର ଶାସନରେ ମୁଁ ରଚନାତ୍ମକ କାମ କରୁଥିଲି । ମହିଳାମାନଙ୍କ ମଧ୍ୟରେ ସୂତାକଟା, ସାକ୍ଷରତା ପ୍ରସାର, ଶିଶୁପାଳନ ଆଦି ବିଷୟରେ ବିଚାରବିମର୍ଷ, ଛୋଟପିଲାଙ୍କୁ ଆସନ, ନମସ୍କାର ଶିଖାଇବା, ରୋଗୀମାନଙ୍କୁ ହୋମିଓପାଥି ଔଷଧ ଦେବା ଆଦି ଥିଲା ମୋର ନିତ୍ୟ ସେବାକାର୍ଯ୍ୟ ।

ସ୍ୱର୍ଗତଃ ଇନ୍ଦୁଭୂଷଣ ମିଶ୍ରଙ୍କ ପୈତୃକଘର ସେହି ଗାଁରେ ହୋଇଥିବାରୁ ଏବଂ ତାଙ୍କ ଘରପାଖରେ (ସ୍ୱର୍ଗତଃ) ଦୟାନିଧି ମିଶ୍ରଙ୍କ ଘରେ ମୁଁ ରହୁଥିବାରୁ, ଇନ୍ଦୁବାବୁଙ୍କ ସଙ୍ଗେ ମୋର ପରିଚୟ ହେଲା ଏବଂ ସେ ମଧ ଉପରୋକ୍ତ କାର୍ଯ୍ୟକ୍ରମରେ ସାମିଲ ହୋଇଥିଲେ । ତାଙ୍କଠାରୁ ମୁଁ ପ୍ରଥମେ ଇନ୍ଦୁବାବୁଙ୍କ ନାମ ଶୁଣିଲି । ତାଙ୍କରି କହିବା ଅନୁସାରେ ଇନ୍ଦୁବାବୁ ସେତେବେଳେ କୌଣସି କଲେଜରେ ପଢୁଥିଲେ । ତାଙ୍କରି ଘରେ ମୁଁ ପ୍ରଥମେ ଇନ୍ଦୁବାବୁଙ୍କୁ ଦେଖିଲି, ମାତ୍ର ତାଙ୍କ ସହିତ ମୋର ପ୍ରତ୍ୟକ୍ଷ ପରିଚୟ ହୋଇନଥିଲା ।

ଓଡ଼ିଶାରେ ବେସରକାରୀ ମୌଳିକ ଶିକ୍ଷାର ପ୍ରୟୋଗ ଆରମ୍ଭ ହେବାରୁ ମୁଁ ସେ କାମରେ ସାହାଯ୍ୟ କରିବାପାଇଁ ବୀରନରସିଂହପୁର ଛାଡ଼ି ଆସିଲି । ମାତ୍ର ସେହି ଗାଁଆଟି ସହିତ ଗୋଟିଏ ଅବିଚ୍ଛେଦ୍ୟ ସ୍ନେହ ସଂପର୍କ ଏ ପର୍ଯ୍ୟନ୍ତ ମୋର ରହିଛି ।

ଇନ୍ଦୁବାବୁ ପାଠ ଶେଷକରି ସରକାରୀ ନିର୍ଦ୍ଦେଶରେ ମୌଳିକ ଶିକ୍ଷା ବିଷୟରେ ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ କରିବାକୁ ସେବାଗ୍ରାମ ଗଲେ । ସେଠାରୁ ଫେରି ମୋର ଯେତେଦୂର ମନେପଡୁଛି, ସେ ରାମଚନ୍ଦ୍ରପୁରରେ ଚାଲିଥିବା ମୌଳିକ ଶିକ୍ଷାର ପ୍ରୟୋଗ କ୍ଷେତ୍ରକୁ ମଧ ଯାଇଥିଲେ । ସେ ଯୁଗରେ ମୌଳିକ ଶିକ୍ଷା ବିଷୟରେ ଶିକ୍ଷିତ ସମାଜରେ କୌଣସି ସ୍ୱଷ୍ଟଧାରଣା ନଥିଲା । ଲୋକେ କୌତୁହଳପୂର୍ଣ୍ଣ ଦୃଷ୍ଟିରେ ଏହି ନୂଆ ପ୍ରୟୋଗକୁ ଦେଖୁଥିଲେ । ତେଣୁ ଆମ୍ଭେମାନେ ନିଜକୁ ଏକ ପ୍ରକାର ଏକଘରିଆ ହୋଇଥିବା ପରି ଅନୁଭବ କରୁଥିଲୁ । ଥରେ ତାଙ୍କ ମୁହଁରୁ ମୌଳିକଶିକ୍ଷା ବିଷୟରେ ଗୋଟିଏ ଭାଷଣ ଶୁଣିବାର ସୁଯୋଗ ମୋତେ ମିଳିଲା । ତାହା ଶୁଣି ମୋର ମନେହେଲା ସେ ମୌଳିକ

ଶିକ୍ଷାର ମୂଳ ସିଦ୍ଧାନ୍ତକୁ ଆତ୍ମସାତ୍ କରିଛନ୍ତି ଏବଂ ନିଜର ବ୍ୟକ୍ତିଗତ ଜୀବନରେ ମଧ୍ୟ ଏହାର ପ୍ରୟୋଗ କରୁଛନ୍ତି ।

କିଛିକାଳ ପରେ ଇନ୍ଦୁବାବୁ ବରପାଲିରେ କାମ କରୁଥିବା ଆମେରିକାନ୍ ବଂଧୁମାନଙ୍କ ସଂଗେ ମିଶି ଗ୍ରାମ ସଂଗଠନ କାମ କଲେ । ତାଙ୍କର ସହଧର୍ମିଣୀ ଶ୍ରୀମତୀ କମଳାଦେବୀ ମଧ୍ୟ ବରପାଲିରେ ରହି ତାଙ୍କ ସଙ୍ଗେ ପ୍ରସୂତି ପରିଚର୍ଯ୍ୟା ଆଦି ସେବା କାର୍ଯ୍ୟ କଲେ । ସମ୍ବଲପୁରର କୁମାରୀ ପାର୍ବତୀ ଗିରି ପ୍ରଭୃତିଙ୍କଠାରୁ ଆମେ କମଳା ଦେବୀଙ୍କ କଥା ଶୁଣିଲୁ ।

ଏହା ମଧ୍ୟରେ ୧୯୪୪ମସିହାରେ ଗାନ୍ଧିଜୀଙ୍କ ସହଧର୍ମିଣୀ ବନ୍ଦୀଶାଳାରେ ସହିଦ ହେଲେ । ତାଙ୍କର ସ୍ମୃତିରକ୍ଷା ପାଇଁ ଦେଶବାସୀ ଏକକୋଟି ତିରିଶଲକ୍ଷ ଟଙ୍କା ସଂଗ୍ରହ କଲେ । 'କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ' ଗଠିତ ହେଲା ଏବଂ ଗାନ୍ଧୀଜୀଙ୍କ ନିର୍ଦ୍ଦେଶରେ ଏହି ଟ୍ରଷ୍ଟ ମହିଳା ଓ ଶିଶୁମାନଙ୍କର କଲ୍ୟାଣ ନିମନ୍ତେ ମହିଳାମାନଙ୍କ ଦ୍ୱାରା ପରିଚାଳିତ ହେଲା । ଓଡ଼ିଶାରେ ଟ୍ରଷ୍ଟ ପକ୍ଷରୁ ଏହି କାର୍ଯ୍ୟ ଆରମ୍ଭ ହେଲା । ଇନ୍ଦୁବାବୁ ସମାଜର ସର୍ବାଙ୍ଗୀନ ବିକାଶର ପକ୍ଷପାତି ଥିଲେ ଏବଂ ଗ୍ରାମାଞ୍ଚଳର ଅବହେଳିତ ଶିଶୁ ଓ ଅଜ୍ଞାନ ତଥା ଦାରିଦ୍ର୍ୟର ଆକ୍ରମଣ ଓ ଅତ୍ୟାଚାରରେ ନିପୀଡିତା ମହିଳା ସମାଜର ଉତ୍ଥାନ କାର୍ଯ୍ୟର ଆଗ୍ରହୀ ଥିବାରୁ ଉପରୋକ୍ତ ଟ୍ରଷ୍ଟ ସହିତ ତାଙ୍କର ଯୋଗାଯୋଗ ସ୍ଥାପିତ ହେଲା । ପରକୁ ଆପଣାର କରିବାର ସହଜାତବୃତ୍ତି ଏହି ଦଂପତିଙ୍କ ମଧ୍ୟରେ ବିକଶିତ ହୋଇଥିବାରୁ, ଦୁହେଁ ଅଳ୍ପଦିନ ମଧ୍ୟରେ ଏହି କସ୍ତୁରବା ପରିବାରର ମୁରବି ପାଲଟିଗଲେ ଏବଂ ଟ୍ରଷ୍ଟର ସେବିକାମାନଙ୍କୁ ବାନ୍ଧି ପକାଇଲେ । ଆଜି କସ୍ତୁରବା ପରିବାର ତାଙ୍କର ସେହି ଅହେତୁକ ସ୍ନେହକୁ ସ୍ମରଣକରି ତାଙ୍କୁ ଝୁରୁଛନ୍ତି ।

ଆଜି ଆମେ ଇନ୍ଦୁବାବୁଙ୍କୁ ସଶରୀରରେ ଦେଖିପାରିବା ନାହିଁ । ମାତ୍ର ଭାରତର ଆଧ୍ୟାତ୍ମିକ ବିଚାର ଅନୁସାରେ ସେ ଅଛନ୍ତି । ତାଙ୍କର ଅମରଆତ୍ମା ଆମମାନଙ୍କ କାର୍ଯ୍ୟକଳାପକୁ ଅନୁକ୍ଷଣ ପର୍ଯ୍ୟବେକ୍ଷଣ କରୁଛି । ତାଙ୍କଦ୍ୱାରା ରଚିତ ସାହିତ୍ୟ ମଧ୍ୟରେ ସେ ସଂଜୀବିତ । ମୋର ବିଶ୍ୱାସ - ତାଙ୍କର ଅଶରୀରୀ ଆତ୍ମା ଆମମାନଙ୍କୁ ବଳ ଓ ଉତ୍ସାହ ମଧ୍ୟ ଯୋଗାଉଛି ।



# ଭାଇନାଙ୍କ ସ୍ମରଣେ

## କୃଷ୍ଣା ମହାନ୍ତି

ନାଟ୍ୟଚେତନା ଓ ବାଜିରାଉତ ଛାତ୍ରାବାସର ମିଳିତ ଉଦ୍ୟମରେ ପ୍ରଯୋଜିତ ନାଟକ 'ମୁକ୍ତଧାରା' -ଏକ ଅଭିଯାନରେ ବାହାରି ଓଡ଼ିଶାର ୨୦ଟି ସ୍ଥାନରେ ମଞ୍ଚସ୍ଥ ହେବାପରେ ଅକ୍ଟୋବର ୨୦ ତାରିଖ ଦିନ ଅନୁଗୁଳରେ ଶେଷ ହେଲା । ୨୧ ତାରିଖ ଦିନ ସକାଳଓଳି ଏହି ମିଳିତ ଉଦ୍ୟମର ସମୀକ୍ଷା କରିବାକୁ ମଞ୍ଚରେ ଓ ମଞ୍ଚପଛରେ ଅଂଶଗ୍ରହଣ କରିଥିବା କଳାକାର ଓ ଅନ୍ୟସମସ୍ତେ ଏକାଠି ବସିଥିଲୁ । ପ୍ରତ୍ୟେକେ ନିଜ ନିଜର ଅଭିଜ୍ଞତା ଓ ମତାମତ କହୁକହୁ ଅପରାହ୍ଣ ହୋଇଗଲା । ନାଟ୍ୟଚେତନାର ଭାଇମାନଙ୍କ ସହ ପାଖାପାଖି ଦୁଇମାସକାଳ ସମୟ ବିତାଇବା ପରେ ଆମକୁ ନିଜସ୍ଥାନକୁ ବାହୁଡ଼ିବାର ସମୟ ଆସିଗଲା । ବ୍ୟଥିତ ଓ ଭାରାକ୍ରାନ୍ତ ମନରେ ସେମାନଙ୍କୁ ବିଦାୟ ଦେଇ ଘରକୁ ଫେରିବା ପରେପରେ ଏକ ଅତ୍ୟନ୍ତ ବେଦନାଦାୟକ-ମର୍ମନ୍ତୁଦ ଖବର ଆସି ପହଞ୍ଚିଲା ଆମମାନଙ୍କର ଭାଇନା - ସମସ୍ତଙ୍କର ଅତିପ୍ରିୟ ଭାଇନା ଇନ୍ଦୁଭୂଷଣ ମିଶ୍ର ଆଉ ଆମ ଗହଣରେ ନାହାନ୍ତି । କୌଣସିପ୍ରକାର ରୋଗ ବଇରାଗରେ ନପଡ଼ି ନଭୋଗି ସେ ଅକସ୍ମାତ ହୃଦ୍‌ଘାତରେ ଚାଲିଗଲେ । ତାଙ୍କପାଇଁ ବଡ଼ ସୁଖମୃତ୍ୟୁ - ଏଥିରେ ସନ୍ଦେହ ନାହିଁ । କିନ୍ତୁ ତାଙ୍କର ଅତି ଆପଣାର ଜନ ଓ ଆମସମସ୍ତଙ୍କ ପାଇଁ ଚଡ଼କ ପଡ଼ିଲାଭଳି ଦାରୁଣ ସଂବାଦ ଥିଲା । ହେଇ ଗତକାଲି ପରା ଆମେ ତାଙ୍କର 'ଇନ୍ଦୁସାର୍‌ଙ୍କ ଗୀତ' କ୍ୟାସେଟ ବଜାଇ ଶୁଣୁଥିଲୁ! 'ନାଟ୍ୟଚେତନା' କରିଥିବା ଏହି କ୍ୟାସେଟ୍‌ର ଗୀତଗୁଡ଼ିକୁ ଯେତେଥର ଶୁଣେ - ମୋ'ମନ ୫୪/୫୫ବର୍ଷ ତଳକୁ ଅର୍ଥାତ୍ ୧୯୪୯/୫୦ମସିହାକୁ ଚାଲିଯାଏ । ସେ ସେତେବେଳେ ସେବାଗ୍ରାମରୁ ତାଲିମ ପାଇ ଅନୁଗୁଳରେ ଆରମ୍ଭ ହୋଇଥିବା ବେସିକ୍ ଟ୍ରେନିଂ ସ୍କୁଲକୁ ଆସିଥାନ୍ତି । ମୁଁ ସେତେବେଳେ ଖଲାରୀ ମୌଳିକ ବିଦ୍ୟାଳୟର ୪ର୍ଥ କି ୫ମ ଶ୍ରେଣୀରେ ପଢୁଥାଏ । ଆମ ବିଦ୍ୟାଳୟଟି ବେସିକ୍ ଟ୍ରେନିଂସ୍କୁଲର ପ୍ରାକ୍ଟିସିଙ୍ଗ୍ ସ୍କୁଲ ହୋଇଥାଏ । ଯଦିଓ ଭାଇନା ସ୍ଥାୟୀ ଭାବରେ ଏହି ଟ୍ରେନିଂ ସ୍କୁଲରେ ନଥାନ୍ତି, ତେବେ ମଧ୍ୟେମଧ୍ୟେ ଆସିଥାନ୍ତି । ତାଲିମ ପାଉଥିବା ଶିକ୍ଷକମାନଙ୍କୁ ନେଇ ଖଲାରୀ ମୌଳିକ ବିଦ୍ୟାଳୟ ଓ ବାଜିରାଉତ ଛାତ୍ରାବାସରେ ହେଉଥିବା ସୂତାକଟା ଲୁଗାବୁଣା ଓ କୃଷିକ୍ଷେତ୍ରକୁ ଆସନ୍ତି । ସୂତାକଟା, ଲୁଗାବୁଣା, କୃଷି ଓ ବଢେଇକାମ ଜରିଆରେ ଆମକୁ ଗଣିତ, ବିଜ୍ଞାନ, ଇତିହାସ ଆଦି କିପରି ଶିଖାଯାଇ ପାରିବ ତାହା ଶିକ୍ଷକମାନଙ୍କୁ ଅଭ୍ୟାସ କରାଇବା

ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥାଏ । କିନ୍ତୁ ସେ ଆମକୁ - ସାନପିଲାମାନଙ୍କୁ ଏହିସବୁ ଶିକ୍ଷା- ଗୀତ, ନାଚ ଓ ଅଭିନୟ ଜରିଆରେ ଦିଅନ୍ତି । ସେ ଆମକୁ ଏହି ଦେଶାତ୍ମବୋଧକ ଗୀତଗୁଡିକୁ ଶିଖାନ୍ତି ଓ ତା ସହିତ ନିଜେ ନାଚି ନାଚ ଓ ଅଭିନୟ ମଧ୍ୟ ଶିଖାନ୍ତି । କୃଷିକ୍ଷେତକୁ ଯିବା ଆଗରୁ ଆମକୁ ଧାଡ଼ିରେ ଛିଡ଼ା କରାଇ କୋଦାଳ, କାଙ୍କ ଆଦି ଧରାଇ ଦେଇକି ଓ ନିଜେ ଅଭିନୟକରି ଆମକୁ ଗୀତ ଗାଇବା ଶିଖାନ୍ତି -

"ଧରି କୋଦାଳ ହାତେ, ହାଣ ମାଟିର କ୍ଷେତେ
ଭୁଲି ତୁଚ୍ଛା ଗୁମାନ ଚାଲ ସ୍ୱାଧୀନ ପଥେ ।
ରୋଗ ଦୁଃଖ ଯେତେ, ଯିବେ ଯେଝା ପଥେ -
ଭୋକେ ଖିରି ପିଠା ଖାଅ ଇଚ୍ଛା ଯେତେ ।"

କାନ୍ଧରେ କାଙ୍କ, କୋଦାଳ ଧରି, ଗୀତ ସାଙ୍ଗେ ଦୁଇତାଳ ମିଳାଇ ପାଦପକାଇ ଆମେ ନାଚିନାଚି ଚଲୁ । କି ଶକ୍ତିଶାଳୀ ଓ ଗୁରୁଗମ୍ଭୀର ସେ ସ୍ୱର ! ଆମକୁ କହନ୍ତି - "ହଁ, ପାଟିକରି, ଗଳାଛାଡ଼ି ଗାଅ ।" - ତାଙ୍କ ସାଙ୍ଗରେ ନାଚି, ଗାଇ ଆମେ ବଗିଚାରେ ପହଞ୍ଚି କାମରେ ଲାଗିଯାଉ । କାମ କରିବାର ଉତ୍ସାହ ବଢିଯାଏ ।

ଥରେ ସେ ସ୍ୱାଧୀନତା ଦିବସରେ କି ସାଧାରଣତନ୍ତ୍ର ଦିବସରେ ସଠିକ୍ ମନେପଡୁନାହିଁ, ଆମକୁ ନେଇ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ କରିଥିଲେ । ବଡ଼ ସାନ ସମସ୍ତଙ୍କୁ ମିଶାଇ ଗୋଟିଏ ଦଳଗତ ନୃତ୍ୟ ଶିଖାଇଥିଲେ । ଜଣେ ଭାରତମାତା ହୋଇ, ତ୍ରିରଙ୍ଗା ପତାକା ଧରି ଛିଡ଼ା ହେବ ଓ ଅନ୍ୟମାନେ ଭାରତର ବିଭିନ୍ନ ପେଷାର ବେଶ ପୋଷାକ ପିନ୍ଧି ତାଙ୍କୁ ଘେରି - "ଜନମମାଟି ଡାକେରେ, ଡାକେ ଦୁନିଆ ମାଟି- ଉଠ ତନ୍ଦ୍ରାକାଟି -" ଗୀତ ଗାଇ ନୃତ୍ୟାଭିନୟ କରିବେ । ସେଥିରେ ସେ ମୋତେ ଧୋତି ଓ ଫତେଇଟିଏ ପିନ୍ଧାଇ, ଅଣ୍ଟାରେ ଓ ମୁଣ୍ଡରେ ଗାମୁଛା ଭିଡ଼ିଦେଇ ଚଷାପୁଅ ବେଶ କରିଦେଇଥିଲେ । ମୋ'ସାଙ୍ଗ ଅନ୍ନପୂର୍ଣ୍ଣା ଭାରତମାତା ହୋଇଥିଲା ।

ଭାଇନା ସେତେବେଳେ ନବରଙ୍ଗପୁର ବେସିକ୍ ଟ୍ରେନିଂସ୍କୁଲର ପ୍ରଧାନଶିକ୍ଷକ ଥାନ୍ତି, ମାତ୍ର ମଝିରେ ମଝିରେ ଅନୁଗୁଳ ଆସିଥାନ୍ତି ବାପି - ନୁମାଙ୍କ ଅନୁରୋଧରେ । ସ୍ୱାଧୀନତାର ପାକ୍‌କାଳରେ ପଶ୍ଚିମବଙ୍ଗର 'ଅଭ୍ୟୁଦୟ' ନାମକ ଏକ ଗୋଷ୍ଠୀ-ସଂଗୀତ ଦଳ ଜାତୀୟ ସଂହତି ଓ ଦେଶାତ୍ମବୋଧକ ସଂଗୀତର ଏକ ସଂକଳନ ବାହାର କରିଥାନ୍ତି । ଗୀତଗୁଡ଼ିକ ଖୁବ୍ ଶକ୍ତିଶାଳୀ ଓ ମନଛୁଆଁ ହୋଇଥାଏ । ସେଥିରୁ ଗୋଟିଏ ଗୀତକୁ ସେ ଓଡ଼ିଆରେ ମର୍ମାନୁବାଦ କରି ଗାଉଥିଲେ । ଏ ଗୀତଟି ତାଙ୍କର ଅତିପ୍ରିୟ ଥିଲା - 'ଜାଗ ନବ ଭାରତର ଜନତା - ସାବଧାନ, ଶୁଣ ଶୁଭ ବାରତା ।' ସେ ଯେତେବେଳେ ଛାତ୍ରାବାସକୁ ଆସନ୍ତି, ଆମ ଗହଣରେ ବସି ନିଜେ ଗାଆନ୍ତି ଓ ଆମକୁ ମଧ୍ୟ ବୋଲାନ୍ତି । ତାଙ୍କର ଗୋଟିଏ ପ୍ରିୟ ଧୂନ୍ ଥିଲା - 'ବୋଲ ହରି ବୋଲ ହରି, ହରିହରି ବୋଲ, କେଶବ, ମାଧବ,

ଗୋବିନ୍ଦ ବୋଲ୍...' ସେ ଆମ ପ୍ରାର୍ଥନାରେ ଯୋଗଦେଲେ, ନିଶ୍ଚିତ ଭାବରେ ଏ ଧୂନ୍‌ଟି ବୋଲନ୍ତି । ତାଙ୍କର ଗୁରୁଗମ୍ଭୀର ସ୍ୱରରେ ଏ ଧୂନ୍‌ଟି ବଡ଼ ସୁନ୍ଦର ଶୁଭେ ।

ଆମ ସହିତ ସମୟ କଟାଇବାକୁ ସେ ଯେତିକି ସୁଖ ପାଉଥିଲେ, ଆମେ ମଧ୍ୟ ତାଙ୍କୁ ପାଖରେ ପାଇ ସେତିକି ଖୁସି ହେଉଥିଲୁ । ପରବର୍ତ୍ତୀ ସମୟରେ ସେ କାର୍ଯ୍ୟ ଓ ସ୍ଥାନ ପରିବର୍ତ୍ତନ କରିବାକୁ କି କ'ଣ ଏଠାକୁ ଆଉ ବାରବାର ଆସିପାରୁନଥିଲେ, କିନ୍ତୁ କଦବା କ୍ୱଚିତ୍ ଯେତେବେଳେ ଆସନ୍ତି - କଣ୍ଠରେ ସେଇ ପୁରୁଣା ଗୀତର ଲହରୀ ନେଇ ଆସନ୍ତି । ତାଙ୍କ ଯୌବନ ସମୟରେ ସେଇ ସୁନ୍ଦର ସୌମ୍ୟ ଚେହେରା ବୟସାଧିକ୍ୟରେ ମଧ୍ୟ ଯେପରି ମଳିନ ପଡ଼ିନଥିଲା ପରି ଲାଗୁଥିଲା - କାରଣ ସେଥିରେ ଯୌବନର ସେଇ ଭାବ ଓ ଉଚ୍ଛ୍ୱାସ ଅଶୀତିପର ବୟସରେ ମଧ୍ୟ କାଏମ୍ ରହିଥିଲା ।

ଉତ୍କଳ ନବଜୀବନ ମଣ୍ଡଳ ଆନୁକୂଲ୍ୟରେ ୧୯୭୮ ମସିହାରେ ଅନୁଗୁଳରେ ରାଜ୍ୟ ପ୍ରୌଢ଼ଶିକ୍ଷା ସାଧନକେନ୍ଦ୍ର ଆରମ୍ଭ ହେଲା । ଶ୍ରୀ ବିଭୂତି ଭୂଷଣ ମହାନ୍ତି ଏହାର ନିର୍ଦ୍ଦେଶକ ହେଲେ । ଭାଇନା ଓ ବିଭୂତିବାବୁ ପୂର୍ବରୁ ଓଡ଼ିଶା ସରକାରଙ୍କ ଶିକ୍ଷା ସେବାରେ ସହକର୍ମୀ ଥିଲେ ଏବଂ ଆମେରିକାନ୍ ଫ୍ରେଣ୍ଡସ୍ ସର୍ଭିସ୍ କମିଟିର ବରପାଲିଠାରେ ପ୍ରତିଷ୍ଠିତ ଗ୍ରାମସେବା କେନ୍ଦ୍ରରେ ଉଭୟ ଶିକ୍ଷାବିତ୍ ଭାବରେ କାମ କରିଥିଲେ । ଆମ ବିବାହ ପରେ ମୁଁ ବିଭୂତିବାବୁଙ୍କ ସାଙ୍ଗରେ ବରପାଲି ଗଲି । ସେଠାରେ ଇନ୍ଦୁଭାଇନା ଓ କମଳାନାନୀଙ୍କୁ ଦେଖି ମୋର ଆନନ୍ଦ କହିଲେ ନସରେ । ମାତ୍ର ମୁଁ ପହଞ୍ଚିବା ପରେପରେ ସେମାନେ ବରପାଲି ଭିଲେଜ୍ ସର୍ଭିସ୍ କାର୍ଯ୍ୟଛାଡ଼ି ଅନ୍ୟତ୍ର ଚାଲିଯାଇଥିଲେ । ବହୁବର୍ଷ ପରେ ପ୍ରୌଢ଼ଶିକ୍ଷା ସାଧନକେନ୍ଦ୍ର ଆରମ୍ଭ ହେବାରୁ ମୁଁ ଆସି ଛାତ୍ରାବାସର ପରିସରରେ ରହିଲି ।

ପ୍ରୌଢ଼ଶିକ୍ଷା ସାଧନକେନ୍ଦ୍ରର ପ୍ରତିଟି କାର୍ଯ୍ୟକ୍ରମରେ ଭାଇନାଙ୍କର ଆଗ୍ରହ ଓ ଯୋଗଦାନ ରହିଥିଲା । ସେ ଯେ ଜଣେ ଶିକ୍ଷାବିତ୍, ଶକ୍ତିଶାଳୀ ଗାୟକ ଓ ଅଭିନେତା, ଏକଥା ମୋତେ ଜଣାଥିଲା, ମାତ୍ର ସେ ଜନସଂଚାର କ୍ଷେତ୍ରରେ ମଧ ଜଣେ ପାରଦର୍ଶୀ ବୋଲି ମୁଁ ଏଠାରେ ଆବିଷ୍କାର କଲି । ସେ ପିଲାଙ୍କପାଇଁ ଗୀତ ଓ କାହାଣୀ ଲେଖନ୍ତି ବୋଲି ମୁଁ ଜାଣିଥିଲି, କିନ୍ତୁ ପ୍ରୌଢ଼ ଓ ନବସାକ୍ଷରଙ୍କପାଇଁ ତାଙ୍କର ଲେଖାଗୁଡ଼ିକ ମଧ୍ୟ କେତେ ପ୍ରଭାବଶାଳୀ ଓ ହୃଦୟଗ୍ରାହୀ ବୋଲି ଏଠାରେ ଜାଣିଲି । ତାଙ୍କ ରଚନାଗୁଡିକ ମୁଖ୍ୟତଃ ଗଣମାଧମରେ ବ୍ୟବହାର ପାଇଁ ଦାସକାଠିଆ, ଚଢେଇୟା - ଚଢ଼େୟାଣୀ ଗୀତ ଆଦି ଜରିଆରେ ଗାଁର ଲୋକଙ୍କପାଇଁ ପରିବେଶ ପରିମଳ ଓ ସ୍ୱାସ୍ଥ୍ୟଶିକ୍ଷା ଆଦି ବଡ଼ ରୋଚକ ଭାବରେ ରଚିତ । ସାମାଜିକ ସମସ୍ୟାଗୁଡ଼ିକୁ ନେଇ ସେ ନବସାକ୍ଷରଙ୍କ ପାଇଁ ନାଟକ ମଧ ଲେଖିଛନ୍ତି । ଏକାଧାରରେ ସେ ଶିକ୍ଷାବିତ୍, କବି, ଲେଖକ ଓ ନାଟ୍ୟକାର ଥିଲେ ।

ଜୀବନାଦର୍ଶରେ ସେ ଜଣେ ଗାନ୍ଧୀବାଦୀ ଥିଲେ । ସେ ଯେଉଁ ଚାକିରିରେ ଥା'ନ୍ତୁ ନା କାହିଁକି, ସର୍ବଦା ଏକ ସଚ୍ଚୋଟ, ସରଳ ଓ ନିରାଡମ୍ବର ଜୀବନଯାପନ କରିଛନ୍ତି ଏବଂ

ତାଙ୍କ ପରିବାରକୁ ମଧ୍ୟ ସେହି ଛାଞ୍ଚରେ ଗଢିଛନ୍ତି । ପ୍ରାୟ ୩/୪ବର୍ଷ ହେଲା ସ୍ୱାସ୍ଥ୍ୟଗତ କାରଣରୁ ଡାକ୍ତର ତାଙ୍କୁ ଗାଡ଼ି ମଟରରେ ଅଧିକ ବାଟଯିବାକୁ ବାରଣ କରିଥିଲା । ତାଙ୍କର ସେବାପରାୟଣ ଧର୍ମପତ୍ନୀ କମଳା ନାନୀ ତାଙ୍କୁ ଖୁବ୍ ଜଗିରଖି ଚଳାଉଥିଲେ । ତାଙ୍କର ସ୍ନେହୀ, ସଂବେଦନଶୀଳ ମନ କିନ୍ତୁ ଥୟ ଧରୁନଥିଲା । ସେ କାର୍ଡ଼ ଖଣ୍ଡେ ଲେଖାଏଁ ଲେଖି ସମସ୍ତଙ୍କର ଖବର ନେଉଥିଲେ । ହାତ ଥରିବାରୁ ଅନ୍ୟ ହାତରେ ଲେଖାଉଥିଲେ କିମ୍ୱା କେହି ପହଞ୍ଚିଗଲେ ଚିହ୍ନାଜଣା ସମସ୍ତଙ୍କର ଖବର ପଚାରି ବୁଝୁଥିଲେ । ରଚନାତ୍ମକ ସଂସ୍ଥାଗୁଡ଼ିକ ଠିକ୍ ଚାଲୁଛି କି ନାହିଁ ଏ ଦିଗରେ ସର୍ବଦା ଚିନ୍ତା କରୁଥିଲେ ଓ ସେଥିପାଇଁ ପରାମର୍ଶ ମଧ୍ୟ ଦେଉଥିଲେ ।

ଓଡ଼ିଶା ଏଜୁକେସନାଲ ସର୍ଭିସର ଡେପୁଟି ଡି.ପି.ଆଇ ଭାବରେ କାର୍ଯ୍ୟରତ ଥାଇ ସେ ସରକାରୀ କାର୍ଯ୍ୟରୁ ଅବସର ନେଲେ ସିନା, ଯେଉଁ ଆଦର୍ଶ ଓ କାର୍ଯ୍ୟରେ ତାଙ୍କର ବିଶ୍ୱାସଥିଲା, ତାହା ସେ ସାରା ଜୀବନ ନିରଳସ ଭାବେ କରିଯାଇଛନ୍ତି । ଇନ୍ଦୁଭାଇନା ଓଡ଼ିଶାର ବହୁ ସମାଜସେବା ସଂସ୍ଥା ସହିତ ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ଥିଲେ ଏବଂ ତାଙ୍କର ଉତ୍ସର୍ଗୀକୃତ, ନିରଳସ ସେବା ସକାଶେ ବହୁ ସଂସ୍ଥା ଦ୍ୱାରା ସମ୍ମାନିତ ହୋଇଛନ୍ତି । ଏପରିକି ରାଜ୍ୟପାଳଙ୍କଠାରୁ ପ୍ରାଦେଶିକ ସ୍ତରରେ ମଧ୍ୟ ସମ୍ମାନ ଲାଭ କରିଛନ୍ତି, ଯଦିଓ ଏସବୁ ପୁରସ୍କାର ଓ ସମ୍ମାନ ତାଙ୍କୁ ପ୍ରଲୋଭିତ କରୁନଥିଲା ।

ସେ ସଂଗୀତଜ୍ଞ ନଥିଲେ । ମାତ୍ର ତାଙ୍କର ଶକ୍ତିଶାଳୀ, ସୁରେଲା କଣ୍ଠ ଈଶ୍ୱରଦତ୍ତ ଥିଲା । ତା'ରି ମାଧ୍ୟମରେ ସେ ଆପଣାର ରଚନା ବା ଯାହା ଭଲଲାଗେ ତାକୁ ଗାଇ ଜନ-ମନକୁ ସ୍ପର୍ଶ କରୁଥିଲେ । ନାଟ୍ୟଚେତନା ତାଙ୍କର ପରିଣତ ବୟସରେ 'ଗାଇଛନ୍ତି ଇନ୍ଦୁସାର୍' କ୍ୟାସେଟ୍‌ଟି କରିବା ଦ୍ୱାରା ଅନେକ ପୁରୁଣା ଗୀତ ସଂରକ୍ଷିତ କରି ଶିଶୁ ଓ ପୌଢ଼ ଉଭୟଙ୍କର ଉପକାର କରିଛନ୍ତି ।

ଭାଇନା ଆଜି ଆମ ଗହଣରେ ନାହାନ୍ତି ବୋଲି ବିଶ୍ୱାସ କରିବାକୁ ମନ ଚାହୁଁନାହିଁ । ସେ ଆମରି ଭିତରେ ଅଛନ୍ତି, ଚିରଦିନ ରହିବେ ତାଙ୍କ ଗୀତରେ, ନାଟକରେ, ଗୀତିନାଟ୍ୟରେ, ଦାସକାଠିଆ ଗାୟକର କଣ୍ଠରେ - ଆମ ଗାଁଗହଳର ପ୍ରତିଟି ସମସ୍ୟାର ସମାଧାନରେ ।

ଏଇ ବାଜିରାଉତ ଛାତ୍ରାବାସ ତାଙ୍କର ଅତିପ୍ରିୟ ଥିଲା । ସେଥିପାଇଁ ସେ ତାଙ୍କର ପୁଅ ଓ ଝିଅ ବିଭୁ ଓ ମୀନାକୁ ଏଠାରେ ଛାଡ଼ିଥିଲେ । ଯଦିଓ ସ୍ୱାସ୍ଥ୍ୟଗତ କାରଣରୁ ସେମାନେ ବେଶିଦିନ ରହି ପାରିନଥିଲେ, ବ୍ୟକ୍ତିଗତ ଭାବରେ ଓ ଆନୁଷ୍ଠାନିକ ଭାବରେ ଆମେ ତାଙ୍କର ଅଗାଧ ସ୍ନେହ ପାଇଛୁ । ପରପାରିରୁ ମଧ୍ୟ ସେ ଆମକୁ ଆଶିଷ ଦେବେ, ଏହି ପ୍ରାର୍ଥନା କରି ସେଇ ପବିତ୍ର ଆତ୍ମାକୁ ମୋର ପ୍ରଣତି ଓ ଶ୍ରଦ୍ଧାଞ୍ଜଳି ନିବେଦନ କରୁଛି ।



# ଇନ୍ଦୁବାବୁ

## 'ପ୍ରଫେସର ରାଧାମୋହନ

କେତେବେଳେ ବଡିଭୋର ବା କେତେବେଳେ ରାତିରେ ଶୋଇଲାବେଳେ ଫୋନ୍ କରିବେ । ଫୋନ୍‌ର ବିଷୟବସ୍ତୁ କେତେବେଳ 'ସମ୍ଭବ'ରେ ଅଁଳାଗଛ ଲାଗିଛି ନା ନାହିଁ, ଅଁଳାଫଳ ହେଲାଣି ନା ନାହିଁ, ଆଉ ଅଁଳାଫଳକୁ କ'ଣ କରୁଛନ୍ତି ଓ ଆଉ କେତେବେଳେ ଶିମିଳିଗଛ କେତେ ଅଛି, ଗାଁ ଲୋକଙ୍କୁ ଦେଇଛନ୍ତି ନା ନାହିଁ; ଗାଁ ଲୋକମାନେ ଶିମିଳିରୁ ତକିଆ, ଶେଯ ଇତ୍ୟାଦି କରି ଦି' ପଇସା ରୋଜଗାର କରିପାରିବେ । ଅନେକ ସମୟରେ ପିଲାମାନଙ୍କ ଦେହପା' କେମିତି ଅଛି, ସମସ୍ତଙ୍କ ଶରୀର କେମିତି ଅଛି - ଏ ବିଷୟରେ ପଗ୍ଭରି ବୁଝିବେ । 'ସମ୍ଭବ'ର ଭଲମନ୍ଦ ଜାଣିବାପାଇଁ ସଦାବେଳେ ଆଗ୍ରହୀ । ବର୍ଷା ବର୍ଷି ଅଛି ନା ନାହିଁ, ଗଛପତ୍ରମାନେ ଖୁସିରେ ଅଛନ୍ତି ନା ନାହିଁ, 'ସମ୍ଭବ' ନିଜଗୋଡ଼ରେ ଠିଆ ହେଲାଣି ନା ନାହିଁ - ଏସବୁ ଜାଣିବାପାଇଁ ବରାବର ଆଗ୍ରହ ପ୍ରକାଶ କରନ୍ତି ।

ଅନେକ ସମୟରେ ଲକ୍ଷ୍ୟ କରିଛି - ଯେଉଁଠି ସାମାନ୍ୟ ନିଷ୍ଠା ସେ ଲକ୍ଷ୍ୟ କରିଛନ୍ତି, ତାକୁ ଉଚ୍ଚସ୍ୱରରେ ପ୍ରଶଂସା କରିଛନ୍ତି ଏବଂ ସେହିପରି ଯେଉଁଠି ନିଷ୍ଠାର ଅଭାବ ଦେଖିଛନ୍ତି - ସେ ସ୍ପଷ୍ଟ ଓ ନିର୍ଭୀକ ଭାବରେ ସମାଲୋଚନା କରିଛନ୍ତି ।

ବରପାଲିରେ 'କ୍ୱେକର' ସ୍ୱେଚ୍ଛାସେବୀମାନଙ୍କ ସହ କାମ କରୁଥିବାବେଳେ 'ବରପାଲି ପାଇଖାନା'ର ଉଦ୍ଭାବନ ସହିତ ସଂପୃକ୍ତ ଥିଲେ । ସଦାବେଳେ ଗାଁଗଣ୍ଡାରେ ପରିଷ୍କାର ପରିଚ୍ଛନ୍ନତା ଉପରେ ସେ ଜୋର୍ ଦେଉଥିଲେ । ଭାରତ ଭଳି ଏକ ପୁରାତନ ସଭ୍ୟଦେଶରେ ରାସ୍ତାଘାଟ, ଖୋଲାପଡ଼ିଆରେ ଆବାଳବୃଦ୍ଧବନିତାଙ୍କର ଝାଡ଼ାଫେରିବା ଦୃଶ୍ୟ ଏବଂ ଏଣେତେଣେ ମଇଳା ଫୋପାଡ଼ିଦେବାର ଅଭ୍ୟାସରେ ସେ ବଡ଼ ବ୍ୟଥିତ ହେଉଥିଲେ ।

ଆଉ ଗୋଟିଏ କଥା ମୋତେ ବହୁତ ଆକର୍ଷିତ କରୁଥାଏ, ସେ ହେଲା ତାଙ୍କର ସମୟାନୁବର୍ତ୍ତିତା । କୌଣସି ସଭାସମିତିକୁ ଡେରିରେ ଯିବା ଆଦୌ ପସନ୍ଦ କରୁନଥିଲେ । ସମୟର ମୂଲ୍ୟ ଭଲଭାବରେ ବୁଝିବା ସମସ୍ତଙ୍କର ଏକାନ୍ତ ଆବଶ୍ୟକ ବୋଲି ବରାବର ସେ କହୁଥିଲେ ।

ତାଙ୍କର ଚିନ୍ତାଧାରା ମୋଟାମୋଟି ଭାବରେ ପ୍ରଗତିଶୀଳ ଓ ଯୁଗୋପଯୋଗୀ ଥିଲା । ପୁରୁଣାକାଳିଆ ଅନ୍ଧବିଶ୍ୱାସ କଥା 'ମୃତ୍ୟୁ ପରେ ସ୍ୱର୍ଗଦ୍ୱାରରେ ସଂସ୍କାରକଲେ ସ୍ୱର୍ଗପ୍ରାପ୍ତି ହୁଏ' - ଏ କଥାକୁ ଦୃଢ଼ଭାବରେ ବିରୋଧ କରୁଥିଲେ ଓ ତାଙ୍କୁ ସ୍ୱର୍ଗଦ୍ୱାର ନିଆଯିବ ନାହିଁ ବୋଲି ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲେ ।

ଥରେ ଗୋଟିଏ କାମରେ ସତ୍ୟଭାମାପୁରରେ ଏକାଠି ହୋଇଥାଉ । କସ୍ତୁରବା ମହିଳା ସମିତି ତରଫରୁ ସେଠାରେ ଅଙ୍ଗନବାଡ଼ି କର୍ମୀମାନଙ୍କର ଏକ ତାଲିମ ଶିବିର ହେଉଥାଏ । ଅଙ୍ଗନବାଡ଼ି କର୍ମୀମାନେ ଛୋଟଛୋଟ ପିଲାମାନଙ୍କୁ ନାଚଗୀତ ମାଧ୍ୟମରେ କିପରି ଶିକ୍ଷାଦାନ କରିପାରିବେ ଓ ପିଲାମାନେ କିପରି ହସଖୁସିରେ ପଢ଼ିପାରିବେ ସେ ବିଷୟରେ ସେ କହୁଥାନ୍ତି । ସେତେବେଳେ ତାଙ୍କର ନାଚ ଓ ଗୀତଗାଇବା ଦେଖି ତାଙ୍କର ବୟସକୁ ନେଇ ପ୍ରକୃତରେ ମନରେ ସଂଶୟ ହେଲା । ଓଡ଼ିଆ ମାଧ୍ୟମରେ ପଢୁଥିବା ପିଲାମାନଙ୍କ ପାଇଁ ଓଡ଼ିଆରେ (ରାଇମ୍) ଶିଶୁଗୀତ ସହ ଅନେକ ଅନେକ ଅତି ଉପାଦେୟ ପୁସ୍ତିକା ସେ ରଚନା କରିଯାଇଛନ୍ତି । ସେଗୁଡ଼ିକ ବହୁଦିନ ଧରି ଆଦୃତ ହୋଇ ଚାଲିବ । 'ନାଟ୍ୟ ଚେତନା' ଦ୍ୱାରା ତାଙ୍କଦ୍ୱାରା ରଚିତ ଗୀତ ଗୁଡ଼ିକର କ୍ୟାସେଟ୍ (ଇନ୍ଦୁ ସାର୍‌ଙ୍କ ଗୀତ) ଅଗଣିତ ଛାତ୍ରଛାତ୍ରୀମାନଙ୍କୁ ଓ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ମଧ୍ୟ ପ୍ରେରଣା ଦେଉଥିବ ।

ଯେବେବି ଘରକୁ ଡାକିବେ, ଅତି ଆତ୍ମୀୟତାର ସହ 'ଖାଇବାକୁ' ଡାକିବାଟା ନିଶ୍ଚୟ ଶୁଣିବାକୁ ମିଳିବ । ଏତେ ଶ୍ରଦ୍ଧା ସମସ୍ତଙ୍କୁ ଖାଇବାକୁ ଦେବାରେ । ଇନ୍ଦୁବାବୁ ଖାଇବାକୁ ନିମନ୍ତ୍ରଣ କରିବାରେ ଯେମିତି ତତ୍ପର, ତାଙ୍କ ସ୍ତ୍ରୀ ତାଙ୍କଠୁ ଅଧିକ ବଳେଇ ଯାଆନ୍ତି - ସମସ୍ତଙ୍କୁ ଅତି ଆପଣାର ଭାବି ଖାଇବାକୁ ଦିଅନ୍ତି । କିଏ କାହାକୁ ଊଣା ନୁହଁନ୍ତି ।

ଦେଶରେ ଚାଲିଥିବା ଦୁର୍ନୀତି ଓ ଓଡ଼ିଶାର ବ୍ୟାପକ ଦାରିଦ୍ର୍ୟ ତାଙ୍କୁ ସଦାବେଳେ ଚିନ୍ତିତ କରୁଥିଲା । ଶିକ୍ଷାରେ କିପରି ଉନ୍ନତି ଘଟିବ, ନାରୀଶିକ୍ଷାର କିପରି ଅଧିକା ପ୍ରସାର ହେବ, ବିଶେଷକରି ଝିଅମାନେ କିପରି ସ୍କୁଲକୁ ଆସି ପଢ଼ିବେ ଓ ରୋଜଗାରକ୍ଷମ ହୋଇପାରିବେ, ସେ ବିଷୟରେ ସେ ବରାବର ଭାବୁଥିଲେ ।

ତାଙ୍କୁ ହରେଇ ଆମେ ଜଣେ ସ୍ନେହୀ, ଦରଦୀ ଓ ପ୍ରଗତିଶୀଳ ତଥା ମାନବବାଦୀ ମଣିଷଙ୍କୁ ହରାଇଛେ । ସେ ଆମପାଇଁ ସଦାବେଳେ ଉତ୍ସାହର ଉତ୍ସହୋଇ ରହିବେ ।



# ଅଭୁଲା ସ୍ମୃତି

## ରଘୁନାଥ ପୂଜାରୀ

ପ୍ରାୟ ୫୦ବର୍ଷର ସଂପର୍କ ଭିତରେ ଇନ୍ଦୁବାବୁଙ୍କୁ ମୁଁ ବିଭିନ୍ନ ଭାବରେ ଓ ବିଭିନ୍ନ କ୍ଷେତ୍ରରେ ଦେଖିଛି । ମୋପାଇଁ ସେ ଥିଲେ ସ୍ନେହ ଓ ଶ୍ରଦ୍ଧାର ପ୍ରତୀକ । ତାଙ୍କର ଅନୁପସ୍ଥିତିରେ ତାଙ୍କ ବିଷୟରେ କେତେଗୁଡ଼ିଏ ଅତୀତର 'ଅନୁଭୂତି ମୋ ମନ ଭିତରେ ଉଙ୍କିମାରୁଛି । ପିତୃପ୍ରତିମ ସ୍ୱର୍ଗତ ମିଶ୍ରଙ୍କର ଗୁଣଗାନ କରିବା ବା ବିଭିନ୍ନ କ୍ଷେତ୍ରରେ ତାଙ୍କର ଅବଦାନକୁ ଆକଳନ କରିବା କାହା ପକ୍ଷରେ ସମ୍ଭବ ହେବନାହିଁ । ତାଙ୍କର ଜୀବିତାବସ୍ଥାରେ ତାଙ୍କର ଆତ୍ମଜୀବନୀ ପ୍ରକାଶ ପାଇପାରିଲା ନାହିଁ । ବାର୍ଦ୍ଧକ୍ୟ ଅବସ୍ଥାରେ ସେ ନିଜେ ଲେଖିପାରୁନଥିବାରୁ ବିଭିନ୍ନ ସମୟରେ ମୋର ଭୁବନେଶ୍ୱର ରହଣି ସମୟରେ ସେ ଯାହା ଡାକି ଦେଇଛନ୍ତି, ମୁଁ ଲେଖିଛି । ଉକ୍ତ ପାଣ୍ଡୁଲିପି ପ୍ରକାଶପାଇଲେ ତାଙ୍କ ଜୀବନର ଅନେକ ଅନୁଭୂତି ଲୋକଲୋଚନକୁ ଆସିପାରିବ ଓ ତାହା ସମସ୍ତଙ୍କ ପାଇଁ ହେବ ଶିକ୍ଷଣୀୟ । ଇନ୍ଦୁବାବୁଙ୍କ ସହିତ ପରିଚୟ ଓ ସାନ୍ନିଧ୍ୟଲାଭ କରିବାର ସୁଯୋଗ ମୁଁ ଆମଗାଁ ବରପାଲିରେ ଛାତ୍ରଥିବା ସମୟରେ ପାଇଥିଲି ଓ ମୋର ସ୍ୱର୍ଗତ ପିତା ତାଙ୍କ ଝିଅମାନଙ୍କୁ ସ୍କୁଲରେ ତଥା ଘରୋଇ ଭାବରେ ଶିକ୍ଷାଦାନ କରିଥିବାରୁ ଆମର ସଂପର୍କ ପାରିବାରିକ ସଂପର୍କ ଏବଂ ତାଙ୍କର ମୃତ୍ୟୁପର୍ଯ୍ୟନ୍ତ ତାହାଥିଲା ଅବିଚ୍ଛିନ୍ନ । ସ୍ୱର୍ଗତ ମିଶ୍ରଙ୍କର ମୃତ୍ୟୁପରେ ମଧ୍ୟ ତାଙ୍କର ଧର୍ମପତ୍ନୀ, ପୁଅ, ବୋହୂ, ଝିଅ, ଜ୍ୱାଇଁ, ନାତିନାତୁଣୀମାନେ ମୋତେ ତାଙ୍କର ପରିବାରର ସଦସ୍ୟ ଭାବରେ ବିବେଚନା କରନ୍ତି ।

A.F.S.C. (ଆମେରିକାନ୍ ବନ୍ଧୁ ସେବାସଙ୍ଘ) ଆମେରିକାରେ ଥିବା କୁଏକର ସଂପ୍ରଦାୟର ଗୋଟିଏ ସେବା ଅନୁଷ୍ଠାନ । ଅନୁଷ୍ଠାନଟି ମାନବ ସମାଜରେ ଶାନ୍ତିର ପ୍ରତିଷ୍ଠାପାଇଁ, ବିଭିନ୍ନ ଦେଶ ମଧ୍ୟରେ ବୁଝାମଣା ଓ ଭ୍ରାତୃତ୍ୱ ଭାବର ସୁସ୍ଥ ବାତାବରଣ ସୃଷ୍ଟି କରିବାପାଇଁ, ଯୁଦ୍ଧ ଦୈବୀଦୁର୍ବିପାକରେ ବିପନ୍ନ ଲୋକମାନଙ୍କୁ ସାହାଯ୍ୟ ବଣ୍ଟନ କରିବାପାଇଁ କାର୍ଯ୍ୟକରିବା ସଂଗେସଂଗେ ଖୁବ୍ ଅଳ୍ପଜାଗାରେ ଗୋଷ୍ଠୀଉନ୍ନୟନ ଯୋଜନା ମଧ୍ୟ କରିଥାଏ । ସେଥିମଧ୍ୟରୁ ଅବିଭକ୍ତ ସମ୍ବଲପୁର ଜିଲ୍ଲା ତଥା ବର୍ତ୍ତମାନ ବରଗଡ଼ ଜିଲ୍ଲା ଅନ୍ତର୍ଗତ ବରପାଲି ପ୍ରୋଜେକ୍ଟ ଗୋଟିଏ । ସ୍ୱର୍ଗତ ଇନ୍ଦୁବାବୁ ଥିଲେ ଗାନ୍ଧିବାଦୀ । A.F.S.C.ର ଗ୍ରାମ ଉନ୍ନୟନମାର୍ଗ ଗାନ୍ଧିଜୀଙ୍କ ଗ୍ରାମ ସଂଗଠନ ନୀତିର ଅନୁରୂପ ଥିଲା ବୋଲି ବୁଝିପାରିବା

ପରେ ସେ ସରକାରୀ ଚାକିରିରୁ ଯାଇ ସାଢ଼େ ଚାରିବର୍ଷ ତାଙ୍କ ସହିତ ବରପାଲିରେ Village Participation ଏବଂ ଗ୍ରାମ ସାଥୀମାନଙ୍କର ଟ୍ରେନିଂ ଅଫିସର ଭାବରେ କାର୍ଯ୍ୟ କରିଥିଲେ ।

ବରପାଲି ଅଞ୍ଚଳ ସଭ୍ୟତା ଓ ସଂସ୍କୃତି ବରପାଲି ଅଞ୍ଚଳର ପ୍ରତୀକ ଥିଲା । ବରପାଲି ଲୋକେ ବିଦେଶୀ ସଂସ୍ଥାର ଲୋକମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ପ୍ରଚାର ହେଲା ଯେ ଭାରତ ସରକାର ବରପାଲି ଜମିଦାରୀକୁ ଆମେରିକା ସରକାରଙ୍କୁ ବିକ୍ରିକରି ଦେଉଛନ୍ତି । ଲୋକଙ୍କ ମନରେ ଥିବା ଏଇ ଭ୍ରାନ୍ତଧାରଣା ଦୂର କରିବାରେ ଇନ୍ଦୁବାବୁଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ବରପାଲି ପାଇଖାନା ବ୍ୟବହାର କରିବା ଭାରତୀୟ ସଂସ୍କୃତିର ପରିପନ୍ଥୀ ନୁହଁ ବୋଲି ବରପାଲି ପାଇଖାନା ବ୍ୟବହାର ନ କରିବାକୁ ପ୍ରଚାର ହେବାପରେ ଇନ୍ଦୁବାବୁ ଗାଁ ଗାଁ ବୁଲି ଲୋକମାନଙ୍କୁ ବୁଝାଇବା ପରେ ସମସ୍ତେ ବରପାଲି ପାଇଖାନା ବ୍ୟବହାର କରିବା ଆରମ୍ଭ କଲେ । ଗାନ୍ଧିବାଦୀ ଭାବରେ ଅସ୍ପୃଶ୍ୟତା ନିବାରଣ ଓ କୁଷ୍ଠରୋଗୀମାନଙ୍କର ସେବାକରିବା ଇନ୍ଦୁବାବୁଙ୍କର ଥିଲା ଏକ ମହତ୍ କାର୍ଯ୍ୟ ।

ବରପାଲି ଅଞ୍ଚଳରେ କାର୍ଯ୍ୟ କରୁଥିବା ସମୟରେ ଇନ୍ଦୁବାବୁ ଆମେରିକୀୟ ଏବଂ ଅନ୍ୟାନ୍ୟ ବିଦେଶାଗତ ବନ୍ଧୁଙ୍କର କଠିନ ପରିଶ୍ରମ, ନିଷ୍ଠା, ଜୀବନର ଆଦର୍ଶପ୍ରତି ପ୍ରତିଜ୍ଞାବଦ୍ଧତା ଆଦି ଗୁଣଦ୍ୱାରା ବହୁଳ ଭାବରେ ପ୍ରଭାବିତ ହୋଇଥିଲେ । ଆମେରିକା ବନ୍ଧୁ ସେବାସଂଘ ପ୍ରଜେକ୍ଟରେ ତାଙ୍କର କାମଥିଲା, ଗାଁର ଲୋକମାନେ ନିଜର ଅବସ୍ଥା ଓ ସୁଖଦୁଃଖ ବୁଝି ସେମାନଙ୍କର ସମସ୍ୟାର ସମାଧାନ ଦିଗରେ ସେମାନଙ୍କ ମଧ୍ୟରେ ଚେତନା ଜାଗ୍ରତ କରାଇବା । ଏ ଦିଗରେ ବୌଦ୍ଧିକ ଦୃଷ୍ଟିରୁ ସେ କେନ୍ଦ୍ରର ଡାକ୍ତର, କୃଷିବିତ୍ ମାନଙ୍କର କାର୍ଯ୍ୟକ୍ରମ ଅନୁସାରେ ଲୋକମାନଙ୍କ ମଧ୍ୟରେ ତାଙ୍କର କାର୍ଯ୍ୟପନ୍ଥା ତଥା କୌଶଳ ନିର୍ଦ୍ଧାରିତ କରୁଥିଲେ । ତଦନୁଯାୟୀ ଗ୍ରାମସାଥୀମାନଙ୍କୁ ତାଙ୍କର କର୍ମକ୍ଷେତ୍ରରେ ଦିଗ୍‌ଦର୍ଶନ ଦେଉଥିଲେ ଏବଂ କେନ୍ଦ୍ରରେ ସେମାନଙ୍କର ସକଳ ପ୍ରକାରର ତାଲିମର ବ୍ୟବସ୍ଥା କରୁଥିଲେ । ନାଁ କୁ ମାତ୍ର ସେ ସାଧାରଣ ଶିକ୍ଷା ଦାୟିତ୍ୱରେ ଥିଲେ, ଏବଂ ବିଦ୍ୟାଳୟଶିକ୍ଷା ଦିଗରେ ତାଙ୍କର ସେପରି କିଛି କହିବାର ନଥିଲେ ମଧ୍ୟ ଥରେ ଦୁଇଥର Children's Sports, ଥରେ ଦୁଇଥର ଅଣଛାତ୍ର ଗ୍ରାମବାସୀମାନଙ୍କ ମଧ୍ୟରେ କ୍ରୀଡ଼ା ପ୍ରତିଯୋଗିତା କରାଇଥିବାର ମୁଁ ଦେଖିଛି । ଏଥିରେ ପୁରସ୍କାର ଦିଆଯାଇଥିବା ପୁରସ୍କାର ଗୁଡ଼ିକ ଗ୍ରାମବାସୀମାନଙ୍କଠାରୁ ଆଦାୟ କରାଯାଇଥିଲା । ଥରେ ୫୦ଜଣ ପ୍ରାଥମିକ ଶିକ୍ଷକଙ୍କୁ 'ବନ୍ଧୁ ସେବାସଙ୍ଘ' କେନ୍ଦ୍ରରେ ପନ୍ଦରଦିନ ରଖି ନାନାବିଷୟରେ ବୌଦ୍ଧିକ ଶିକ୍ଷାଦେବା ଛଡ଼ା ସେମାନଙ୍କୁ ନାନାପ୍ରକାର ଗୀତ, ନାଚ ଇତ୍ୟାଦି ଶିକ୍ଷା ଦେବାରେ ଇନ୍ଦୁବାବୁଙ୍କ ଭୂମିକା ଯେ ଦେଖିନାହିଁ, ସେ ସହଜରେ ବିଶ୍ୱାସ କରିପାରିବ ନାହିଁ । ଏହା ବ୍ୟତୀତ ଖାଦ୍ୟ ସ୍ୱାସ୍ଥ୍ୟ ବିଷୟରେ ଲୋକଙ୍କୁ ବୁଝାଇବା ପାଇଁ ସେବାସଂଘର ଡାକ୍ତର କିଛିକିଛି

ପ୍ଲାକାର୍ଡ଼ ଏବଂ ଚାର୍ଟ ମହିଳା ସ୍ୱାସ୍ଥ୍ୟକର୍ମୀମାନଙ୍କ ଜରିଆରେ ପ୍ରାଇମେରୀ ସ୍କୁଲମାନଙ୍କରେ ଏବଂ ଗ୍ରାମର ମହିଳାମାନଙ୍କ ମଧ୍ୟରେ ବ୍ୟବହାର କରୁଥିଲେ । ଇନ୍ଦୁବାବୁ ଏ ବିଷୟରେ ଚିନ୍ତାକରି ଅଧିକ ଶିକ୍ଷା ଉପକରଣ ସଂଗ୍ରହ ଏବଂ ତିଆରି ଦିଗରେ ଲାଗି ପଡ଼ିଥିଲେ । ପୋଷ୍ଟର ଠାରୁ ଆରମ୍ଭକରି ପ୍ରାମାଣିକ ଚଳଚ୍ଚିତ୍ର ପର୍ଯ୍ୟନ୍ତ ବହୁତ ଦୃଶ୍ୟ-ଶ୍ରାବ୍ୟ ଉପକରଣ ବ୍ୟବହାର କରୁଥିଲେ । ଡାକ୍ତରମାନେ କ୍ଲିନିକ୍‌ରେ କାମ କରିବା ସମୟରେ ସେ ଲୋକମାନଙ୍କୁ ପୋଷ୍ଟର ପ୍ଲାକାର୍ଡ଼ ଓ Film Strips ଜରିଆରେ ଖାଦ୍ୟ ଓ ସ୍ୱାସ୍ଥ୍ୟ ବିଷୟରେ ଶିକ୍ଷା ଦେଉଥିଲେ । ଇନ୍ଦୁବାବୁଙ୍କର ଆଉ ଏକ ମହତ୍‌କାର୍ଯ୍ୟ ଥିଲା ଗାଁ ଲୋକଙ୍କ ପାଇଁ ଗୋଟିଏ ହାତଲେଖା ମେଗାଜିନ୍ Cyclostyle କରି ଗ୍ରାମସାଥୀମାନଙ୍କ ଜରିଆରେ ବାଣ୍ଟିବାରେ ବ୍ୟବସ୍ଥା କରିବା ସେ ଗୁଡ଼ିକରେ ଋଷବାସ, ଖାଦ୍ୟ, ସ୍ୱାସ୍ଥ୍ୟ ବିଷୟରେ ସରଳ ଭାଷାରେ ଲୋକମାନଙ୍କ ଋହିଦାକୁ ଋହିଁ ଲେଖାମାନ ବାହାରୁଥାଏ ।

ବରପାଲି ଅବସ୍ଥାନ ସମୟରେ ସ୍ୱର୍ଗତ ଇନ୍ଦୁବାବୁଙ୍କ ସ୍ତ୍ରୀ ଜଣେ ସ୍ୱାସ୍ଥ୍ୟକର୍ମୀ ହିସାବରେ କେନ୍ଦ୍ରରେ ଥିବା କ୍ଲିନିକ୍‌ରେ କାମ କରିବା ସଂଗେସଂଗେ ସାଇକଲ୍‌ରେ ଯାଇ ଗାଁମାନଙ୍କର ଛାତ୍ର ତଥା ମହିଳାମାନଙ୍କୁ ସ୍ୱାସ୍ଥ୍ୟ ସମ୍ବନ୍ଧରେ ବୁଝାଉଥିଲେ ଏବଂ ସ୍ତ୍ରୀମାନଙ୍କୁ ପ୍ରସବ ସମୟରେ ସାହାଯ୍ୟ କରୁଥିଲେ । ସ୍ୱାମୀ ଓ ସ୍ତ୍ରୀ ଦୁଇଜଣ କାର୍ଯ୍ୟରେ ବ୍ୟସ୍ତ ରହୁଥିବାରୁ ଘରର ରନ୍ଧାବଢ଼ା କାର୍ଯ୍ୟରେ ସାହାଯ୍ୟ କରିବାପାଇଁ ଜଣେ ଦଳିତ ସ୍ତ୍ରୀଲୋକ ତାଙ୍କଘରେ ରନ୍ଧାବଢ଼ା କାର୍ଯ୍ୟ କରୁଥିଲା । ଗାଁ କାମରେ ମହିଳା ସ୍ୱାସ୍ଥ୍ୟକର୍ମୀ ଏବଂ ସେମାନଙ୍କର ଶିକ୍ଷୟିତ୍ରୀ ଏବଂ ନେତ୍ରୀ ବେଲା ବାନାର୍ଜୀ ବହୁତ ଲୋକପ୍ରିୟତା ଅର୍ଜନ କରିଥିଲେ । ବେଲା ବାନାର୍ଜୀ ବରପାଲିରେ ଦଶବର୍ଷ କାର୍ଯ୍ୟ କରିସାରିବା ପରେ ମଧ୍ୟପ୍ରଦେଶ, କେରଳ ଆଦିର ସେବା ଅନୁଷ୍ଠାନ ଗୁଡ଼ିକରେ କାର୍ଯ୍ୟକରି ଲୋକପ୍ରିୟତା ଅର୍ଜନ କରିଥିଲେ । ତାପରେ ସ୍ୱର୍ଗତ ମିଶ୍ରଙ୍କର ପରାମର୍ଶରେ ଓଡ଼ିଶାରେ କାମ କରିଥିଲେ । ଇନ୍ଦୁବାବୁ ତାଙ୍କୁ ରମ୍ଭାଦେବୀଙ୍କର ଜିମାକରାଇ ଦେଇଥିଲେ । ସେ ହରିଦାସପୁରରେ କିଛିଦିନ ରହିବାପରେ ରମ୍ଭାଦେବୀ ତାଙ୍କୁ ମା' ରମାଦେବୀଙ୍କ ପାଖରେ ସମର୍ପଣ କରିଦେଲେ । ବେଲାଦିଦି କସ୍ତୁରବା ଟ୍ରଷ୍ଟର ପ୍ରତିନିଧି ହିସାବରେ ତିନିବର୍ଷ କାଳ କାମକରିବା ପରେ ସ୍ୱାସ୍ଥ୍ୟହାନି ଘଟିବାରୁ ଚିକିତ୍ସିତ ହେବାପାଇଁ ଇନ୍ଦୁବାବୁଙ୍କ ବାପୁଜୀନଗରରେ ରହୁଥିବାର ମୁଁ ଦେଖିଛି । ଆମେରିକାନ୍ 'ବନ୍ଧୁ ସେବାସଂଘ'ରେ ବେଲାଦିଦି କାର୍ଯ୍ୟ କରୁଥିବା ସମୟରେ Dr. Abbot ଏବଂ ତାଙ୍କ ସ୍ତ୍ରୀ ମଧ୍ୟ କାର୍ଯ୍ୟ କରୁଥିଲେ । ତାଙ୍କର ପରାମର୍ଶ ଅନୁସାରେ ଓ ସେମାନଙ୍କ ଖର୍ଚ୍ଚରେ ବେଲାଦିଦି ଚିକିତ୍ସା ପାଇଁ ଆମେରିକା ଗଲେ । ସେଠି ଅନ୍ୟ ଏକ ଆମେରିକାନ୍ ଦମ୍ପତିଙ୍କ ଚେଷ୍ଟାଫଳରେ ମଧ୍ୟରେ ଆରୋଗ୍ୟ ହୋଇପାରିଲେ ନାହିଁ ଏବଂ ସେଠାରେ ଶେଷନିଶ୍ୱାସ ତ୍ୟାଗକଲେ । ତାଙ୍କର ମୃତ୍ୟୁପରେ ଉକ୍ତ ଆମେରିକାନ୍ ଦମ୍ପତି ଭାରତ ଆସି ତାଙ୍କ ଉଦ୍ଦେଶ୍ୟରେ ଥିବା ଟ.୬୨,୦୦୦/- ବେଲାଦିଦିଙ୍କର ସ୍ମୃତି

ଉଦ୍ଦେଶ୍ୟରେ ଦାନ କରିବାପାଇଁ ଇନ୍ଦୁବାବୁଙ୍କ ପରାମର୍ଶ ଲୋଡ଼ିଥିଲେ । ଇନ୍ଦୁବାବୁଙ୍କ ପରାମର୍ଶରେ ସେ ଅର୍ଥକୁ ସତ୍ୟଭାମାପୁର କସ୍ତୁରବା ଗାନ୍ଧୀ ମେମୋରିଆଲ୍ ଟ୍ରଷ୍ଟକୁ ଗୋଟିଏ ନିର୍ଦ୍ଦିଷ୍ଟ ସେବା ଉଦ୍ଦେଶ୍ୟରେ ଦାନ କରାଯାଇଅଛି । ଇନ୍ଦୁବାବୁଙ୍କ ନିସ୍ୱାର୍ଥପରତାର ଏହା ଏକ ଜ୍ୱଳନ୍ତ ଉଦାହରଣ ।

ସ୍ୱର୍ଗତ ମିଶ୍ରଙ୍କ ପରି ନିଃସ୍ୱାର୍ଥପର, ସରଳ ଓ ଶୃଙ୍ଖଳାପ୍ରିୟ ବ୍ୟକ୍ତିଙ୍କର ସାନ୍ନିଧ ସମସ୍ତଙ୍କ ଭାଗ୍ୟରେ ନଥାଏ । ତାଙ୍କ ସଂପର୍କରେ ଆସି ମୁଁ ନିଜକୁ ଭାଗ୍ୟବାନ୍ ମନେକରେ । ସମ୍ବଲପୁରରୁ ଆସିଲେ ମୁଁ ତାଙ୍କ ଘରେ ରୁହେ । ତାଙ୍କ ସହିତ କଥାବାର୍ତ୍ତା କରିବା ସମୟରେ ଓ ତାଙ୍କ ଆତ୍ମଜୀବନୀର ପାଣ୍ଡୁଲିପି ପ୍ରସ୍ତୁତ କରିବା ସମୟରେ ଯାହା ମୋର ଅଭିଜ୍ଞତା ସେ ଗୁଡ଼ିକ ହେଲା-

ସେ ଥିଲେ ଜଣେ ଅନୁଷ୍ଠାନ - ଏକ ସ୍ୱତନ୍ତ୍ର ବ୍ୟକ୍ତି ଏବଂ ଅନନ୍ୟ ପ୍ରତିଭା । ନିଃସ୍ୱାର୍ଥପର ଭାବରେ ସମସ୍ତଙ୍କୁ ସାହାଯ୍ୟ କରିଛନ୍ତି, ଉପଦେଶ ଦେଇଛନ୍ତି ଏବଂ ଅସୁବିଧାରେ ଠିଆ ହୋଇଛନ୍ତି । ପରୋପକାରୀ ଶବ୍ଦଟି ତାଙ୍କପ୍ରତି ଯଥାର୍ଥରେ ପ୍ରଯୁଜ୍ୟ । ଜଟିଳ ଓ ଗୂଢ଼ତଥ୍ୟକୁ ସରଳ ଓ ସର୍ବବୋଧ ଭାଷାରେ ପ୍ରକାଶ କରିବାକୁ ତାଙ୍କର ଲେଖନୀ ଥିଲା ସମର୍ଥ, ସ୍ୱଚ୍ଛ ଓ ଶାଣିତ । ସେ ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ, ଲେଖକ, ଦେଶପ୍ରେମୀ, ସମାଜସେବୀ । ତାଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ଗୁଣ ମଧ୍ୟରେ ନମ୍ରତା ଓ ଆତିଥ୍ୟସତ୍କାର ଏବଂ ବିପଦରେ ଓ ଅସହାୟ ଅବସ୍ଥାରେ ପଡ଼ିଥିବା ମଣିଷମାନଙ୍କୁ ସାହାଯ୍ୟ ଶ୍ରେଷ୍ଠ ଥିଲା । ଇଂରାଜୀ ମାଧ୍ୟମ ସ୍କୁଲପ୍ରତି ସେ ଥିଲେ ବୀତସ୍ପୃହ । ତାଙ୍କ ଘରକୁ କୌଣସି ଇଂରାଜୀମାଧ୍ୟମ ସ୍କୁଲରେ ପଢୁଥିବା ଛାତ୍ରଛାତ୍ରୀ ଆସିଲେ, ସେ ନିଜେ ଓଡ଼ିଆ ରାଇମ୍ ବୋଲୁଥିଲେ । ତାଙ୍କଦ୍ୱାରା ଲିଖିତ 'ଗୀତ ଗଙ୍ଗୁଡ଼ି' ଏକ ଓଡ଼ିଆ ରାଇମ୍ ପୁସ୍ତକ । ଏହା ବହୁଳ ଭାବରେ ପ୍ରଚାରିତ ହେଲେ ବହୁ ଛାତ୍ରଛାତ୍ରୀ ଉପକୃତ ହେବା ସଂଗେସଂଗେ ଆମ ଉତ୍କଳୀୟ ପରମ୍ପରା ବିଷୟରେ ଅବଗତ ହେବେ ।



# ଇନ୍ଦୁବାବୁଙ୍କ ସମ୍ବନ୍ଧରେ ମୋର ଅନୁଭୂତିରୁ କିଛି

## ହରିହର ମିଶ୍ର

ଖ୍ରୀ. ୧୯୬୨ ମଧ୍ୟଭାଗରେ ପୃଥ୍ୱୀରାଜ ହାଇସ୍କୁଲ, ବଲାଙ୍ଗୀରରେ ପ୍ରଧାନଶିକ୍ଷକ ସ୍ଥାନ ଖାଲି ପଡ଼ିଥିବାରୁ ଉକ୍ତ ସ୍କୁଲର ବରିଷ୍ଠତମ ସହକାରୀ ଶିକ୍ଷକ ହିସାବରେ ମୁଁ ସରକାରୀ ନିର୍ଦ୍ଦେଶରେ ପ୍ରଧାନଶିକ୍ଷକ ଦାୟିତ୍ୱରେ ୫/୬ମାସ ପର୍ଯ୍ୟନ୍ତ ରହିଲି । ସେତେବେଳେ ଇନ୍ଦୁଭୂଷଣ ମିଶ୍ର 'ବରପାଲି' ଗ୍ରାମରେ ଆମେରିକାନ୍ ଫ୍ରେଣ୍ଡସ୍ ସୋସାଇଟିରେ ରହି ସମାଜସେବା ଆଦି କାର୍ଯ୍ୟ କରୁଥିଲେ । ୧୯୬୩ ଜାନୁଆରୀରେ ସେଠାରୁ ପୃଥ୍ୱୀରାଜ ହାଇସ୍କୁଲକୁ ପ୍ରଧାନଶିକ୍ଷକ ରୂପେ ତାଙ୍କର ବଦଳି ହେଲା । ତାଙ୍କଠାରୁ ମୁଁ ବ୍ୟକ୍ତିଗତ ଚିଠିଖଣ୍ଡେ ପାଇ ସେ କେବେ ଏଠାକୁ ସପରିବାର ଆସିବେ, ତାଙ୍କ ଜିନିଷପତ୍ର ଟ୍ରକ୍‌ରେ କେବେ ଆସିବ ଇତ୍ୟାଦି ସବୁକଥା ଜାଣିଲି ଓ ପି.ଡବ୍ଲ୍ୟୁ.ଡି.କୁ ଲେଖି ହେଡ୍‌ମାଷ୍ଟର କ୍ୱାର୍ଟର୍ସକୁ ସଫାସୁତୁରା କରାଇଦେଲି । ଯଥା ସମୟରେ ତାଙ୍କର ଜିନିଷପତ୍ର ଆସିଲା ଓ ନିର୍ଦ୍ଦିଷ୍ଟଦିନ ଉପରଓଳି ସେ ସକୁଟୁମ୍ବ ଆସିଲେ । ମୁଁ ତାଙ୍କୁ ଆଗରୁ କେବେ ଦେଖିନଥିଲି, ନୂଆକରି ତାଙ୍କୁ ଦେଖିଲି ଓ ନିଜର ପରିଚୟ ଦେଲି । ସେ ଖୁସିହେଲେ । ଏବେ ଆଜି ତାଙ୍କୁ ଦେଖିଲାପରି ଲାଗୁଛି- ଗୋରାଦେହ, ସୁନ୍ଦର ଚେହେରା, ହସହସ ମୁହଁ, ଖଦଡ଼ଧୋତି ସାଂଗକୁ ନେହେରୁବନ୍ଦି ବା ଖଦଡ଼କୋଟ - ଠିକ୍ ମନେପଡୁନାହିଁ । କଥାରେ ଅଛି - "ଯତ୍ର କୃତିଃ ତତ୍ର ଗୁଣାଃ ବସନ୍ତି" - ଅର୍ଥାତ୍ ରୂପ ଯେଉଁଠିଥାଏ, ଗୁଣ ସେଇଠି ଥାଏ । ଆମେ ସମସ୍ତେ ଦେଖି ଆନନ୍ଦିତ ହେଲୁ । କ୍ୱାର୍ଟର୍ସରେ ରହିବାର ସୁବନ୍ଦୋବସ୍ତ ହୋଇ ସାରିଥାଏ । ସମସ୍ତେ ଖୁସିରେ ରହିଲେ । ମୁଁ କହିଲି "ସାର୍ ଏ ଓଳିଟି ଏଠାରେ ଆଉ କାହିଁକି ରୋଷେଇବାସ କରିବା, ଆମେ ତାର ବନ୍ଦୋବସ୍ତ କରିଦେଉଛୁ । ଆହା ! କି ଉଦାରଲୋକ, ସେ ହସିଦେଇ କହିଲେ "ଯଥା ଆପଣଙ୍କ ଇଚ୍ଛା" । ଏଥିରେ ଆମ ଉଭୟ ପରିବାରର ଚିହ୍ନା ପରିଚୟ ହୋଇଗଲା ଏବଂ ସେଦିନରୁ ଆଜି ପର୍ଯ୍ୟନ୍ତ ସେହି ସ୍ନେହବନ୍ଧନ ଲାଗିରହିଛି ।

ତା ପରଦିନ ଦୁହେଁ ଏକାସାଂଗରେ ସ୍କୁଲକୁ ଚାଲିକରି ଗଲୁ । ସବୁ ଶିକ୍ଷକଙ୍କ ସାଂଗରେ ତାଙ୍କର ପରିଚୟ ହୋଇଗଲା । ପ୍ରତି ଶ୍ରେଣୀକକ୍ଷକୁ ଯାଇ ମଧ୍ୟ "ଆମ ନୂଆ ହେଡମାଷ୍ଟର ଆସିଲେ" ବୋଲି ମୁଁ ଚିହ୍ନାଇ ଦେଲି । ସେଦିନ ଟିକିଏ ଆଗରୁ ସ୍କୁଲଛୁଟି

କରି ଶିକ୍ଷକମାନଙ୍କର ମିଟିଂ ଗୋଟିଏ ବସିଲା । ସେଠାରେ ଇନ୍ଦୁବାବୁ ବରପାଲିରେ ଆମେରିକାନ୍ ଫ୍ରେଣ୍ଡସ୍ ସୋସାଇଟିରେ ତାଙ୍କର କିଛି ଅଭିଜ୍ଞତା କହିସାରି ସ୍କୁଲ ପରିଚାଳନାରେ ସମସ୍ତଙ୍କର ପୂର୍ଣ୍ଣ ସହଯୋଗ କାମନା କଲେ ।

ତହିଁପରଦିନ ଦେଖାଗଲା ଯେ ସେ ପ୍ରଥମେ ପିଲାମାନଙ୍କ ପ୍ରାର୍ଥନାସଭାରେ ହାଜର । ନିଜେ ମଧ୍ୟ ପ୍ରାର୍ଥନା ଗୀତଟିଏ ଗାଇଲେ । ପ୍ରତିଦିନ ନିୟମିତ ଏହିପରି ଚାଲିଲା । ତାଙ୍କର ସ୍କୁଲ ପରିଚାଳନା ଓ ବ୍ୟବହାରରେ ଶିକ୍ଷକ, ଛାତ୍ର ତଥା ଅଭିଭାବକମାନେ, ସମସ୍ତେ ସନ୍ତୁଷ୍ଟ ଥିଲେ । ମୁଁ ତାଙ୍କ ଅଧୀନରେ ଆଉ ପ୍ରାୟ ମାସେ ଦେଢ଼ମାସ କାର୍ଯ୍ୟକରି ପଦୋନ୍ନତିରେ ବଦଳି ହୋଇ ସ୍ଥାନୀୟ ଗୁରୁଟ୍ରେନିଂ ସ୍କୁଲ (E.T. School)କୁ ମାର୍ଚ୍ଚ ୬୩ରେ ହେଡ୍‌ମାଷ୍ଟର ହୋଇ ଚାଲିଗଲି । ମୁଁ ଅବଶ୍ୟ ପୃଥ୍ୱୀରାଜ ହାଇସ୍କୁଲର ଏନ୍.ସି.ସି. ଅଫିସର ଥିବାରୁ ତାଙ୍କ ଅଧୀନରେ ଆଉ ପ୍ରାୟ ବର୍ଷେ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲି । ତାପରେ ଏନ୍.ସି.ସି. ମଧ୍ୟ ଛାଡ଼ିଲି । ଟ୍ରେନିଂ ସ୍କୁଲଟି ପୃଥ୍ୱୀରାଜ ହାଇସ୍କୁଲର ଠିକ୍ ସାମନାରେ ଅବସ୍ଥିତ । ଦୁଇ ସ୍କୁଲ ମଧ୍ୟରେ କେବଳ ବଲାଙ୍ଗୀର-ସମ୍ବଲପୁର ସଡ଼କ ଅଛି । ତେଣୁ ପ୍ରତିଦିନ ଇନ୍ଦୁବାବୁଙ୍କ ସହିତ ମୋର ଦେଖାସାକ୍ଷାତ ହେଉଥିଲା । ଇନ୍ଦୁବାବୁଙ୍କ କଥା ଓ କାର୍ଯ୍ୟରେ ନିଷ୍କପଟତା ବିଚାରର ପରିପକ୍ୱତା ଓ ମନୁଷ୍ୟତା ଦୃଷ୍ଟିରୁ ତାଙ୍କର ମହାନତାର ନିଦର୍ଶନ ଅନେକ କ୍ଷେତ୍ରରେ ମୁଁ ଲକ୍ଷ୍ୟକରିଛି ।

ଇନ୍ଦୁବାବୁ ଖାଲିଜଣେ କୃତୀଶିକ୍ଷକ ବା ଆଦର୍ଶ ଶିକ୍ଷକ ନଥିଲେ । ତାଙ୍କର ବିରାଟ ବ୍ୟକ୍ତିତ୍ୱ ଥିଲା । ସେ ଥିଲେ ସ୍ନେହ, ପ୍ରେମ ଓ ଶ୍ରଦ୍ଧାର ଏକ ପ୍ରତିମୂର୍ତ୍ତି । ପରକୁ ଆପଣା କରିବାରେ, ପରର ଦୁଃଖରେ ସହଭାଗୀ ହେବାରେ ତାଙ୍କର କାର୍ଯ୍ୟପନ୍ଥା ଥିଲା ଅନନ୍ୟ ଧରଣର । ମୁଁ ତ ଜୀବନରେ ମହାମାନ୍ୟ ମାଲବ୍ୟଜୀଙ୍କୁ ଦେଖିନାହିଁ, କିନ୍ତୁ ମହାମାନ୍ୟ ଇନ୍ଦୁଭୂଷଣ ମିଶ୍ରଙ୍କ ସାନ୍ନିଧ୍ୟଲାଭ କରି ମୁଁ ବହୁତ କିଛି ଶିଖିଛି ଏବଂ ନିଜ ଜୀବନରେ ମଧ୍ୟ ତାକୁ କାର୍ଯ୍ୟରେ ଲଗାଇ ପ୍ରଶଂସିତ ହୋଇଛି । ସେଥିଲେ ଜଣେ ଉଚ୍ଚମନା ବ୍ୟକ୍ତି, ସଂକୀର୍ଣ୍ଣତାର ବହୁତ ଉର୍ଦ୍ଧ୍ୱରେ; ଯେଉଁଥିପାଇଁ ମୁଁ ତାଙ୍କୁ ମହାମନୀ ଆଖ୍ୟାଦେଇ ମୋର ମନୋଭାବନାକୁ ବ୍ୟକ୍ତ କରୁଛି ।

କିଛିଦିନ ପରେ ହାଇସ୍କୁଲ ବାର୍ଷିକ ଉତ୍ସବକୁ ଲଗାଇ ହେଲା ତିନିଦିନିଆ ଗୋଟାଏ ବିରାଟ ନାଟକ ମହୋତ୍ସବ। ଇନ୍ଦୁବାବୁ ତ ନିଜେ ନୂଆନୂଆ ଧରଣର ଓ ଶିକ୍ଷଣୀୟ ନାଟକ (ଶିକ୍ଷା, ସ୍ୱାସ୍ଥ୍ୟ ସମ୍ବନ୍ଧୀୟ) ଲେଖନ୍ତି, ଯେଉଁଥିରେ କି ମଣିଷ ବ୍ୟତୀତ ପଶୁପକ୍ଷୀ ଓ କୀଟପତଙ୍ଗ ମଧ୍ୟ ମଣିଷପରି ଅଭିନୟ କରୁଥିଲେ । ମୋର ମନେପଡୁଛି, ସେତେବେଳେ କଲେଜରେ ପଢୁଥିବା ମୋର ବଡ଼ପୁଅ ନବକୃଷ୍ଣ (ଏବେ ଡାକ୍ତର ଅଛି) ପ୍ରାୟ ଏକମିଟର ଲମ୍ବ ଓ ଏକଓସାର ଥିବା ଦୁଇଟି ମାଛିର ଡେଣା ଓ ଦୁଇଟି ମଶାଡେଣା କାଗଜ ଓ କାର୍ଡ଼ବୋର୍ଡ଼ରେ ତିଆରିକରି ଚିତ୍ର ବିଚିତ୍ର କରିଥିଲା । ତାକୁ ଲଗାଇ ଦୁଇଟି ପିଲା ମଶା ଓ ମାଛିର ଅଭିନୟ

କଲେ । ଇନ୍ଦୁବାବୁ ବହୁତ ଖୁସିହେଲେ । ଇନ୍ଦୁବାବୁ ନାଟକ ଲେଖିବା, ଶିଖାଇବା, ଗାଇବା, ବଜାଇବା ସବୁଥିରେ ଥିଲେ ଧୁରନ୍ଧର । ସେ ଲାଗିପଡ଼ି ପିଲାମାନଙ୍କୁ ସେସବୁ ଶିଖାଇଲେ । ସ୍କୁଲହତା ଭିତରେ ସଡ଼କ ପାଖରେ ପେଣ୍ଡାଲ ହେଲା । ଖୋଲା ଆକାଶତଳେ ଦର୍ଶକ ବସିଲେ । ସଂଧ୍ୟାରୁ ଆରମ୍ଭ ହୋଇ ରାତି ଏଗାରଟା ପର୍ଯ୍ୟନ୍ତ ନାଚ, ତାମସା, ବିବିଧବାଦ୍ୟ ବାଜଣା, କେତେପ୍ରକାର କୌତୁକିଆ ଗୀତ ଓ ନୃତ୍ୟ ଲାଗିଥାଏ । ସହରର ସବୁପଡ଼ାର ଲୋକ ଶିକ୍ଷିତ, ଅଶିକ୍ଷିତ ହଜାର ହଜାର ସଂଖ୍ୟାରେ ଆସୁଥିଲେ ଓ ନାଟକକୁ ପ୍ରଶଂସା କରିବା ସହିତ ନାଟୁଆ ଇନ୍ଦୁବାବୁଙ୍କୁ ମଧ ପ୍ରଶଂସା କରୁଥିଲେ ।

ତେବେ ଏଡ଼େ ଉତ୍ସବ ହେଉଥିବା ସତ୍ତ୍ୱେ ଦୁଇଦିନ ପର୍ଯ୍ୟନ୍ତ ମୁଁ ସେଠାକୁ ଯାଇପାରି ନଥିଲି । ବୋଧହୁଏ ଇନ୍ଦୁବାବୁ ମୋର ଅନୁପସ୍ଥିତି ଅନୁଭବ କରିଥିଲେ । ତୃତୀୟଦିନ ସକାଳୁ ସକାଳୁ ଦେଖିଲି ଇନ୍ଦୁବାବୁ ନିଜଘରୁ ଟ୍ରେନିଂ ସ୍କୁଲ ହତାରେ ଥିବା ମୋ ଘରକୁ ଚାଲିଚାଲି ଆସି ବାରଣ୍ଡାରୁ ମୋତେ ଡାକିଲେ । ଦରଜା ଖୋଲାଥିଲା । ବାଟଘରେ ମୁଁ କମ୍ବଳ ଖଣ୍ଡେ ଘୋଡ଼ାଇହୋଇ ବସିଥିଲି । ଇନ୍ଦୁବାବୁ କହିଲେ "ହରିବାବୁ ଆପଣଙ୍କର କ'ଣ ହେଲା ? ଦୁଇଦିନ ହେଲା ସ୍କୁଲ ଉତ୍ସବରେ ଆପଣଙ୍କୁ ଦେଖିଲି ନାହିଁ ଯେ ଘରକୁ ଆସିଲି ।" ମୁଁ କହିଲି ସାର୍ ତିନିଦିନ ହେଲା ଭୟଙ୍କର ଜ୍ୱର । ଆଜି ଟିକିଏ ଭଲ ଲାଗିବାରୁ ବସିଛି । ତଥାପି ଶୀତ ହେଉଛି । ଉତ୍ସବଟା ମୋ ଘର ସାମନାରେ ହେଉଛି । ଭଲ ଥିଲେ କି ନ ଯାଇ ରହିପାରନ୍ତି ? ଶବ୍ଦଶୁଭୁଛି, ଦେଖିଲାପରି ଲାଗୁଛି । ହେଲେ ଯାଇପାରୁନାହିଁ ।" ସେ ଦୁଃଖିତ ହେଲେ ଓ କହିଲେ "ସଂଧ୍ୟାରେ ଭଲ ଲାଗିଲେ ଅଳ୍ପ ସମୟ ପାଇଁ ହେଲେ ଆସିବେ ।" ମୋ ମନରେ କିଛି ଦୁଃଖ ହେଲାକି ଭାବି ଏତେ ସକାଳୁ ଚାଲିଚାଲି ଆସି ମୋର ଭଲମନ୍ଦ ବୁଝିଗଲେ, ବାସ୍ତବିକ କେଡ଼େ ଉଦାର ହୃଦୟ ବ୍ୟକ୍ତି ଜଣେ ।

ପ୍ରତିବର୍ଷ ଗୋଟେ ଦୁଇଟି ପିକ୍‌ନିକ୍ ବଲାଙ୍ଗୀରରୁ ୪/୫ମାଇଲ ଦୂରରେ ଜଂଗଲ ମଧ୍ୟରେ ହୁଏ । ଅନେକଥର ଶିକ୍ଷକମାନଙ୍କ ପୂରା ପରିବାର ମଧ ସେଥିରେ ଯୋଗଦେଇଥାନ୍ତି । ଏହିପରି ଇନ୍ଦୁବାବୁ ଏଠାରେ ରହଣିକାଳ ମଧ୍ୟରେ ସମସ୍ତଙ୍କୁ ସ୍ନେହରେ ବାନ୍ଧି ରଖିଥିଲେ । ଇନ୍ଦୁବାବୁଙ୍କ ଧର୍ମପତ୍ନୀ ମଧ ଅତି ସ୍ନେହଶୀଳା । ମଝିରେ ମଝିରେ ସେ ଶିକ୍ଷକମାନଙ୍କ ଘରକୁ ବୁଲିବାକୁ ଯାଆନ୍ତି ଓ ଘରର ସ୍ତ୍ରୀମାନଙ୍କ ସହିତ ମଧୁର ସଂପର୍କ ରଖିଥାଆନ୍ତି । ସେଥିପାଇଁ ଇନ୍ଦୁବାବୁଙ୍କ ପରିବାର ପ୍ରତି ସମସ୍ତଙ୍କର ସ୍ନେହ ଆଦର ଥିଲା । ଇନ୍ଦୁବାବୁ ବଲାଙ୍ଗୀରରେ ସୁଖଶାନ୍ତିରେ ଓ ବହୁତ ସୁନାମର ସହିତ ୧୯୬୩ ଜାନୁଆରୀରୁ ୧୯୬୭ ଜୁନ୍ ପର୍ଯ୍ୟନ୍ତ କଟାଇ ହରିବୋଲିଆ ବୈଷ୍ଣବ ଚରଣ ମହାନ୍ତିଙ୍କ ଭାଷାରେ ପୃଥ୍ୱୀରାଜ ହାଇସ୍କୁଲକୁ ଶିକ୍ଷା, ସାହିତ୍ୟ, ନାଟକ, ସଂଗୀତ ଓ ସଂସ୍କୃତି କ୍ଷେତ୍ରରେ ଅନେକଦୂର ଆଗେଇ ନେଇଥିଲେ । ୧୯୬୬ ସାଲ୍‌ରେ ସେ ହାଇସ୍କୁଲର ସୁବର୍ଣ୍ଣଜୟନ୍ତୀ ଉତ୍ସବ

ବିରାଟ ଯାକଜମକରେ ପାଳନ କରାଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ ଓ ଶିକ୍ଷିତ ଙ୍କେ ଷାର ପ୍ରଶଂସାଭାଜନ ହୋଇଥିଲେ । ହାଇସ୍କୁଲର ମୁଖପତ୍ର 'ପାରିଜାତ'ର ସ୍ୱର୍ଣ୍ଣଜୟନ୍ତୀ ପ୍ରକାଶନରେ (୧୯୧୬-୬୬) ବିଗତ ୫୦ବର୍ଷର ମାଟ୍ରିକ୍ ପାସ୍ କରିଥିବା ସମସ୍ତ ଛାତ୍ରଙ୍କର ତାଲିକା ଲିପିବଦ୍ଧ କରିବା ତାଙ୍କର ଅକ୍ଳାନ୍ତ ପରିଶ୍ରମ ଓ ଆନ୍ତରିକତାର ପ୍ରମାଣ ।

ସାଧାରଣତଃ ଦେଉଳ ତୋଳିବା, ଜଳାଶୟ ଖନନ କରିବା, ବିଦ୍ୟାଳୟ ବା ଧର୍ମଶାଳା ଆଦି ସ୍ଥାପନ କରିଥିବା ଲୋକଙ୍କ ନାମ ପଡ଼େ । ଇନ୍ଦୁଭୂଷଣ ମିଶ୍ର ବଲାଙ୍ଗୀରରେ ସେପରି କୀର୍ତ୍ତିସ୍ଥାପନ କରି ନଥିଲେ ମଧ ଯେଉଁ କାର୍ଯ୍ୟଟିଏ କରିଛନ୍ତି, ତାକୁ ଦେଖି ସେ ସମୟର ଲୋକେ ଆଜି ମଧ କହୁଛନ୍ତି "ଏହା ଇନ୍ଦୁବାବୁଙ୍କ କୀର୍ତ୍ତି । ପୃଥ୍ୱୀରାଜ ହାଇସ୍କୁଲରେ ଯୋଗଦେବାର ଅଳ୍ପଦିନ ମଧରେ ସେ ସ୍କୁଲହତା ମଧରେ ଶୌଚାଳୟ କେତୋଟି ତିଆରି କରାଇଲେ । ସେଗୁଡ଼ିକ ଥିଲା ବରପାଲି ପାଇଖାନା । ବରପାଲିରେ ଥିବାବେଳେ ସେସବୁ ସେ ଶିଖିଥିଲେ । ତଦ୍ୱାରା ଶିକ୍ଷକ ଓ ଛାତ୍ରମାନଙ୍କର ଅନେକ ଅସୁବିଧା ଦୂର ହେଲା । ଇନ୍ଦୁବାବୁଙ୍କ କୀର୍ତ୍ତି କହିଲେ ଏହାକୁ ବୁଝାଏ ନାହିଁ । ତାଙ୍କର କୀର୍ତ୍ତି କଥା ନିମ୍ନରେ ଦିଆଗଲା ।

ସ୍କୁଲର ପଶ୍ଚିମଦିଗରେ ଟ୍ରେନିଂ ସ୍କୁଲ ପାଖରେ ପୃଥ୍ୱୀରାଜ ହାଇସ୍କୁଲର ଗୋଟିଏ ବିସ୍ତୃତ ଖେଳପଡ଼ିଆ ଅଛି । ସେତେବେଳେ ବଲାଙ୍ଗୀରରେ ଖେଳକୁଦ ପାଇଁ ବା ବଡ଼ଧରଣର ସଭାସମିତି କରିବାପାଇଁ କୌଣସି ଷ୍ଟାଡିୟମ୍ ଆଦି ନଥିଲା । ତେଣୁ ବାହାରୁ ଖେଳାଳି ଆସିଲେ ବା ସ୍ଥାନୀୟ ଖେଳାଳି ହୁଅନ୍ତୁ, ଏହି ପଡ଼ିଆରେ ଫୁଟବଲ୍, ହକି ଆଦି ଖେଳର ମ୍ୟାଚ ସବୁ ହେଉଥିଲା । ବଲାଙ୍ଗୀର ସହରର ପ୍ରାଥମିକ ସ୍କୁଲଠାରୁ ସବୁ ହାଇସ୍କୁଲର ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତା ଏହି ପଡ଼ିଆରେ ହେଉଥିଲା । ବିରାଟ ଧର୍ମସଭାମାନ ଏଠାରେ ହୁଏ, ଏପରିକି ସପ୍ତାହ ସପ୍ତାହ ବ୍ୟାପି ଯଜ୍ଞାନୁଷ୍ଠାନ ମଧ ଏଠାରେ ହୁଏ । ରାଜାଙ୍କ ଅମଳରେ ମଧ ବିଭିନ୍ନ ପ୍ରକାର ସଭା ଓ କ୍ରୀଡ଼ା ପ୍ରତିଯୋଗିତା ଏଠାରେ ହେଉଥିଲା । ଗଡ଼ଜାତ ଶାସନ ଗଲାପରେ ତ ଏଠାରେ ସବୁ ରାଜନୀତିକ ଦଳମାନଙ୍କ ସଭା ହେଉଛି । ପ୍ରଥମେ ଆରମ୍ଭହେଲା ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସଭା ଏହି ପଡ଼ିଆରେ । ବିରାଟ ମଞ୍ଚ ଉପରୁ ସେ ଭାଷଣ ଦେଲେ - ପଡ଼ିଆଟି ଲୋକାରଣ୍ୟ ହୋଇ ଉଠିଥିଲା । ସେଦିନୁ ଯେତେ ରାଜନୀତିକ ନେତା, ଉପନେତା ଆସନ୍ତି, ଏଠାରେ ସଭା କରନ୍ତି । ଇଲେକ୍‌ସନ ପ୍ରଚାର ମଧ ଏଠାରେ ହୁଏ । ସହର ପାଖଥିବାରୁ ହଜାର ହଜାର ଦର୍ଶକ ଏଠାରେ ରୁଣ୍ଡ ହୁଅନ୍ତି । ଏଥିରେ ଆମସ୍କୁଲର ଖେଳ ଆଦି ସିନା ଦିନେ ଦୁଇଦିନ ବନ୍ଦହୁଏ, ନ ହେଲେ ଏହି ପଡ଼ିଆରେ ସବୁଦିନ ଫୁଟବଲ୍, ହକି, ଭଲିବଲ୍ ଓ ଦେଶୀୟ ଖେଳକୁଦ ଆଦି ଆମ ସ୍କୁଲ ପିଲାମାନଙ୍କର ହୁଏ ଓ ଏନ୍.ସି.ସି. ପେରେଡ ମଧ ଏଠାରେ ହୁଏ । ଇନ୍ଦୁବାବୁ ଲକ୍ଷ୍ୟକଲେ, ଏତେ ହେବା ସତ୍ତ୍ୱେ ଏ ପଡ଼ିଆର ସୁରକ୍ଷା ଓ ରକ୍ଷଣାବେକ୍ଷଣ ପାଇଁ କାହାରି ଚିନ୍ତାନାହିଁ । ଏ ପଡ଼ିଆର ଚତୁର୍ଦ୍ଦିଗ ଖୋଲାଥିବାରୁ ଦିନବେଳେ ପଡ଼ିଆ

ଭିତରେ ରାସ୍ତାକରି ଲୋକେ ଆରପଟକୁ ଯାଆନ୍ତି । ରାତିରେ ଏହା ଅସାମାଜିକ ଲୋକଙ୍କ ଆଡ୍ଡାସ୍ଥଳି ହୁଏ । ପଶ୍ଚିମକୁ ଜବରଦଖଲ କରି କେତୋଟି ଘର ତିଆରି ହେଲାଣି । ସେ ଚିନ୍ତାକରି ଦେଖିଲେ, ଏହାକୁ ପକ୍କା ପାଚେରି ପରିବେଷ୍ଟିତ ନକଲେ ରକ୍ଷାନାହିଁ । ହେଲେ ଏତେଟଙ୍କା ଆସିବ କୁଆଡୁ ? ଏଥିପାଇଁ ସେ ଜିଲ୍ଲା ଉନ୍ନୟନ କମିଟିରେ କଥାଟି ଉପସ୍ଥାପନ କରି ପଡ଼ିଆର ଚତୁର୍ଦ୍ଦିଗରେ ପକ୍କାବାଡ଼ ଦେବାପାଇଁ ଟଙ୍କାମଂଜୁର କରିବାକୁ ସଭାରେ ଅନୁରୋଧ କଲେ । ଇନ୍ଦୁବାବୁଙ୍କ ସୁନାମ ଆଗରୁ ଅନେକେ ଜାଣିଥିଲେ, ପୁଣି ସଭାରେ ଉପସ୍ଥିତ ଥିବା ଅଧିକାଂଶ ଲୋକ ଥିଲେ ଏହି ହାଇସ୍କୁଲର ପୁରାତନଛାତ୍ର । ସେମାନେ ଏ ଅସୁବିଧା ଓ ପଡ଼ିଆର ଅସୁରକ୍ଷା ଆଦି ଜାଣିଥିଲେ । ଯାହାହେଉ, ନିଃସ୍ୱାର୍ଥପର ଦୂରଦୃଷ୍ଟି ସଂପନ୍ନ ଇନ୍ଦୁବାବୁଙ୍କ ଇଚ୍ଛା ପୂର୍ଣ୍ଣହେଲା । ଟଙ୍କାମଞ୍ଜୁର ହୋଇଗଲା ଓ ଅଳ୍ପଦିନ ମଧ୍ୟରେ ପଡ଼ିଆର ଚତୁର୍ଦ୍ଦିଗରେ ଗୋଟିଏ ପକ୍କାବାଡ଼ ତିଆରି ହୋଇଗଲା, ଗୋଟିଏ ଲୁହାଗେଟ୍ ଲାଗିଲା । ପଡ଼ିଆଟି ସୁରକ୍ଷିତ ହେଲା । ଏହି ବାଉଣ୍ଡରୀୱାଲ୍‌ର ରକ୍ଷଣାବେକ୍ଷଣ ଭାର ପି.ଡବ୍ଲ୍ୟୁ.ଡି. ହାତରେ ଅଛି । ମଝିରେ କେଉଁଠି ଖଣ୍ଡେ ଭାଂଗିଲେ ସରକାର ମରାମତି କରୁଛି । ଏଣୁ ପୃଥ୍ୱୀରାଜ ହାଇସ୍କୁଲ ଥିବାଯାଏଁ ଏ ପକ୍କାବାଡ଼ ରହିବ ଏବଂ ଇନ୍ଦୁବାବୁଙ୍କ କୀର୍ତ୍ତି ଥିବାଯାଏଁ ବଲାଙ୍ଗୀରରେ ଇନ୍ଦୁବାବୁଙ୍କ ନାମ ରହିଥିବ ।

ଇନ୍ଦୁବାବୁଙ୍କର ଅନେକ ସଦ୍‌ଗୁଣ ଥିଲା । ସେ ଯଦିଓ ସରଳ ଓ ଶାନ୍ତ ପ୍ରକୃତିର ବ୍ୟକ୍ତିଥିଲେ ସ୍କୁଲରେ ଛାତ୍ରଶିକ୍ଷକ ବା ଅନ୍ୟ କର୍ମଚାରୀମାନଙ୍କର ବିଶୃଙ୍ଖଳିତ ଆଚରଣ, କର୍ତ୍ତବ୍ୟରେ ଅବହେଳା ଉଦ୍ଧତ ସ୍ୱଭାବ ଆଦି ଦେଖିଲେ ତାକୁ ସେ ବରଦାସ୍ତ କରୁ ନଥିଲେ ଓ ବିହିତ କାର୍ଯ୍ୟାନୁଷ୍ଠାନ କରି ଆବଶ୍ୟକସ୍ଥଳେ ଦଣ୍ଡବିଧାନ କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହେଉନଥିଲେ । ତେଣୁ, ତାଙ୍କୁ ଜଣେ ସୁଶାସକ କୁହାଯିବ । ତାଙ୍କ ଗୃହର କାର୍ଯ୍ୟାବଳୀ ସମ୍ବନ୍ଧରେ ମଧ୍ୟ ମୁଁ ଯାହା ଅନୁଭବ କରିଛି, ସେ ଥିଲେ ଜଣେ ଆଦର୍ଶ ଓ ସଫଳ ଗୃହସ୍ଥ । ଆଶାକରେ, ତାଙ୍କ ଦାୟାଦମାନେ ତାଙ୍କ ପଦାଙ୍କ ଅନୁସରଣ କରି ସମାଜରେ ପ୍ରତିଷ୍ଠା ଅର୍ଜନ କରିବେ ।



# ଇନ୍ଦୁଭୂଷଣ ମିଶ୍ରଙ୍କର ବହୁମୁଖୀ ବ୍ୟକ୍ତିତ୍ୱ

## ପ୍ରଫେସର ଜଗନ୍ନାଥ ମହାନ୍ତି

ରାଜ୍ୟର ଅନ୍ୟତମ ବରିଷ୍ଠ ଶିକ୍ଷାବିତ୍ ଓ ଶିଶୁ ସାହିତ୍ୟିକ ଇନ୍ଦୁଭୂଷଣ ମିଶ୍ର ୨୦୦୪ମସିହା ଅକ୍ଟୋବର ୨୧ତାରିଖ ଅପରାହ୍ନରେ ଇହଲୀଳା ସାଙ୍ଗ କରି ଆମଠାରୁ ଚିରଦିନ ପାଇଁ ବିଦାୟ ନେଲେ । ତାଙ୍କ ଜୀବନ ବହୁବିଧ କର୍ମଧାରାରେ ଋଦ୍ଧିମନ୍ତ ହୋଇଥିଲା । ମୌଳିକ ଶିକ୍ଷାକ୍ଷେତ୍ରରେ ସେ ଥିଲେ ଅନ୍ୟତମ ଅଗ୍ରଣୀ, ସମାଜସେବାରେ ସେ ଥିଲେ ଉତ୍ସର୍ଗୀକୃତ ଏବଂ ଶିଶୁସାହିତ୍ୟରେ ଥିଲେ ଜଣେ ସୁଦକ୍ଷ ବିନ୍ଧାଣି । ଲେଖୁଥିଲେ ଯେତିକି, ଅଭିନୟ କରି ପିଲାମାନଙ୍କ ମଧ୍ୟରେ ଆନନ୍ଦମୟ ପରିବେଶ ସୃଷ୍ଟି କରୁଥିଲେ ତତୋଧିକ । ଶିକ୍ଷକତାକୁ ସେ ନିଜର ବୃତ୍ତିଭାବରେ ବାଛି ନେଇଥିଲେ ହେଁ ଦରିଦ୍ର ଦଳିତ ଓ ନିର୍ଯ୍ୟାତିତ ଜନତାଙ୍କ ସେବା କରିବାକୁ ସେ ନିଜ ଜୀବନର ବ୍ରତ ଭାବରେ ଗ୍ରହଣ କରିଥିଲେ । ସେ ଥିଲେ "ଶିକ୍ଷକମାନଙ୍କର ଶିକ୍ଷକ", ଯେ ଆଗାମୀଯୁଗର ଶିକ୍ଷକମାନଙ୍କୁ ଶିକ୍ଷାଦାନ ସହିତ ସମାଜସେବା, ଉଦ୍ୟାନ କାର୍ଯ୍ୟ, କ୍ରୀଡ଼ା, ସଫେଇ ଆଦିରେ ତାଲିମ ଦେଉଥିଲେ । ତାଙ୍କର ଦେହାନ୍ତରେ ଜଣେ ଶିକ୍ଷକ, ପ୍ରଶିକ୍ଷକ, ଶିଶୁ ସାହିତ୍ୟିକ, ସମାଜସେବକ ଓ ସଂସ୍କାରକ ଜୀବନର ଅବସାନ ହେଲା ।

ସ୍ୱର୍ଗୀୟ ମିଶ୍ରଙ୍କର ଜନ୍ମ ୧୯୧୭ମସିହା ନଭେମ୍ବର ୨୭ତାରିଖରେ । ତାଙ୍କ ପିତା ଥିଲେ ପଣ୍ଡିତ ନରସିଂହ ମିଶ୍ର ଓ ମାତାଥିଲେ ସୂର୍ଯ୍ୟମଣି ଦେବୀ । ପୁରୀ ନିକଟବର୍ତ୍ତୀ ବୀରନରସିଂହପୁର ଶାସନର ରକ୍ଷଣଶୀଳ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ ହେଁ ଫୁଲବାଣୀରେ ପିତା ଶିକ୍ଷକତା କରୁଥିଲାବେଳେ ଆଦିବାସୀମାନଙ୍କର ସମସ୍ୟାଗୁଡ଼ିକୁ ଅନ୍ତରଙ୍ଗ ଭାବରେ ଅନୁଭବ କରିଥିଲେ । ଛାତ୍ରାବସ୍ଥାରୁ ତାଙ୍କର ଅଭିନୟ ଓ ଆବୃତ୍ତିରେ ଖୁବ୍ ଶ୍ରଦ୍ଧା ଓ ସାମର୍ଥ୍ୟ ପ୍ରକାଶିତ ହୋଇଥିଲା । ସମାଜସେବା ଥିଲା ତାଙ୍କ ଜୀବନର ଧର୍ମ । ଶିକ୍ଷକତା ତଥା ମୌଳିକ-ଶିକ୍ଷାରେ ସେ ତାଲିମପ୍ରାପ୍ତ ଓ ବିଭିନ୍ନ ଶିକ୍ଷା ପରିପୂରକ (cocurricular) କାର୍ଯ୍ୟକଳାପରେ ଅଗ୍ରଣୀ ଥିଲେ । ସଭାସମିତି, ମେଳା ମଉଛବ ବେଳେ ସେ ସ୍ୱେଚ୍ଛାସେବୀ ଭାବରେ ଆଗେଇ ଆସୁଥିଲେ । ୧୯୪୧ମସିହାରେ ଶିକ୍ଷକତାପାଇଁ ତାଲିମ ପାଉଥିବାବେଳେ ସେ ସହପାଠୀମାନଙ୍କ ସହ 'ଜାମିଆ ମିଲିଆ ଇସ୍‌ମାଲିଆ' ଯାଇ ସେଠାରେ କାର୍ଯ୍ୟକ୍ରମ ଦେଖି ଓ ଡକ୍ଟର ଜାକିର ହୋସେନଙ୍କୁ ସାକ୍ଷାତକରି ପ୍ରଭାବିତ ହୋଇଥିଲେ । ସେ ଶିକ୍ଷକ ଥିଲାବେଳେ ମୌଳିକ-ଶିକ୍ଷାରେ ପ୍ରଶିକ୍ଷଣ ଲାଭକରିବାକୁ ଆହ୍ଲାବାଦ ଯାଇଥିଲେ ଏବଂ ସେହି ସମୟରେ "ଆନନ୍ଦ ଭବନ"ରେ ଇନ୍ଦିରାଗାନ୍ଧୀଙ୍କ ବିବାହ ଉତ୍ସବରେ ଯୋଗଦେଇଥିଲେ । ଶିକ୍ଷକ ପ୍ରଶିକ୍ଷକ ଭାବରେ ସେ ଛାତ୍ରଛାତ୍ରୀମାନଙ୍କୁ ଯେମିତି ବହୁଭାବରେ ପ୍ରେରଣା ଦେଇଥିଲେ, ନିଜେ ମଧ୍ୟ ଦେଶର ଅଗ୍ରଣୀ ଶିକ୍ଷାବିତ୍ ଓ

ଜନନାୟକମାନଙ୍କଠାରୁ ପ୍ରେରଣା ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ ଆର୍ଯ୍ୟନାୟକନ୍, ଆଶାଦେବୀ, ବିନୋବାଭାବେ, କୁମାରପ୍ପା, କାକା କାଲେଲକର, ଶ୍ରୀମନ୍ ନାରାୟଣ, ସନ୍ଥ ଟୁକୁଡୋଜି ଉଲ୍ଲେଖଯୋଗ୍ୟ ।

ସେବାଗ୍ରାମରୁ ମୌଳିକଶିକ୍ଷା ତାଲିମପ୍ରାପ୍ତ ହୋଇ ଆଦିବାସୀବହୁଳ ନବରଙ୍ଗପୁରଠାରେ ଏକ ମୌଳିକଶିକ୍ଷା ପ୍ରଶିକ୍ଷଣ ବିଦ୍ୟାଳୟ ଆରମ୍ଭ କରିଥିଲେ । ସେଠାରେ ସବୁପ୍ରକାର ପ୍ରତିବନ୍ଧକ ସତ୍ତ୍ୱେ ମୌଳିକଶିକ୍ଷାର ବିଭିନ୍ନ ପରୀକ୍ଷାନିରୀକ୍ଷା କରିଥିଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ରାଜ୍ୟପାଳ ଆସଫ୍ ଅଲ୍ଲି, ଫଜଲ ଅଲ୍ଲି ପ୍ରମୁଖ ଏଠାରେ ଗଠନମୂଳକ କାର୍ଯ୍ୟଦେଖି ସନ୍ତୋଷ ପ୍ରକାଶ କରିଥିଲେ । ଆମେରିକା, କାନାଡ଼ା, ଜାପାନ ଆଦି ଦେଶର ବୈଜ୍ଞାନିକ ଓ ସାମାଜବିଜ୍ଞାନୀଙ୍କ ସହିତ ବରପାଲିରେ ସେ ଗ୍ରାମବିକାଶ କାର୍ଯ୍ୟକ୍ରମ ନିଷ୍ଠାର ସହିତ କାର୍ଯ୍ୟକାରୀ କରି ସାଫଲ୍ୟ ଲାଭ କରିଥିଲେ । ବହୁ ସ୍ୱେଚ୍ଛାସେବୀ ସଂସ୍ଥା ସହିତ ସଂପୃକ୍ତ ହୋଇ ପତିତ ଓ ଦଳିତମାନଙ୍କର ସେବା କରିବାରେ ପ୍ରବୃତ୍ତ ହୋଇଥିଲେ । ଭୁବନେଶ୍ୱର ରୁଚିକା ସମାଜମଙ୍ଗଳ ସଂସ୍ଥାଠାରୁ ଆରମ୍ଭକରି ଆନ୍ତର୍ଜାତୀୟ ସଂସ୍ଥା ୟୁନିସେଫ୍ ପର୍ଯ୍ୟନ୍ତ ବିଭିନ୍ନ ସଂଗଠନରେ ସଂପୃକ୍ତ ହୋଇ କାର୍ଯ୍ୟକରିଥିଲେ । ପୌଢ଼ଶିକ୍ଷା କ୍ଷେତ୍ରରେ ଇନ୍ଦୁଭୂଷଣ ଅନେକ କିଛି କରିଥିଲେ । ଓଡ଼ିଶା ପୌଢ଼ଶିକ୍ଷା ସାଧନକେନ୍ଦ୍ର ଆରମ୍ଭରୁ ସେ ତା'ର କାର୍ଯ୍ୟକ୍ରମରେ ଭାଗ ନେଇଥିଲେ । ମହାରାଷ୍ଟ୍ରରେ ବୁଲି ଗ୍ରାମଶିକ୍ଷଣ ମହିମା ସଂପର୍କରେ ପ୍ରତ୍ୟକ୍ଷ ଅନୁଭୂତି ସଂଗ୍ରହ କରିଥିଲେ ।

ଉପରୋକ୍ତ କାର୍ଯ୍ୟରେ ସହାୟକ ସାମଗ୍ରୀ ଭାବରେ ସେ ଯେଉଁ ବହିପତ୍ର ରଚନା କରିଥିଲେ, ସେଗୁଡ଼ିକ ବିଶେଷ ଆଦୃତ ହୋଇଥିଲା । ସେଗୁଡ଼ିକ ହେଲା-ପଢିଲେ ସିନା ଜାଣିବ, ଜାଣିଲେ କିଣିବ, ପାଠ ବତାଏ ବାଟ, ଅଙ୍ଗନ ଅଲୋକ, ଯମ ପରାଜୟ, ବରୁଣ ପୂଜା ଆଦି । ଅପେରା, ପାଲା, ଗୀତିନାଟ୍ୟ ଆଦିରେ ସେଗୁଡିକ ବ୍ୟବହୃତ ହୋଇଥିଲା । ଇନ୍ଦୁଭୂଷଣଙ୍କ ଶିଶୁ ସାହିତ୍ୟ ସୀମିତ ହେଲେ ମଧ୍ୟ ପିଲାମାନଙ୍କ ମନକୁ ଛୁଇଁଲାଭଳି ଓ ସେମାନଙ୍କୁ ଖେଳ, ନାଚରେ ପ୍ରବୃତ୍ତ କରିବାପାଇଁ ଉଦ୍ଦିଷ୍ଟ ଥିଲା । ସେହିପରି ପିଲାଙ୍କ ଗୀତ ଚାଙ୍ଗୁଡ଼ି, ଆସରେ ପିଲେ ଶୁଣିବା ଗୀତ ଆଦି - ଯେଉଁଗୁଡିକ ତାଙ୍କ ପ୍ରେରଣାରେ ସର୍ବଭାରତୀୟ ପ୍ରାକ୍-ପ୍ରାଥମିକ ସଂଘର ଓଡ଼ିଶା ଶାଖା ତରଫରୁ ପ୍ରକାଶିତ ହୋଇଥିଲା । ଶିଶୁ ଓ ନବସାକ୍ଷର ମାନଙ୍କ ପାଇଁ ତାଙ୍କର କେତେକ କବିତା ଆଧାରିତ କ୍ୟାସେଟ ପ୍ରସ୍ତୁତ ହୋଇଥିଲା ଏବଂ ସେଥିରେ ସେ କେତୋଟିରେ ନିଜେ ସ୍ୱର ଦେଇଥିଲେ । ଓଡ଼ିଶାର ଶିକ୍ଷା, ସାହିତ୍ୟ ଓ ସମାଜସେବାରେ ତାଙ୍କର ଅବଦାନ ଅତୁଳନୀୟ । ତାଙ୍କର ତରୋଧାନରେ ଯେଉଁ ଶୂନ୍ୟସ୍ଥାନ ରହିଗଲା, ତାହା ଅପୂରଣୀୟ । ତାଙ୍କର ପବିତ୍ର ସ୍ମୃତିପ୍ରତି ଆମର ବିନମ୍ର ପ୍ରଣତି ।



# "ତସ୍ମୈ ଶ୍ରୀ ଗୁରବେ ନମଃ"

## ପ୍ରଫେସର ନାରାୟଣ ବେହେରା

ସ୍ୱର୍ଗୀୟ ଇନ୍ଦୁଭୂଷଣ ମିଶ୍ର, ଓଡ଼ିଶାର ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କର ବ୍ୟକ୍ତିତ୍ୱ ଥିଲା ଅନନ୍ୟ ଏବଂ ସୁଦୂର ପ୍ରସାରୀ । ସେ ଏକାଧାରରେ ଥିଲେ ଜଣେ ଲବ୍ଧପ୍ରତିଷ୍ଠ ଶିଶୁ ସାହିତ୍ୟିକ, ଜଣେ ଆଶୁ କବି, ଜଣେ ପ୍ରତିଷ୍ଠିତ ସଂଗୀତଜ୍ଞ ତଥା କଣ୍ଠଶିଳ୍ପୀ, ଜଣେ ଉଚ୍ଚକୋଟୀର ଶିକ୍ଷକ, ଜଣେ ପ୍ରଶାସକ ଏବଂ ସର୍ବୋପରି ଜଣେ ଗାନ୍ଧିବାଦୀ ସ୍ୱଦେଶପ୍ରେମୀ । ଜଣେ ଗୁରୁ ହିସାବରେ ତାଙ୍କୁ ମୁଁ ନିକଟରୁ ଦେଖିବାର ସୁଯୋଗ ପାଇଥିଲି । ସୁତରାଂ ତାଙ୍କ ଜୀବନର ପ୍ରତ୍ୟେକ ଅଧ୍ୟାୟକୁ ଆଲୋଚନା ଏବଂ ପର୍ଯ୍ୟାଲୋଚନା କଲେ ଜାଣିପାରିବା ଯେ, ସେ ପ୍ରଚାରସର୍ବସ୍ୱ ନଥିଲେ । ସେ ପ୍ରଚାର ମାଧ୍ୟମରେ ନାମ ଅର୍ଜନ କରିବାକୁ ଘୃଣା କରୁଥିଲେ । ତାଙ୍କର ତିରୋଧାନ ଫଳରେ ଓଡ଼ିଶାରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟିହେଲା, ନିକଟ ଭବିଷ୍ୟତରେ କେହି ପୂରଣ କରିପାରିବେ କି ନାହିଁ ସନ୍ଦେହ । କିନ୍ତୁ ତାଙ୍କର ଭବିଷ୍ୟତ ବଂଶଧରଙ୍କପାଇଁ ସେ ଯେଉଁ ଆଦର୍ଶ ଏବଂ ପଦଚିହ୍ନ ଛାଡ଼ି ଯାଇଛନ୍ତି, ତାଙ୍କର ସ୍ମୃତିକୁ ଯେ ଉଜ୍ଜୀବିତ କରି ରଖିବ, ଏଥିରେ ସନ୍ଦେହ ନାହିଁ ।

ସ୍ୱର୍ଗତ ଇନ୍ଦୁଭୂଷଣ ୧୯୧୭ମସିହା ନଭେମ୍ବର ମାସରେ ପୁରୀଜିଲ୍ଲାସ୍ଥିତ ବୀରନରସିଂହପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ନୃସିଂହ ମିଶ୍ର ମଧ୍ୟ ଜଣେ ଶିକ୍ଷକ ଥିଲେ । ସୁତରାଂ ସେ ଜଣେ ଶିକ୍ଷକପରିବାରରେ ଜନ୍ମଗ୍ରହଣ କରିଥିଲେ ଏବଂ ତାଙ୍କ ପିତାଙ୍କର ଜୀବନୀଶୈଳୀ ତାଙ୍କୁ ବହୁଳଭାବେ ପ୍ରଭାବିତ କରିଥିଲା । ତାଙ୍କର ପିତା ନୃସିଂହ ମିଶ୍ର ତତ୍କାଳୀନ ଫୁଲବାଣୀ ମାଇନର ସ୍କୁଲରେ ଶିକ୍ଷକତା କରୁଥିଲେ । ସେତେବେଳେ ଫୁଲବାଣୀରେ 'ନୃସିଂହ ପଣ୍ଡିତେ' ନାମରେ ସେ ପରିଚିତ ଥିଲେ । ଆକସ୍ମିକ ଭାବେ ମୋର ପରମପୂଜ୍ୟ ପିତା ମଧ୍ୟ ନୃସିଂହ ପଣ୍ଡିତଙ୍କ ଛାତ୍ର ଥିଲେ । ସୁତରାଂ ମୋର ପରିବାର ଗୁରୁ-ଶିଷ୍ୟ ପରମ୍ପରାର ପ୍ରତୀକ କହିଲେ ଅତ୍ୟୁକ୍ତି ହେବନାହିଁ । ସାର୍ ହେଉଛନ୍ତି ତତ୍କାଳୀନ ଫୁଲବାଣୀ ମାଇନର ସ୍କୁଲର ପୁରାତନ ଛାତ୍ର । ସେଥିପାଇଁ ବୋଧହୁଏ ଫୁଲବାଣୀର ମାଟି, ପାଣି, ପବନ ସହିତ ସେ ଓତଃପ୍ରୋତଭାବେ ଜଡ଼ିତ ଥିଲେ ଏବଂ ଫୁଲବାଣୀର ଅଭିବୃଦ୍ଧି ତାଙ୍କ ଜୀବନର ବ୍ରତ ଥିଲା । ମୋତେ ସେ ସବୁବେଳେ କହୁଥିଲେ ଫୁଲବାଣୀର ବିକାଶ ହେଲେ ଓଡ଼ିଶାର ବିକାଶ ହେବ ।

ପରବର୍ତ୍ତୀକାଳରେ ଶ୍ରୀଯୁକ୍ତ ଇନ୍ଦୁଭୂଷଣ ମିଶ୍ର ହେଡ୍‌ମାଷ୍ଟର ଦାୟିତ୍ୱବହନ କଲେ । ତା'ପରେ ଆରମ୍ଭ ହେଲା ତାଙ୍କର ଜୀବନର ପ୍ରଥମ ସଂଗ୍ରାମ । ବୋଧହୁଏ ସାର୍‌ଙ୍କର ଅନ୍ତରାତ୍ମାର ଆହ୍ୱାନ ଫଳରେ ଏବଂ ଫୁଲବାଣୀ ମାଇନର ସ୍କୁଲକୁ ପ୍ରତିଦାନ ସ୍ୱରୂପ ସେ ଦୃଢ଼ ସ୍ୱର ଉତ୍ତୋଳନ କଲେ ଫୁଲବାଣୀରେ ଏକ ହାଇସ୍କୁଲ ସ୍ଥାପନ କରିବାପାଇଁ । ତାଙ୍କର ଗୁରୁ ଗମ୍ଭୀର ସ୍ୱର ସାରା ଅଞ୍ଚଳରେ ପ୍ରତିଧ୍ୱନିତ ହେଲା । ସେତେବେଳେ ସାରା କନ୍ଧମାଳର ପୁରପଲ୍ଲୀରେ ଆଲୋଡ଼ନ ସୃଷ୍ଟିକଲା । ଅବଶ୍ୟ ସେତେବେଳେ ଏହାକୁ ଅସମ୍ଭବ ଏବଂ ଅବାସ୍ତବ ପରିକଳ୍ପନା ବୋଲି ଆମେ ମନେ କରୁଥିଲୁ । କିନ୍ତୁ ସାର୍‌ଙ୍କର ପ୍ରବଳ ଇଚ୍ଛାଶକ୍ତି ଏବଂ ଦୃଢ ଆତ୍ମବିଶ୍ୱାସ ଫଳରେ ଆକସ୍ମିକ ଭାବରେ ବିଭୁକୃପା ବର୍ଷଣ ହେଲା ଏବଂ ସାର୍‌ଙ୍କର ସ୍ୱପ୍ନ ସାକାର ହେଲା । ସେ ଥରେ ଏକ ପ୍ରଦର୍ଶନୀ ଆୟୋଜନ କଲେ । ଉଦ୍ଦେଶ୍ୟ ହେଲା ପ୍ରଦର୍ଶନୀ ଶେଷ ହେବାପରେ ସେହି ଝାଟିମାଟିରେ ତିଆରି ହୋଇଥିବା ଘର, ସ୍କୁଲ ଓ ଛାତ୍ରାବାସ ପାଇଁ ବ୍ୟବହୃତ ହୋଇପାରିବ । ସେହି ପ୍ରଦର୍ଶନୀର ଉଦ୍‌ଘାଟନ କରିବା ପାଇଁ ତତ୍କାଳୀନ ଶିକ୍ଷାମନ୍ତ୍ରୀ ପ୍ରାତଃ ସ୍ମରଣୀୟ ଲିଙ୍ଗରାଜ ମିଶ୍ରଙ୍କୁ ଆମନ୍ତ୍ରଣ କରାଗଲା । ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ମିଶ୍ର ଫୁଲବାଣୀ ମାଟିରେ ପାଦ ଦେଉଦେଉ ଦେଖିଲେ ଚାରିଆଡ଼େ ପୋଷ୍ଟର ମରାଯାଇଛି 'ଆମର ଦାବି ହାଇସ୍କୁଲ' । ଗୁମାଗଡ଼ଠାରୁ ଫୁଲବାଣୀ ପର୍ଯ୍ୟନ୍ତ ପ୍ରାୟ ୧୦ମାଇଲ୍ ବାଟ ଆମ୍ରତୋରଣରେ ସୁସଜ୍ଜିତ ହୋଇ ରାସ୍ତାକଡ଼ରେ ପୋଷ୍ଟରମରା ଯାଇଥିଲା । 'ହାଇସ୍କୁଲ ଆମର ଦାବି' । ଏହି ଅବସରରେ ଫୁଲବାଣୀ ଏମ୍.ଇ.ସ୍କୁଲର ଛାତ୍ରଛାତ୍ରୀମାନେ ଏକ 'ଭେରାଇଟି ସୋ'ର ଆୟୋଜନ କରିଥିଲେ ଏବଂ ସାର୍ ଥିଲେ ମୁଖ୍ୟ ପୁରୋଧା । ତାଙ୍କ ରଚିତ ଗୀତ ଏପର୍ଯ୍ୟନ୍ତ ମୋର କର୍ଣ୍ଣରେ ପ୍ରତିଧ୍ୱନିତ ହେଉଅଛି । "ଏ ସାରା ଅଞ୍ଚଳେ ଜ୍ଞାନ ବିତରଣେ, ଏଠି ଅଛି ଏକା ମାଇନର ସ୍କୁଲ, ଏ ମନ୍ତ୍ରୀବର ଉଦ୍ଧାର କର, ହାଇସ୍କୁଲ ଏଠି ସ୍ଥାପନ କର, ହେ ମନ୍ଦର ଗିରିଧର ।" ସୁତରାଂ ସେତେବେଳେ ହାଇସ୍କୁଲ ସ୍ଥାପନପାଇଁ ଦାବିରେ ଫୁଲବାଣୀର ଗଗନ ପବନ ମଧ୍ୟ ମୁଖରିତ ହୋଇଗଲା । ଫଳରେ ମନ୍ତ୍ରୀ ମହାଶୟ ଅନନ୍ୟୋପାୟ ହୋଇ ଫୁଲବାଣୀଠାରେ ହାଇସ୍କୁଲ ସ୍ଥାପନ ପାଇଁ ରାଜି ହୋଇଗଲେ । ସେ ଯାହାହେଉନା କାହିଁକି ଫୁଲବାଣୀ ହାଇସ୍କୁଲର ପ୍ରତିଷ୍ଠାତା ହେଲେ ଇନ୍ଦୁଭୂଷଣ ମିଶ୍ର ଏବଂ ଶ୍ରୀଯୁକ୍ତ ବୃନ୍ଦାବନ ଚନ୍ଦ୍ର ପଟ୍ଟନାୟକ । ଏ ଦୁଇ ମହାମନୀଷୀଙ୍କର ଅବଦାନ ଫୁଲବାଣୀର ଅଧିବାସୀ କେବେ ଭୁଲିପାରିବେ ନାହିଁ । ସେଥିପାଇଁ ଇନ୍ଦୁ ସାର୍ ଫୁଲବାଣୀର ଘରେଘରେ ପରିଚିତ । ତାଙ୍କର ସର୍ବବ୍ୟାପକ ପ୍ରତିଭା ଫଳରେ ସେ ଫୁଲବାଣୀ ଲୋକମାନଙ୍କର କେବଳ ଯେ ହୃଦୟ ଜୟ କରିଥିଲେ ତାହା ନୁହେଁ, ସେମାନଙ୍କର ଅନ୍ତରାତ୍ମାକୁ ମଧ୍ୟ ପ୍ରଭାବିତ କରିପାରିଥିଲେ ।

ସାର୍ ଥିଲେ ଛାତ୍ରବତ୍ସଳତାର ମୂର୍ତ୍ତିମନ୍ତ ପ୍ରତୀକ । ଗୁରୁର ସବୁ ଗୁଣଗୁଡ଼ିକ ତାଙ୍କ ପାଖରେ ଥିଲା । ତାଙ୍କ ଜୀବନର ବୈଶିଷ୍ଟ୍ୟ ହେଲା ସ୍କୁଲ, କଲେଜରୁ ଲବ୍ଧ ଜ୍ଞାନକୁ

'ସର୍ବଜନ ହିତାୟ ଏବଂ ସର୍ବଜନ ସୁଖାୟ' ପାଇଁ ପ୍ରୟୋଗ କରିବା । ସେଥିପାଇଁ ସେ ହୋଇଛନ୍ତି ମହାନ୍ । ସେ ସବୁବେଳେ କହୁଥିଲେ, ଯଦି ଜଣେ ଶିକ୍ଷିତ ବ୍ୟକ୍ତି ତା'ର ଲାଭ କରିଥିବା ଶିକ୍ଷାକୁ ଅନ୍ୟର ମଙ୍ଗଳପାଇଁ ପ୍ରୟୋଗ ନକରି ପାରିଲା, ତେବେ ତା'ର ଶିକ୍ଷା ମୂଲ୍ୟହୀନ ।

ମହାତ୍ମାଗାନ୍ଧୀଙ୍କ ଦର୍ଶନ ତାଙ୍କୁ ବହୁଳଭାବେ ପ୍ରଭାବିତ କରିଥିଲା । ସେ ଭଲ ଭାବରେ ଉପଲବ୍ଧ କରିଥିଲେ ଯେ, ଭାରତ ହେଉଛି ଗ୍ରାମବହୁଳ ଦେଶ । ପ୍ରାୟ ଶତକଡ଼ା ୭୦ଭାଗ ଲୋକ ଗାଁଗହଳିରେ ବସବାସ କରନ୍ତି । ସେଥିପାଇଁ ମହାତ୍ମାଗାନ୍ଧୀଙ୍କ ପରି ସେ କହୁଥିଲେ ଯେ ଗ୍ରାମ୍ୟଜୀବନର ଉନ୍ନତି ନ ହେଲେ, ଦେଶର ଉନ୍ନତି କଦାପି ହୋଇପାରିବ ନାହିଁ । ସେଥିପାଇଁ ଶ୍ରୀଯୁକ୍ତ ଇନ୍ଦୁଭୂଷଣ ମିଶ୍ରଙ୍କ ଭାଷାରେ ଆମର ପଞ୍ଚବାର୍ଷିକ ଯୋଜନା କୃଷିଭିତ୍ତିକ ଏବଂ ଗ୍ରାମ୍ୟଭିତ୍ତିକ ହେବା ଆବଶ୍ୟକ । ସେ ବ୍ୟଥିତ ହୋଇ ପଡ଼ିଥିଲେ ଯେ, ସ୍ୱାଧୀନତା ପ୍ରାପ୍ତିର ୫୮ ବର୍ଷ ବିତିଯାଇଥିଲେ ମଧ ଏପର୍ଯ୍ୟନ୍ତ ଦେଶରୁ କ୍ଷୁଧା ଦୂର ହୋଇପାରିନାହିଁ । ସାମ୍ବିଧାନିକ ପ୍ରସ୍ତାବନା ସତ୍ତ୍ୱେ ନିରକ୍ଷରତା ଏବଂ ଅସ୍ପୃଶ୍ୟତା ଏପର୍ଯ୍ୟନ୍ତ ଗାଁଗହଳିରୁ ଦୂର ହୋଇନାହିଁ । ସେଥିପାଇଁ ସେ ଲେଖିଛନ୍ତି -

'ଏଇ ଆମରି ଗାଁ, ଏଇ ଆମରି ଗାଁ
ଏଇ ଗାଁ'ର ମଣିଷ ଆମେ
ରଖିବୁ ତା'ର ନାଁ
ସଞ୍ଜ ସକାଳେ ଫୁଟଇ ଫୁଲ
ବହଇ ଶୀତଳ ବାଆ ।
ସଭିଏଁ ଆମେ ସାକ୍ଷର ହେବୁ,
ରଖିବୁ ଗାଁ'ର ନାଁ ।
ଏଇ ଆମରି ଗାଁ ।

ସାରଙ୍କର ଆଉ ଏକ ବିଶେଷ ଚିନ୍ତାଧାରା ହେଲା ଆତ୍ମନିର୍ଭରଶୀଳ ଏବଂ ସ୍ୱାବଲମ୍ବୀ ଉଭୟେ ପରିପୂରକ । ଆତ୍ମନିର୍ଭରଶୀଳ ନହେଲେ, ସ୍ୱାବଲମ୍ବୀ ହୋଇପାରିବ ନାହିଁ କିମ୍ବା ସ୍ୱାବଲମ୍ବୀ ନ ହେଲେ ଆତ୍ମନିର୍ଭରଶୀଳ ହୋଇପାରିବ ନାହିଁ ଏବଂ ସ୍ୱାବଲମ୍ବୀ ହେବା ପାଇଁ ଆହ୍ୱାନ ଦେଇଛନ୍ତି -

'ଧରି କୋଦାଳ ହାତେ
ହାଣ ମାଟିର କ୍ଷେତେ,
ଭୁଲି ତୁଚ୍ଛା ଗୁମାନ
ଚାଲ ସ୍ୱାଧୀନ ପଥେ'
ଜାଗରେ ଜାଗ, ଏହି ଦେଶ ହିତେ ଲାଗ
ଜାଗରେ ଜାଗ ।

ପୁଣ୍ୟଭୂମି ଭାରତବର୍ଷ,
ଜନମ ଭୂମି ଏଇ ମୋ ଦେଶ,
ଏଇ ଦେଶ ହିତେ ଲାଗ,
ଜାଗରେ ଜାଗ ।'

ସାର୍ ନିର୍ଭୀକ ଭାବରେ କହୁଥିଲେ ଭାରତବର୍ଷ ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ଭାବରେ ସ୍ୱାଧୀନତା ଲାଭ କରିନାହିଁ । ଏ ଯେଉଁ ସ୍ୱାଧୀନତା, ଏହା କେବଳ ରାଜନୈତିକ ସ୍ୱାଧୀନତା, ସୁତରାଂ ସେ ସାମାଜିକ ଏବଂ ଅର୍ଥନୈତିକ ସ୍ୱାଧୀନତାପାଇଁ ଆଉ ଏକ ସ୍ୱାଧୀନତାସଂଗ୍ରାମ ପାଇଁ ଗୁରୁଗମ୍ଭୀର ସ୍ୱରରେ ଆହ୍ୱାନ ଦେଇଛନ୍ତି । କାରଣ, ସାମାଜିକ ଏବଂ ଅର୍ଥନୈତିକ ସ୍ୱାଧୀନତା ବ୍ୟତୀତ ରାଜନୈତିକ ସ୍ୱାଧୀନତା ମୂଲ୍ୟହୀନ । ସେ ଏ ଜାତିର ଜନକ ଏବଂ ଏ ଶତାବ୍ଦୀର ମହାମାନବ ମହାତ୍ମାଗାନ୍ଧୀଙ୍କୁ ଅତି ବ୍ୟାକୁଳ କଣ୍ଠରେ ଡାକିଛନ୍ତି -

ବାପୁ ଆସ ଏ ଦେଶେ ଫେରି,
କେ କହେ ମୁକ୍ତ ଭାରତ ଜନତା,
ସଂଗ୍ରାମ ନାଇଁ ହେ ସରି,
ସଂଗ୍ରାମ ନାଇଁ ହେ ସରି ।'

ସେ ଯାହାହେଉ ନା କାହିଁକି, ଭାରତର ସ୍ୱାଧୀନତାସଂଗ୍ରାମର ସୂତ୍ରପାତ କେବଳ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ । କିନ୍ତୁ ଏପର୍ଯ୍ୟନ୍ତ ସାମାଜିକ ନ୍ୟାୟ ସୁଦୂର ପରାହତ ।

ସେଥିପାଇଁ ସେ ଦୁଃଖରେ ଆତ୍ମହରା ହୋଇ ଡାକିଛନ୍ତି ଭଗବାନଙ୍କୁ । କୋଟିକୋଟି ଜନତାଙ୍କ ପେଟରେ ଦାନା ନାହିଁ କି ଅଣ୍ଟାରେ କନା ନାହିଁ । ସେଥିପାଇଁ ସେ କହିଛନ୍ତି-

'ସରଗରୁ ଦେବତା ବରଷ ହେ
ଆଶିଷ ବାରି ।'

ସାର୍ ଥିଲେ ଓଡ଼ିଆ ଜାତିର ସମ୍ମାନ ଏବଂ ସ୍ୱାଭିମାନର ପ୍ରତୀକ । ସେ କହୁଥିଲେ ପ୍ରାଚୁର୍ଯ୍ୟଭିତରେ ଥାଇ ମଧ୍ୟ ଆମେ ଗରିବ । ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଓଡ଼ିଶା ଆଜି ଶ୍ରୀହୀନ । ତା'ର କାରଣ ହେଲା ରାଜନୈତିକ ଇଚ୍ଛାଶକ୍ତିର ଅଭାବ ଫଳରେ ଆଜି ଓଡ଼ିଶା ଭିକ୍ଷାଥାଳି ଧରି କେନ୍ଦ୍ର ସରକାର ଆଗରେ ଠିଆ ହେଉଛି । ସୁତରାଂ ପ୍ରାକୃତିକ ସମ୍ପଦର ଉପଯୋଗ କଲେ ସାରା ଭାରତବର୍ଷରେ ଓଡ଼ିଶା ହେବ ଅଗ୍ରଣୀ ପ୍ରଦେଶ । ସେଥିପାଇଁ ଏକ ମାନସିକ ପ୍ରସ୍ତୁତି ଦରକାର । ସେ ଯୋଡ଼ ହସ୍ତରେ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କରି କହିଛନ୍ତି, ଭଗବାନ ଓଡ଼ିଶା ବୁଭୁକ୍ଷୁ ଜନତା ଆଖିରୁ ଲୁହ ପୋଛିବା ପାଇଁ ପ୍ରୟାସ କର ।

ସ୍ୱର୍ଗୀୟ ଇନ୍ଦୁଭୂଷଣ ମିଶ୍ର ଓଡ଼ିଶାର ଜଣେ ଅଦ୍ୱିତୀୟ ଶିଶୁ ସାହିତ୍ୟିକ କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କର ଲିଖିତ 'ଗୀତ ଚାଙ୍ଗୁଡ଼ି' ଓଡ଼ିଶାର ଜ୍ଞାନଭଣ୍ଡାରକୁ ଏକ

ଅବଦାନ । ତାଙ୍କ ରଚିତ ଗୀତଗୁଡ଼ିକ କୋମଳମତି ପିଲାଙ୍କର ହୃଦୟସ୍ପର୍ଶୀ ଏବଂ ବୋଧଗମ୍ୟ ହେବ, ଏଥିରେ ସନ୍ଦେହ ନାହିଁ ।

ସାର୍ ଥିଲେ ସମାଜ ସଂସ୍କାରକ । ତାଙ୍କ ରଚିତ ଲୋକଗୀତ ମାଧ୍ୟମରେ ସମାଜରେ ସଂସ୍କାର ଆଣିବାପାଇଁ ସେ ପ୍ରାଣପଣେ ଚେଷ୍ଟା କରିଥିଲେ । ତାଙ୍କର ଲିଖିତ ବହିମାନଙ୍କ ମଧ୍ୟରେ 'ନିରୋଗ ରହନ୍ତୁ ସର୍ବେ', 'ସଦେଇର ସ୍ୱପ୍ନ', 'ଘରସଂସାର', 'ବାପା ମା'ଙ୍କ ପାଇଁ', 'ବରୁଣ ପୂଜା' ପ୍ରଭୃତି ପୁସ୍ତକ ସମାଜସଂସ୍କାରର ବାର୍ତ୍ତା ବହନକରି ସମାଜକ୍ଷେତ୍ରରେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣିବାପାଇଁ ଉଦ୍ଦିଷ୍ଟ । ସାର୍ ଶିକ୍ଷା ବିଭାଗର ବିଭିନ୍ନ ପଦପଦବିରେ ରହି ଶେଷରେ ଶିକ୍ଷା ବିଭାଗର (ସ୍କୁଲ ବ୍ରାଞ୍ଚର) ଡି.ଡି.ପି.ଆଇ ପଦରୁ ଅବସର ଗ୍ରହଣ କଲେ । ସେଥିମଧ୍ୟରୁ ବୋଧହୁଏ ଫୁଲବାଣୀ ମି.ଇ.ସ୍କୁଲ ହେଡ଼ମାଷ୍ଟର, କଟକ ସର୍କଲର ସ୍କୁଲ ଇନ୍ସପେକ୍ଟର, ଡି.ଏସ୍.ଓ. ପଦବି ତାଙ୍କ ପାଇଁ ଆଣିଦେଇଥିଲା ଗୌରବ । ତାଙ୍କରି ପ୍ରଚେଷ୍ଟାରେ ପ୍ରଥମକରି ଅତି ଶସ୍ତା ଏବଂ ସ୍ୱାସ୍ଥ୍ୟକର ବରପାଲି ପାଇଖାନାର ପ୍ରଚଳନ ହୋଇଥିଲା ।

ସାର୍‌ଙ୍କର ପ୍ରଚଣ୍ଡ ଆତ୍ମବିଶ୍ୱାସ ଥିଲା । ସେ ୧୯୫୪ମସିହାରେ ସୁବର୍ଣ୍ଣ ଜୟନ୍ତୀ ସମାବେଶରେ ଯୋଗଦାନ କରିବାପାଇଁ ବଦ୍ଧପରିକର ଥିଲେ । କାରଣ ମୋ ଛାତ୍ର ନାରାୟଣ ଡାକିଛି, ଗୁରୁବନ୍ଦନା ପାଇଁ, ଶିକ୍ଷକ କେବେ ରହି ନପାରେ । ଏଥିଲା ଛାତ୍ର-ଶିକ୍ଷକ ମଧ୍ୟରେ ସମ୍ପର୍କ । ସୁତରାଂ ମୋଟାମୋଟି କହିବାକୁ ଗଲେ ତାଙ୍କ ଜୀବନର ଇତିହାସକୁ ଯେତେ ବିଶ୍ଳେଷଣ ଏବଂ ଅନୁଶୀଳନ କରିବେ, ସେତିକି ତାଙ୍କର ଅନନ୍ୟ ବ୍ୟକ୍ତିତ୍ୱର ପରିପ୍ରକାଶ ହେବ ।

ପ୍ରତ୍ୟେକ କ୍ଷେତ୍ରରେ ସେ ଭଗବାନଙ୍କ ଅଦୃଶ୍ୟ ହାତକୁ ଅନୁଭବ କରିଛନ୍ତି । ସେଥିପାଇଁ ସେ ଲେଖିଛନ୍ତି -

'ବୋଲ ହରି ବୋଲହରି
ହରି ହରି ବୋଲ
କେଶବ, ମାଧବ, ଗୋବିନ୍ଦ ବୋଲ ।'

ସାର୍, ଆଜି ଆଉ ନାହାନ୍ତି । ସେ କର୍ମମୟ ଜୀବନର ଅବସାନ ଘଟାଇ ଆରପାରିକୁ ଚାଲିଗଲେ । ୨୦୦୪ମସିହା ଅକ୍ଟୋବର ମାସ ୨୧ତାରିଖରେ । ଦିନେ ନା ଦିନେ ସମସ୍ତଙ୍କୁ ଯିବାକୁ ପଡ଼ିବ । ପୃଥିବୀରେ ସବୁ ମିଥ୍ୟା, କେବଳ ଜନ୍ମ ମୃତ୍ୟୁ ହିଁ ସତ୍ୟ । ସ୍ଥୂଳ ଶରୀର ମୃତ୍ୟୁ ଅଛି, କିନ୍ତୁ ସୂକ୍ଷ୍ମ ଶରୀରର ମୃତ୍ୟୁ ନାହିଁ । ତାହା ଅବିନାଶୀ । ସେଥିପାଇଁ ବୋଧହୁଏ କବି ଲେଖିଛନ୍ତି - 'ତୁମ ମର ଦେହ ଗ୍ରାସିଛି ଶ୍ମଶାନ, ମାତ୍ର ଯଶ ଦେହେ ତୁମେ ଆୟୁଷ୍ମାନ ।



# ଇନ୍ଦୁସାର୍ ଓ ନାଟ୍ୟଚେତନା

## ସୁବୋଧ ପଟ୍ଟନାୟକ

ଇନ୍ଦୁସାର୍‌ଙ୍କୁ 'ସ୍ୱର୍ଗତ' ଇନ୍ଦୁଭୂଷଣ ମିଶ୍ର ବୋଲି ଲେଖିବାକୁ ଯଥେଷ୍ଟ କୁଣ୍ଠାବୋଧ ହେଉଛି । ଏଥିପାଇଁ ଢେର୍ କାରଣ ଅଛି । ଯଦି ମରିବାଟା ହିଁ ଶେଷ କଥା, ତାହେଲେ 'ଅମର' ବୋଲି ଶବ୍ଦ ଭାଷାକୋଷରେ ରହିନଥାନ୍ତା । ଇନ୍ଦୁସାରଙ୍କ ପାଖରେ 'ଅମର' ହେବାର ସବୁଗୁଣ ରହିଛି । ଇନ୍ଦୁସାର୍ କୌଣସି ଶରୀର ଧାରଣ କରିଥିବା ମଣିଷର ଦେହ ଭିତରେ ସୀମିତ ନଥିଲେ । ସେ ସମାଜର ଭଲପାଇଁ ଲଢୁଥିବା ସୈନିକର ଏକ ଚିହ୍ନଥିଲେ । ସେଇ ଇନ୍ଦୁସାର୍‌ଙ୍କୁ ଦେଖି ଅନେକ ମଣିଷମାନେ ନିଜ ଦେହର ସୀମାରୁ ନିଜକୁ ମୁକୁଳେଇ ଭଲପାଇଁ ଲଢୁଥିବା ସୈନିକର ଆନ୍ଦୋଳନକାରୀ ରୂପ ଆଡ଼କୁ ମୁହାଁଇଛନ୍ତି । 'ନାଟ୍ୟଚେତନା'ର ପତକା ଉତ୍ତୋଳନ କରିବାକୁ ଆସି ତାଙ୍କର ସ୍ୱାଧୀନତା ସମୟର ଅଂଶଗ୍ରହଣ ଓ 'ଡାକେରେ ଡାକେ ଜନମ ମାଟି' ଗାଇବା ଆମକୁ ଗରମ କରିଦେଇଥିଲା । ନିଜଘର ପୋଡ଼ିଗଲେ ଯେମିତି ଜଣେ ଚିତ୍କାର କରନ୍ତା, ଆମକୁ ସେମିତି ଲାଗିଥିଲା । 'ବରପାଲି' ପାଇଖାନାର ନାମ କାହିଁକି ବରପାଲି ହେଲା ବୋଲି ତାଙ୍କଠୁ ଶୁଣିଲୁ । କାରଣ, ସମ୍ବଲପୁର ଜିଲ୍ଲା ବରପାଲିରେ ଜଣେ ଗୋରା ଇଂଜିନିୟରଙ୍କ ସହ ଏକ ଗବେଷଣାଗାର ଶିବିରରେ ରହି ସହଜ ଓ ଅଳ୍ପଖର୍ଚ୍ଚରେ ପାଇଖାନା ତିଆରି କରି ଏକ ସୁସ୍ଥ ପରିବେଶ ଗଢିବାର ଆନ୍ଦୋଳନର ଇନ୍ଦୁସାର୍ ଥିଲେ ଜଣେ ସୈନିକ । କିଛି ଲୋକନୃତ୍ୟକୁ ଯଥା - କାଠିନାଚ ଯାହା ଆମ ସଂସ୍କୃତିରୁ ଧୀରେଧୀରେ ହଜିଯାଇଛି ତାକୁ ଶିଖେଇବାର ପ୍ରବଳ ଆଗ୍ରହଥିଲା ତାଙ୍କର । ଅନେକବାର କହିଛନ୍ତି । ଥରେ ହଠାତ୍ ଆମର ଏକ ନାଟ୍ୟଅଭ୍ୟାସ ସମୟରେ ଆସି ଟିକିଏ ଆଭାସ ଦେଇଥିଲେ । ହେଲେ ଏଥିରେ ସନ୍ତୁଷ୍ଟ ଲାଗିଲାନାହିଁ । ତାଙ୍କଠାରୁ ଏହି ନାଚର ସମ୍ପୂର୍ଣ୍ଣ ରୂପକୁ ଗର୍ଭସ୍ଥ କରିବାକୁ ଇଚ୍ଛାକରି ଶିଖିବାର ଯୋଜନାକରି ମଧ୍ୟ ହୋଇପାରିଲାନି । ସାମାଜିକ ସେବାସଦନ, ଢେଙ୍କାନାଳର ସ୍ୱେଚ୍ଛାସେବୀ ସଂଗଠନର ସଭାପତି ଥିବାବେଳେ ଅନେକଥର ଗୋଟିଏ ସଭାରେ ବସିବାର ସୁଯୋଗ ମିଳିଛି । ତାଙ୍କର ଉତ୍ସାହପୂର୍ଣ୍ଣ ସମର୍ଥନ ସାମାଜିକ ସଦନ ଆନ୍ଦୋଳନର ନେତୃତ୍ୱ ନେଉଥିବା ପାତିଲଭାଇ ଖୁବ୍ ଉପଭୋଗ କରିଛନ୍ତି । ହେଲେ ଆମେ ସେଥିରୁ ଅନେକ ଜ୍ଞାନ ପାଇଛୁ । ତେବେ ସେ ଏକ ପଦବିର ଲୋଭରେ ସଭାପତି

ହୋଇନଥିବାର ପ୍ରମାଣ ଦେଲେ ସ୍ୱେଚ୍ଛାକୃତ ଅବସର ଘୋଷଣାକରି । ପ୍ରାୟ ସମସ୍ତେ ଭାବନ୍ତି ବୟସ ଅଧିକହେଲେ ମଣିଷ ଏକ ପଦପଦବି ଓ ପୁରସ୍କାର ଇତ୍ୟାଦିକୁ ଆଶାକରେ । ଇନ୍ଦୁସାର୍ ଥିଲେ ବ୍ୟତିକ୍ରମ । ଆମେ କହିଲୁ ସାର୍ ଆପଣଙ୍କ କଣ୍ଠରେ ସେଇ ସ୍ୱାଧନୀତାସଂଗ୍ରାମ ସଂଗ୍ରାମୀ ଗୀତ ଓ ଜଣେ ଅଜାଙ୍କ କଣ୍ଠରୁ ତାର ନାତିନାତୁଣୀଙ୍କ ପାଇଁ ଗୀତର ଆଜି ଖୁବ ଦରକାରୀ ହୋଇଛି । ତେଣୁ ତାଙ୍କ ମନୋନୀତ ଗୀତଗୁଡିଏ ତାଙ୍କରି କଣ୍ଠରେ ଭୁବନେଶ୍ୱର ଏକ ପେଶାଦାର ଷ୍ଟୁଡିଓରେ ରେକଡିଂ କରାଗଲା । ସେଗୁଡିକୁ ତାପରେ ଚେନ୍ନାଇର ଏକ ଷ୍ଟୁଡ଼ିଓରେ ନକଲକରି ପ୍ରାୟ ୫୦୦ଶୁଣିବା କ୍ୟାସେଟ୍ ବାହାରିଲା । ଏଗୁଡିକୁ ବିକ୍ରିକରି 'ନାଟ୍ୟଚେତନା' କିଛି ଆୟ କରିଛି । ଇନ୍ଦୁସାର୍ଙ୍କୁ କିଛି ଦେଇନି, ଇନ୍ଦୁସାର୍ ମାଗିନାହାନ୍ତି କି କେବେ ଆଶା କରିନାହାନ୍ତି । ବରଂ ଏହି କ୍ୟାସେଟ୍ ଠିକ୍‌ଠିକ୍ ଜାଗାରେ କେତେ ପହଞ୍ଚିପାରିବ ସେଥିପ୍ରତି ନଜର ଦେଇ ନାଟ୍ୟଚେତନାର ବିକ୍ରି ବଢ଼େଇବାକୁ ଜଣେ ମାର୍କେଟିଂ ଅଫିସର ଭଳି ନିଜର ଦାନ ବଢ଼େଇ ଦେଇଛନ୍ତି ।

ଏକଥା ମନେପଡ଼ିଲେ ମୁଣ୍ଡ ନଇଁଯାଏ । ଏବେ ଏଇ ଗୀତ ତାଙ୍କ କଣ୍ଠରୁ ହଜାରହଜାର ସମାଜକର୍ମୀ ଓ ନାଟ୍ୟକର୍ମୀଙ୍କ କଣ୍ଠକୁ ଯାଇଛି ଓ ପ୍ରିୟପାତ୍ର ହେଇଛି । ଏହି କ୍ୟାସେଟ୍‌ର ନାମକରଣ କ'ଣ କରାଯିବ ସେଥିଲାଗି ଅନେକ ତର୍କବିତର୍କ ପରେ କରାଗଲା "ଇନ୍ଦୁସାର୍ଙ୍କ ଗୀତ" । 'ନାଟ୍ୟଚେତନା'ର ଆଧୁନିକ ନାଟକ ଦେଖି ଜଣେ ପାରମ୍ପରିକ ଲୋକନାଟ୍ୟ କଳାର ପୁରୁଣା ଦର୍ଶକ ବା ନାଟ୍ୟକର୍ମୀ ସେତେ ଶୀଘ୍ର ଗ୍ରହଣ କରିନପାରେ, ଯେତେଶୀଘ୍ର ଇନ୍ଦୁସାର୍ କରୁଥିଲେ ନାଟ୍ୟଚେତନାର ବିଭିନ୍ନ ନାଟକ ଦେଖି ସେଇ ନାଟକର କିଛି ଅଂଶକୁ ମନେପକାଇ ଢେର ପ୍ରଶଂସା କରନ୍ତି । ମସ୍ତିଷ୍କରେ ଏତେ ଖୋଲା ଝରକା, ଯେ କୌଣସି ବାସ୍ନା କି ଗନ୍ଧର ପବନକୁ ଆଣି ନିଜ ଭିତରେ ହଜମ କରିବା ଓ ପବନକୁ ପ୍ରଶଂସା କରିବାଭଳି କ୍ୱଚିତ୍ ମିଳିବେ । ଇନ୍ଦୁସାର୍ ସେଭଳି ଜଣେ ମଣିଷ । ଓଡ଼ିଶାରେ ନାଟ୍ୟଚେତନା କରିଥିବା ନାଟ୍ୟଗ୍ରାମରେ ହୋଇଥିବା ଓଡ଼ିଆ ଲୋକନାଟ୍ୟ ଯନ୍ତ୍ରର ସଂଗ୍ରହାଳୟ ତିଆରି ହେବାର ନିଷ୍ପତ୍ତି ପରେ ଆମେ ତାଙ୍କୁ ହିଁ ଡାକିଲୁ ଏହାର ମୂଳଦୁଆ ପକେଇବାକୁ । ସେ ଖୋର୍ଦ୍ଧା ନିକଟ ବରୁଣେଇ ପଛପଟେ ଥିବା 'ନାଟ୍ୟଗ୍ରାମ'ରେ 'ନାଟ୍ୟଜ୍ଞାନ' ନାମକ ଏହି ସଂଗ୍ରହାଳୟର ମୂଳଦୁଆ ପକେଇଲେ । ସେଇ ଘରଟି ଏବେ ନାଟ୍ୟଗ୍ରାମର ମୁଖ୍ୟ ଆକର୍ଷଣ, ଯାହା ଜନସାଧାରଣଙ୍କୁ ଆକର୍ଷିତ କରେ । ଆମ ରାଜ୍ୟ ତଥା ଦେଶ ବିଦେଶରୁ ସାମୁହିକ ଭାବେ ଯେଉଁମାନେ ଆସନ୍ତି, ସମସ୍ତେ ସେମାନଙ୍କ କ୍ୟାମେରାରେ ଏହି ସଂଗ୍ରହଳାୟର ସାମନାରେ ଠିଆହୋଇ ଫଟୋଚିତ୍ର ଉଠେଇ ସାଙ୍ଗରେ ନେଇଯାଆନ୍ତି । ଏହା ଭିତରେ ନାଟ୍ୟଗ୍ରାମର ଇତିହାସକୁ ମନେପକାଇ ଯେଉଁ ଫଟୋଚିତ୍ର ପ୍ରଦର୍ଶନୀ ଅଛି, ସେଥିରେ ଇନ୍ଦୁସାର୍ଙ୍କ ମୂଳଦୁଆ ପକେଇବା ଚିତ୍ର ବି ଅଛି ।

ଇନ୍ଦୁସାର୍‌ଙ୍କ ଦୂରଦୃଷ୍ଟିକୁ ମାନିବାକୁ ହେବ । ନାଟ୍ୟଚେତନା କିପରି ଦୀର୍ଘସ୍ଥାୟୀ ହେବ, କୌଣସି ଅନୁଦାନ ଉପରେ ନିହାତି ନିର୍ଭରନକରି କେମିତି ଚାଲିବ, ସେଥିନେଇ ସିଏ ଚିନ୍ତିତ ଥିଲେ । ସମାଧାନର ବାଟ ପାଇଁ ଗୋଟିଏ ଛୋଟ ଉଦାହରଣ ଭାବେ - ନାଟ୍ୟଗ୍ରାମରେ କପାରକ୍ଷ କରିବାର ପ୍ରସ୍ତାବ ଦେଲେ । ପ୍ରସ୍ତାବ ଦେବା ତାଙ୍କର ବାକ୍ୟବାଣ ନୁହେଁ । ନିଜେ ଆମପାଇଁ ଶହଶହ ଘରା ପ୍ରସ୍ତୁତ କରିବାକୁ ମଞ୍ଜିର ପୁଡିଆ ଦେଲେ । ତାଙ୍କ କଥାମାନି ଆମେ ପ୍ରାୟ ୨୦୦ଘରା କଲୁ । ହେଲେ ନାଟ୍ୟଗ୍ରାମରେ ପାଣି ଅଭାବରୁ ସବୁଗୁଡିକୁ ବଞ୍ଚାଇ ପାରିଲୁ ନାହୁଁ । ସେଥିରୁ ଦୁଇଟି ବଞ୍ଚିଗଲେ । ସେ ଦୁଇଟି ଏଇ କେତୋଟି ବର୍ଷରେ ଖୁବ୍ ଉଚ୍ଚଗଛ ଓ ପ୍ରତିବର୍ଷ ପ୍ରାୟ ୩କିଲୋ କପା ଆମକୁ ଦେଉଛନ୍ତି ।

ତେଣୁ ଇନ୍ଦୁସାର୍‌ଙ୍କୁ 'ଚାଲିଗଲେ', 'ସ୍ୱର୍ଗତଃ ଇତ୍ୟାଦି ଇତ୍ୟାଦି କହିବାକୁ ଆମେ ନିଶ୍ଚୟ ବିରୋଧ କରିବୁ । ବର୍‌ପାଲି ପାଇଖାନା, ସାର୍‌ଙ୍କ 'ଡାକେ ଜନମ ମାଟି' ଗୀତ, ନାଟ୍ୟଗ୍ରାମର ସଂଗ୍ରହାଳୟ 'ନାଟ୍ୟଜ୍ଞାନ' ଓ ସେଇ ଦୁଇଟା କପାଗଛ ବଞ୍ଚିରହି ସାର୍‌ଙ୍କୁ ଆମ ଆଖିରେ ଅମର କରିଦେଇଛି । ସାର୍ ଭଗବାନଙ୍କ ଭଳି, ତାଙ୍କର ସଦ୍‌ଆତ୍ମା ମାଧ୍ୟମରେ ଏମିତି ଅନେକଙ୍କ ଗହଣରେ ଅମର ହେଇ ବଞ୍ଚିରହିଛନ୍ତି ଓ ରହିବେ - ବୁଲିବେ - ଖୁସିହେବେ ।



# ସେ ଗୁରୁ, ମୁଁ ଚେଲା

## ଡ. ଭାଗ୍ୟଧର ମହାନ୍ତି

ଶ୍ରୀଯୁକ୍ତ ଇନ୍ଦୁଭୂଷଣ ମିଶ୍ର ମୋଠାରୁ ବୟସରେ ବହୁତ ବଡ଼ । ମୁଁ ତାଙ୍କ ପୁଅଙ୍କ ବୟସର । ଭାରତୀୟ ପ୍ରାକ୍-ବିଦ୍ୟାଳୟ ସଂଘର (ଆଇ.ଏ.ପି.ଇ) ସଭ୍ୟ ହେବାପରେ ମୁଁ ତାଙ୍କ ସଂସ୍ପର୍ଶରେ ଆସିଲି । ସ୍ୱର୍ଗତଃ ହରିହର ମିଶ୍ର ସେତେବେଳେ ସଭାପତି ଥାଆନ୍ତି । ପ୍ରଫେସର ଶତ୍ରୁଘ୍ନ ନାଥ, ଇନ୍ଦରଜିତ୍ ଖୁରାନା, ଇନ୍ଦୁଭୂଷଣ ମିଶ୍ରଙ୍କ ପରି ପୁରୁଖା ଲୋକଙ୍କ ଦିଗ୍‌ଦର୍ଶନରେ ଆମେ ସବୁ ବାନରସେନା ପରି କାମ କରୁଥାଉ, ସେତେବେଳେ ସର୍ବଭାରତୀୟ ସ୍ତରରେ ଓଡ଼ିଶା ଶାଖାର ବେଶ୍ ନାଁ ।

ଇନ୍ଦୁବାବୁଙ୍କର ପ୍ରାକ୍‌ବିଦ୍ୟାଳୟ କାର୍ଯ୍ୟକ୍ରମରେ ବେଶ୍ ଦକ୍ଷତା ଥାଏ । ବୟସ ସତୁରୀ ପାଖାପାଖି ହୋଇଥିଲେ ମଧ୍ୟ ଗୀତର ତାଳେତାଳେ ଅଙ୍ଗଭଙ୍ଗୀ କରିବାରେ ସେ ସେତେବେଳେ ଅଦ୍ୱିତୀୟ ଥିଲେ । କାଠିନାଚ ଓ ଅନ୍ୟାନ୍ୟ ପ୍ରାକ୍-ବିଦ୍ୟାଳୟ ସ୍ତରର ନାଚ (Action Songs) ଇନ୍ଦୁବାବୁ ପରିବେଷଣ କରୁଥିବାବେଳେ ଯେ କେହି ଦେଖୁଥିଲେ ଘଡିଏ ଠିଆ ହୋଇଯାଉଥିଲେ । ଏବେ ଅଙ୍ଗନବାଡ଼ି ଓ ବାଲ୍‌ବାଡ଼ି କେନ୍ଦ୍ରରେ ଯେତେ ଗୀତ ନାଚ ହେଉଛି, ଅଧିକାଂଶ ତାଙ୍କରି ଲେଖା; ତାଙ୍କରି ସ୍ୱର ।

ସେ ଯେତେବେଳେ ଜାଣିଲେ ମୁଁ ତାଙ୍କ ଉପରଶ୍ରେଣୀର ଛାତ୍ର ବିଶ୍ୱନାଥ ମହାନ୍ତିଙ୍କ ଭ୍ରାଇଁ, ମୋତେ ସେବେଠାରୁ ନିଜର କରିନେଲେ । ତାଙ୍କ ଦୃଷ୍ଟିରେ ବିଶ୍ୱନାଥ ବାବୁ ଅକ୍ଷର ଲେଖାରେ, ଇଂରାଜୀ ଜ୍ଞାନରେ ବିଦ୍ୟାଳୟର ଅନେକ ଛାତ୍ରଙ୍କର ଅନୁକରଣୀୟ ଥିଲେ । ତେଣୁ ମୋର ସ୍ଥାନ ଇନ୍ଦୁବାବୁଙ୍କ ପାଖେ ସ୍ୱତଃ ଉପରକୁ ଉଠିଗଲା, ଏଥି ସଙ୍ଗେସଙ୍ଗେ ମୋର ଗୀତଗାଇବା ଓ ଅଙ୍ଗଭଙ୍ଗୀ କରିବାର କିଞ୍ଚିତ ଦକ୍ଷତା ମଧ୍ୟ ତାଙ୍କୁ ଉତ୍ସାହିତ କରିଥିଲା । ଫଳରେ ଯେଉଁଠାରେ ପ୍ରାକ୍‌ବିଦ୍ୟାଳୟ ତାଲିମ୍ ଶିବିର ହେଲା, ସେ ମୋତେ ତାଙ୍କ ସହ ନେବାକୁ ଲାଗିଲେ । ଏତେବଡ଼ କୁଶଳୀ ଓ ଦକ୍ଷବ୍ୟକ୍ତି ବିଶେଷଙ୍କର ଚେଲା ହେବା ଦ୍ୱାରା ମୋର ପ୍ରାକ୍‌ବିଦ୍ୟାଳୟ କାର୍ଯ୍ୟକ୍ରମରେ ଥିବା କିଞ୍ଚିତ ଦକ୍ଷତା ବେଶ୍ ପରିମାର୍ଜିତ ଓ ପରିବର୍ଦ୍ଧନ ହେଲା ।

ବିଶେଷକରି ଅଙ୍ଗନବାଡ଼ି ତାଲିମ୍ କେନ୍ଦ୍ରରେ ଦିଗ୍‌ଦର୍ଶନ ଦେବାପାଇଁ ପ୍ରାୟ ଓଡ଼ିଶାର ସବୁ କେନ୍ଦ୍ରରୁ ଇନ୍ଦୁବାବୁଙ୍କ ପାଖକୁ ଅନୁରୋଧ ଆସୁଥିଲା । ଯେହେତୁ ମୁଁ ସେ

ପର୍ଯ୍ୟନ୍ତ ଘକିରିରେ ଥିଲି, ଦୂର ଦୂରାନ୍ତକୁ ମୁଁ ଯାଇ ପାରୁନଥିଲି, ସତ୍ୟଭାମାପୁର କସ୍ତୁରବା ଗାନ୍ଧି ଜାତୀୟ ମେମୋରିଆଲ୍ ଟ୍ରଷ୍ଟ HETC, SIRD ଭୁବନେଶ୍ୱର, ଚୌଦ୍ୱାର ଅନାଥାଶ୍ରମ ଇତ୍ୟାଦି କେନ୍ଦ୍ରର ଇନ୍ଦୁସାର୍ ଓ ମୁଁ ଧରାବନ୍ଧା ପ୍ରଶିକ୍ଷକ ଥିଲୁ । ଏହି ଅବସରରେ ତାଙ୍କଠାରୁ ମୁଁ ଅନେକ ଦକ୍ଷତା ହାସଲ କରିଥିଲି । ହେଲେ ତାଙ୍କର ବିକଳ୍ପ ହେବାର ସାମର୍ଥ୍ୟ ମୋର ବା କାହିଁ ? ପରେପରେ ବୟସାଧିକ୍ୟ ଯୋଗୁ ସେ ଆଉ ଏସବୁ କେନ୍ଦ୍ରକୁ ଯାଇପାରିଲେ ନାହିଁ । ତାଙ୍କ ବିନା ସହାୟତାରେ ଏସବୁ କରିବାକୁ ମୋର ବିଶେଷ ଆଗ୍ରହ ରହିଲା ନାହିଁ । ତଥାପି ସେ ମୋତେ ଅନେକ ଉତ୍ସାହିତ କରିଛନ୍ତି । ପ୍ରାତଃ ଭ୍ରମଣରେ ଆସି ମୋତେ ଅନେକବାର ଶେଯରୁ ଉଠାଇଛନ୍ତି । ସବୁକ୍ଷେତ୍ରରୁ ଅନେକ ଉପଦେଶ ଦେଇଛନ୍ତି । ଗପଟିଏ କି ଗୀତଟିଏ ଲେଖିଲେ, ଆଦିଗୁରୁ ପରି ମୁଁ ତାଙ୍କୁ ଆଗ ଦେଖାଏ । ତାଙ୍କ ଘରତ ମୋତେ ମୋ ନିଜ ହିତାକାଂକ୍ଷୀ ସଂପର୍କୀୟ ଘର ପରି ଲାଗେ । ଇନ୍ଦୁସାର୍ କହିବା ପୂର୍ବରୁ ମାଉସୀ ଚା’, ବିସ୍କୁଟ୍, ରାଶିକୋରା ଇତ୍ୟାଦି ପାଖରେ ଥୋଇଦିଅନ୍ତି । ଆହା, ଏପରି ଏକ ପୁଣ୍ୟାତ୍ମାଙ୍କର ଶେଷଦର୍ଶନ ମୋ ଭାଗ୍ୟରେ ଜୁଟିଲା ନାହିଁ ।

ଆଠଦଶବର୍ଷ ତଳେ ଭାରତୀୟ ପ୍ରାକ୍-ବିଦ୍ୟାଳୟ ସଂଘର ଓଡ଼ିଶା ଶାଖା ବେଶ୍ ସକ୍ରିୟ ଥିଲା । ଏସବୁ ହୋଇପାରିଥିଲା ପୂଜ୍ୟ ହରିହର ମିଶ୍ର, ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ପରି ଶିକ୍ଷାବିତ୍‌ଙ୍କ ଦିଗ୍‌ଦର୍ଶନରେ ଓ ଇନ୍ଦୁବାବୁ, ଶ୍ରୀମତୀ ଖୁରାନା, ଶ୍ରୀମତୀ ସଂଯୁକ୍ତା ଚୌଧୁରୀ, ଜଗନ୍ନାଥ ବାବୁଙ୍କ ପରି ଶିକ୍ଷାବିତ୍‌ଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ । ହୁଏତ କୌଣସି କୌଣସି କାରଣରୁ କେହିକେହି ପରବର୍ତ୍ତୀ ଅବସ୍ଥାରେ ପଶ୍ଚାତ୍‌ପଦ ହେଲେ, ହେଲେ ପ୍ରାକ୍‌ବିଦ୍ୟାଳୟ କାର୍ଯ୍ୟକ୍ରମ ଇନ୍ଦୁବାବୁଙ୍କର ଅସ୍ଥିମଜ୍ଜାଗତ ହୋଇଯାଇଥିଲା । ପ୍ଲାଟ୍‌ଫର୍ମ ସ୍କୁଲ, ସ୍ଲମ୍ ଏରିଆର୍ ଶିକ୍ଷାବ୍ୟବସ୍ଥା, କଣ୍ଢେଇ ଲାଇବ୍ରେରୀ ଇତ୍ୟାଦି ଯାହା ଯାହା ଯୋଜନା ଆଜି ସାରାଦେଶକୁ ପ୍ରଭାବିତ କରିଛି, ତା’ପଛରେ ଶ୍ରୀଯୁକ୍ତ ଇନ୍ଦୁଭୂଷଣ ମିଶ୍ରଙ୍କ ନିଷ୍ଠା, ଦିଗ୍‌ଦର୍ଶନ ଅନସ୍ୱୀକାର୍ଯ୍ୟ । ଶ୍ରୀମତୀ ଖୁରାନା ଓଡ଼ିଶାର ଅବହେଳିତ ଶିଶୁମାନଙ୍କ ବିକାଶପାଇଁ ଆଜି ଯେଉଁସବୁ ପଦକ୍ଷେପ ନେଉଛନ୍ତି, ତା ପଛରେ ଥିବା ଇନ୍ଦୁବାବୁଙ୍କ ଆଶୀର୍ବାଦ ଓ ଦିଗ୍‌ଦର୍ଶନ ଆଜି ସେ ସବୁକାର୍ଯ୍ୟକ୍ରମକୁ ସର୍ବଜନାଦୃତ କରିପାରିଛି । କିନ୍ତୁ ଏପରି ଏକ ଦକ୍ଷ ଓ ଦୂରଦର୍ଶୀ ଶିକ୍ଷାବିତ୍‌ଙ୍କ ଅଭିଜ୍ଞତାକୁ ଆମ ରାଜ୍ୟ ବିନିଯୋଗ କରିପାରିଲା ନାହିଁ । ତାଙ୍କର ନିସ୍ୱାର୍ଥପରତା, ସ୍ପଷ୍ଟବାଦିତା, ସଚ୍ଚୋଟତା ଓ ଶିକ୍ଷଣ କ୍ଷେତ୍ରରେ ଗଭୀର ଅଭିଜ୍ଞତା ହୁଏତ କେଉଁକେଉଁ ମାନଙ୍କ ପାଖରେ ସ୍ପୃହଣୀୟ ହେଲାନାହିଁ । ଏଥିପାଇଁ ସେ ବେଳେବେଳେ ଦୁଃଖ ପ୍ରକାଶ କରୁଥିଲେ । ହେଲେ ବିଭିନ୍ନ ପ୍ରକଳ୍ପର ସଫଳତା ପାଇଁ ଆବଶ୍ୟକସ୍ଥଳେ ନିଜ ସଂପୃକ୍ତିକୁ ଦୂରେଇ ନେଇନଥିଲେ । ଶାରୀରିକ କର୍ମ ତତ୍ପରତା ଶିଥିଳ ହୋଇ ଆସୁଥିଲେ ମଧ୍ୟ ମୃତ୍ୟୁପର୍ଯ୍ୟନ୍ତ ମାନସିକ ସ୍ତରରେ ବେଶ୍ ତତ୍ପର ଥିଲେ ।

ତାଙ୍କ ବିଷୟରେ କହୁଥିଲେ ତ କହୁଥିବି । ଏପରି ସଚ୍ଚୋଟ ବ୍ୟକ୍ତିବିଶେଷ ଖୁବ୍ କମ୍ ଜନ୍ମହୁଅନ୍ତି । ଗାନ୍ଧିଙ୍କର ମୌଳିକ ଶିକ୍ଷାଦ୍ୱାରା ପ୍ରଭାବିତ ହୋଇ ନିଜର ଜୀବନଟାକୁ ଗାନ୍ଧିମୟ କରିଦେଇଥିଲେ । ଖଦଡ଼ ଖାଲି ତାଙ୍କୁ ମାନୁନଥିଲେ; ସେ ଖଦଡକୁ ମାନୁଥିଲେ, ତାଙ୍କ ଦେହରେ ଖଦଡ ଦେଖିଲେ ଖଦଡର ମହତ୍ୱ ବୁଝି ହେଉଥିଲା । ସବୁବେଳେ ବ୍ୟସ୍ତ ହୋଇ କହିବେ, ଭାଗ୍ୟଧର, ଏଠି କିଛି ହେବନି; ଏ ଓଡ଼ିଆ ମଣିଷ ହେବେନି । ଆମର କ'ଣ ନାହିଁ? ହେଲେ ଆମେ କ'ଣ କରୁଚୁ?" ତାଙ୍କ ଅନ୍ତର୍ଦାହ ଅନେକ ସମୟରେ ବିନା ଦ୍ୱିଧାରେ ଏମିତି ପ୍ରକାଶଲାଭ କରୁଥିଲା, ମନଟା ତାଙ୍କର ଖିନ୍‌ଭିନ୍ ହୋଇଯାଉଥିଲା । ଏକଥା ସମସ୍ତେ ବୁଝନ୍ତି, ହେଲେ କେତେ ଜଣ ଇନ୍ଦୁସାରଙ୍କ ପରି ବ୍ୟସ୍ତ ବିବ୍ରତ ହୁଅନ୍ତି ଶିକ୍ଷାର ପ୍ରସାର ପାଇଁ ?

ମାନବ ଶିଶୁର ସର୍ବାଙ୍ଗୀନ ବିକାଶ ପାଇଁ ସେ ଅନେକ ପ୍ରଯତ୍ନ କରିଛନ୍ତି । ଏଭଳି ଏକ ଗୁରୁଙ୍କର ମଣିପରି ମଣିଷଟିଏ ସ୍ମୃତି, ତାଙ୍କ ସଂପର୍କରେ ଆସିଥିବା ଏବଂ ତାଙ୍କ ଦ୍ୱାରା ଉପକୃତ ହୋଇଥିବା କି ଶିକ୍ଷିତ ହୋଇଥିବା ବ୍ୟକ୍ତିବିଶେଷଙ୍କ ହୃଦୟରେ ଉଜ୍ଜୀବିତ ହୋଇଥିବ । ତାଙ୍କର ଶୁଭାଶୀର୍ବାଦ ଆମପାଇଁ ଝରିଆସି ଆମକୁ ଏମିତି ଦିଗ୍‌ଦର୍ଶନ ଦେଉଥାଉ ।



# ନଖାଉର ଗାଁ ଓ ଇନ୍ଦୁବାବୁ

## ରାଜକିଶୋର ରାଉତ

ସ୍ୱର୍ଗତ ଇନ୍ଦୁଭୂଷଣ ମିଶ୍ର ଜଣେ ବିଦ୍ୱାନ ଶିକ୍ଷାସଂଗଠକ, ସମାଜ ସଂସ୍କାରକ, ସମାଜସେବୀ ଓ ନିର୍ଭୀକ ବ୍ୟକ୍ତିଥିଲେ । ୧୯୭୧ମସିହାରେ ଆମ୍ଭ ଗ୍ରାମକୁ ରାଜ୍ୟ ଗୋଷ୍ଠୀଉନ୍ନୟନ ତାଲିମକେନ୍ଦ୍ର ଆଦର୍ଶଗ୍ରାମ ରୂପେ ବାଛିନେଇ ତାଙ୍କର ପୁରୁଷ ସାମାଜିକ ଶିକ୍ଷା-ସଂଗଠକ ଓ ମହିଳା ଶିକ୍ଷା ସାମାଜିକ ସଙ୍ଗଠିକାମାନଙ୍କୁ ତାଲିମ ପାଇଁ ପଠାଉଥିଲେ । ସେତେବେଳେ ତାଙ୍କର ପ୍ରଶିକ୍ଷକ ଥାନ୍ତି ଶ୍ରୀଯୁକ୍ତ ହରେକୃଷ୍ଣ ବହିଦାର । ସେମାନେ ଇନ୍ଦୁବାବୁଙ୍କୁ ସାଙ୍ଗରେ ଧରି ଆସନ୍ତି । ପ୍ରଥମେ ତାଙ୍କର ନଜର ପଡ଼ିଲା ଶିକ୍ଷାକ୍ଷେତ୍ରରେ । ଗାଁରେ ମାତ୍ର ଗୋଟିଏ ନିମ୍ନପ୍ରାଥମିକ ସ୍କୁଲଥିଲା । ତାହା ୧୯୧୭ମସିହାରେ ପ୍ରତିଷ୍ଠା ହୋଇଥିଲା । ଏହି ସ୍କୁଲରେ ମାତ୍ର ଗୋଟିଏ ବଖରା ଘର, ଜଣେ ଶିକ୍ଷକ ଓ ପିଲା ୧୨୦ଥିଲେ । ଇନ୍ଦୁବାବୁ ତତ୍‌କ୍ଷଣାତ୍ ଗ୍ରାମର ଯୁବକମାନଙ୍କୁ ଏକାଠିକରି ଯୁବକସଂଘ ମାଧ୍ୟମରେ ଗ୍ରାମବାସୀଙ୍କୁ ଏକଜୁଟ କରି ଗ୍ରାମର ଅନତି ଦୂରରେ ଏକ ସ୍କୁଲ ଗୃହ ପ୍ରତିଷ୍ଠା କରାଇଲେ । ଏହାକୁ ପଞ୍ଚମଶ୍ରେଣୀ ପର୍ଯ୍ୟନ୍ତ ବଢ଼ାଇ ୩ଜଣ ଶିକ୍ଷକ ଅଣାଇଲେ । ୧୯୭୭ମସିହାରୁ ଇନ୍ଦୁବାବୁ ଭୁବନେଶ୍ୱର ଶିକ୍ଷାଜିଲ୍ଲାଅଧିକାରୀ ଏମ୍.ସୁଭଦ୍ରାମାଙ୍କୁ ସ୍କୁଲ ପରିଦର୍ଶନ କରାଇ ସେହିବର୍ଷ ମଧ ଇଂରାଜି ବିଦ୍ୟାଳୟ ପ୍ରତିଷ୍ଠା କରାଇଲେ । ଏହି କାର୍ଯ୍ୟ ସ୍ଥାନୀୟ ଜାଗୁଲାଇ ଯୁବକ ସଂଘର ସଭାପତି ଶ୍ରୀ ନୃସିଂହ ଚରଣ ରାଉତରାୟ ଓ ସମ୍ପାଦକ ଶ୍ରୀ ଗୋଲକ ବିହାରୀ ପ୍ରଧାନ ଏବଂ ସଭ୍ୟମାନଙ୍କ ସକ୍ରିୟ ସହଯୋଗରେ ହୋଇଥିଲା ।

୧୯୭୨ମସିହା ବେଳକୁ ଆମ୍ଭଗ୍ରାମରେ ପାଇଖାନାର ପ୍ରସାର ବିଶେଷ ହୋଇପାରିନଥିଲା । ଗାଁଲୋକେ ଏଣେତେଣେ ଝାଡ଼ା ବସୁଥିଲେ । ତାଙ୍କୁ ଏସବୁ ଭଲ ଲାଗୁନଥିଲା । ଇନ୍ଦୁବାବୁ ଗ୍ରାମବାସୀଙ୍କ ପାଇଁ ଗାଁରେ ବରପାଲି ପାଇଖାନା UNESCO ସହାୟତାରେ ବସାଇଥିଲେ । ଗାଆଁର ଶ୍ରୀ ରାଜକିଶୋର ରାଉତ, ନଟବର ସ୍ୱାଇଁ ଓ ଶ୍ରୀ ଅଲେଖ ପ୍ରଧାନ ତାଙ୍କୁ ସକ୍ରିୟ ସହାୟତା କରିଥିଲେ ।

ସେତେବେଳେ ନଡ଼ିଆଗଛ ଲଗାଇଲେ ମୁଣ୍ଡ ଖାଇଯିବା ଭୟରେ କେହି ଲଗାଉନଥିଲେ । ଇନ୍ଦୁବାବୁ ନିଜେ ସାକ୍ଷୀଗୋପାଳରୁ ନଡ଼ିଆଚାରା ଆଣି ଗାଁରେ

ଲଗାଇଥିଲେ । ତାହା ପରେ ଏ ଅନ୍ଧ ବିଶ୍ୱାସ ଦୂର ହୋଇଯିବାରୁ ଗାଁ ଲୋକେ ନିଜେ ଲଗାଇଲେ । ବର୍ତ୍ତମାନ ଆମ ଗାଁ ଓ ଆମ ଆଖପାଖ ଗାଁଆରେ ହଜାରହଜାର ନଡ଼ିଆଗଛ ଫଳନ୍ତି ଅବସ୍ଥାରେ ଦଣ୍ଡାୟମାନ ।

୧୯୭୮ ମସିହା ଆମ ଗାଁର ଉଠାଜଳସେଚନ ପ୍ରକଳ୍ପର ମୋଟର ଚୋରି ହୋଇଯାଇଥାଏ । ଆମେ ଚାଷୀମାନେ ବାରମ୍ବାର ଅନୁରୋଧ କଲେ ସୁଦ୍ଧା ସେତେବେଳେ ନିର୍ବାହୀ ଯନ୍ତ୍ରୀ ଉମାକାନ୍ତ ମିଶ୍ର କର୍ଣ୍ଣପାତ କରୁନଥାନ୍ତି । ଇନ୍ଦୁବାବୁ ଗୋଟିଏ ଥର ଫୋନ କରିବାରୁ ନିର୍ବାହୀଯନ୍ତ୍ରୀ ବାଧହୋଇ ମୋଟର ଲଗାଇବାର ବ୍ୟବସ୍ଥା କରିଦେଲେ ।

ଗାଆଁରେ ବିଭିନ୍ନ ପ୍ରକାର ଫଳଗଛ ଲଗାଇବା ପାଇଁ ସେ ଲୋକମାନଙ୍କୁ ଉତ୍ସାହିତ କରୁଥିଲେ । ତାଙ୍କ ଘରକୁ ଗଲେ ସଜନା ମଞ୍ଜି ଇତ୍ୟାଦି ଦେଉଥିଲେ । କଦଳୀ, ପିଜୁଳି ଆମ୍ବ ଓ ଅନ୍ୟାନ୍ୟ ଫଳଗଛ ଲଗାଇବାପାଇଁ ଲୋକମାନଙ୍କୁ ସରକାରୀ ସ୍ତରରେ ସାହାଯ୍ୟ କରୁଥିଲେ । ଗାଆଁରେ ସ୍ୱାସ୍ଥ୍ୟ ଓ ଶିକ୍ଷା ବିଷୟରେ ଅବଗତ କରାଇବା ପାଇଁ ଡାକ୍ତରମାନଙ୍କୁ ଡକାଇ କ୍ୟାମ୍ପକରାଇ ସ୍ୱାସ୍ଥ୍ୟପରୀକ୍ଷା କରାଇ ଔଷଧପତ୍ର ବ୍ୟବସ୍ଥା କରୁଥିଲେ । ଶିଶୁ ପରିଚର୍ଯ୍ୟା କରିବାପାଇଁ ୧୯୭୬ମସିହାରେ ଗାଁଆରେ ଏକ ଅଙ୍ଗନବାଡ଼ି କେନ୍ଦ୍ର ପ୍ରତିଷ୍ଠା କରିଥିଲେ ।



# ଆପଣଙ୍କ ସ୍ମୃତିରେ

## ଶ୍ରୀମତୀ ସରୋଜିନୀ ମହାପାତ୍ର

ମାନନୀୟେଷୁ

ଆପଣଙ୍କ କଥା ବହୁତ ମନେପଡ଼େ । କେମିତି ମନେ ନପଡିବ ଯେ । ପ୍ରତିଦିନ ସକାଳୁ ଝରକାଟା ଖୋଲିଲା ମାତ୍ରେ ସେଇ ଜାମୁଗଛଟି ପରା ପବନରେ ଡାଳପତ୍ର ହଲାଇ ଆପଣଙ୍କ କଥା ମନେପକେଇ ଦଉଛି । ଆପଣଙ୍କର ସେଇ ଶୁଭ୍ର-ଖଦୀ ପରିହିତ ଦୀର୍ଘ ଗୌର ସୌମ୍ୟ ଚେହେରା ଜାମୁ ଗଛଟିର ଚଳଚଞ୍ଚଳ ଡାଳପତ୍ରର ପୃଷ୍ଠ ଭୂମିରେ ଉଙ୍କିମାରୁଛି । ଭୁଲିବାର ବାଟ ନାହିଁ ।

ମନେ ଅଛିନା, କିଛିବର୍ଷ ତଳେ କୌଣସି ଫୁଲଗଛର ଚାରା ବୋଲି ଭାବି ଆପଣ ଆମକୁ ଛୋଟ ଚାରାଗଛଟିଏ ଦେଇଥିଲେ । ଗଛଟିକୁ ଲଗାଇ ତାର ଯତ୍ନନେବାକୁ ତାଗିଦା କରିଦେଇଥିଲେ । ଫୋନ୍‌ରେ ମଧ ବାରମ୍ବାର ପଚାରି ବୁଝୁଥିଲେ ଗଛଟି ବଞ୍ଚିଲା କି ନାହିଁ ।

ଗଛଟି ବଞ୍ଚିଲା ଏବଂ ବଢିଚାଲିଲା ମଧ, କିନ୍ତୁ କିଛି ଫୁଲ ନଫୁଟିବାରୁ କୌଣସି ବଣୁଆ ଗଛ ହେଇଥିବ ଭାବି ତାକୁ ଥରେ କାଟି ଦେଇଥିଲି । ହେଲେ ପୁଣି ଡାଳପତ୍ର ମେଲେଇ ସେ'ତ ଆପେଆପେ ବଢିଚାଲିଲା । ସତେଅବା ସେଇ ଗଛଟିର ବଢିଚାଲିବା ପଛରେ ରହିଥିଲା ଆପଣଙ୍କ ଇଚ୍ଛାଶକ୍ତି ।

ଗତବର୍ଷ ଖରାଦିନରେ ସେ ଗଛରେ ପ୍ରଥମ ଫଳଧରି ତା'ର ପରିଚୟ ଦେଲା । ତାହାଥିଲା ଗୋଟିଏ ଜାମୁଗଛ । ବେଶ୍ ଭଲ ମିଠା ଏବଂ ଅପେକ୍ଷାକୃତ ବଡ଼ବଡ଼ ଜାମୁକୋଳି । ଅଳ୍ପକିଛି ଗୋଟିଏ ଡାଳରେ ଫଳିଥିଲା । ସେଥିରୁ କିଛି ଆପଣଙ୍କ ପାଖରେ ପହଞ୍ଚାଇବାକୁ ଆମର ପ୍ରବଳ ଆଗ୍ରହ ଥିଲା । କିନ୍ତୁ ତାହା କରିପାରିଲୁ ନାହିଁ । ଭାବିଲୁ ଏଥର ଫଳିଲେ ନିଶ୍ଚୟ ଆପଣଙ୍କୁ ଭେଟି ଦେବୁ । ଏଥର କିନ୍ତୁ ସମୟ ଅପେକ୍ଷା କଲା ନାହିଁ । ମନରେ ଦୁଃଖ ଓ ଅବସୋସ ଭରିଯାଉଛି । ସେଥିରୁ ଦିଟା କୋଳି ଆପଣଙ୍କ ହାତକୁ ବଢାଇଦେଇଥିଲେ ଆପଣ ଯୋଉ ହସ ହସ ମୁହଁରେ ଖୁସିରେ ତାହା ଗ୍ରହଣ କରିଥାନ୍ତେ ସେ ଦୃଶ୍ୟ ମନରେ ଆଙ୍କିହୋଇ ଯାଉଛି । ପବନରେ ସେ ଗଛଟି ସବୁବେଳେ ହଲି ଦୋହଲି ଆପଣଙ୍କ କଥା ମନେପକେଇ ଦେଉଛି ।

କେବଳ ଆମଘରେ କାହିଁକି, ଆପଣଙ୍କ ପରିଚୟ ପରିସରଭୁକ୍ତ ସମସ୍ତଙ୍କ ଘରେ ନିଶ୍ଚୟ ଆପଣଙ୍କ ସସ୍ନେହ ସ୍ମୃତି ସଦା ସବୁଜ, ଜୀବନ୍ତ ଓ କ୍ରମବର୍ଦ୍ଧିଷ୍ଣୁ ହୋଇ ରହିଥିବ । ଗଛ ଲଗାଇବାରେ ଆପଣଙ୍କର ନିଜର ଯେପରି ସଉକଥିଲା, ଆପଣ ଅନ୍ୟଙ୍କୁ ମଧ୍ୟ ସେହିପରି ଉତ୍ସାହିତ କରୁଥିଲେ । ଘରେ ଛୋଟଛୋଟ କୁଣ୍ଡରେ ଅନେକ ପ୍ରକାରର ଗଛ କରିଥାନ୍ତି । ଆପଣଙ୍କ ଘରକୁ ବୁଲିଗଲେ ବିଭିନ୍ନ ପ୍ରକାରର ମଞ୍ଜି, ଫୁଲଗଛରା କେତେ ସ୍ନେହରେ ଆପଣ ବଢାଇଦିଅନ୍ତି । ଟେଲିଫୋନ୍‌ରେ ତାଗିଦା କରି ପଚାରନ୍ତି - 'ମଞ୍ଜି ଲଗେଇଲ କି ନାହିଁ... ଗଜା ବାହାରିଲାନା.. ଗଛଟା ବଞ୍ଚିଲା ତ ଇତ୍ୟାଦି ଇତ୍ୟାଦି । ଗଛ ଲଗାଇବା ପାଇଁ ଏତେ ପ୍ରେରଣା ଆମକୁ ଆଉ କେହି ଦେଇ ନଥିଲେ ।

ଶିଶୁ ସଙ୍ଗୀତ, ଶିଶୁ ସାହିତ୍ୟ ରଚ଼ନାରେ ଆପଣ ଅନେକ କୃତୀ ରଖିଦେଇ ଯାଇଛନ୍ତି । ପିଲାଙ୍କ ପାଇଁ ଲେଖିଥିବା ନୂଆନୂଆ ଗୀତ, କର୍ମ ସଙ୍ଗୀତ ନିଜେ ଗାଇଗାଇ ଆମକୁ ଶୁଣାଇ ଦେଉଥିଲେ । ବହି ଖଣ୍ଡିଏ ନିଅବୋଲି କହି ବଢେଇ ଦେଉଥିଲେ । ଏ ବହିସବୁ ଯାହାଘରେ ଥିବ ସେ ନିଶ୍ଚୟ ଆପଣଙ୍କୁ ମନେ ପକାଉଥିବେ ।

ଖୁଆଇବାରେ ଆପଣଙ୍କ ସଉକ କମ ନଥିଲା । ଘରକୁ ଗଲେ ଯାହାକିଛି ଥିଲେ ବି ଖାଇବାକୁ ଦେବାରେ ଆପଣ ସଂକୋଚବୋଧ କରୁନଥିଲେ । ନିଶ୍ଚୟ କିଛି ଖାଇବାକୁ ପଡୁଥିଲା । ସୁଜି, ଅଟା, ବେସନ ମିଶା ସରୁଚକୁଳି କେମିତି ତିଆରିହୁଏ ତାହା ଜଣେ ପୋଖତ ରାନ୍ଧୁଣିଆ ଭଳି ଆପଣ ବତାଇ ଦେଉଥିଲେ । ତେଣୁ ସେଭଳି ଚକୁଳି ଖାଇବସିଲେ ଆପଣଙ୍କୁ ଭୁଲି ହେବକି ?

ଆପଣଙ୍କଠାରେ ଥିବା କର୍ମଠ, ନିରଳସ, ଶିକ୍ଷାପ୍ରେମୀ, ଶିଶୁପ୍ରେମୀ ବ୍ୟକ୍ତିତ୍ୱଟି କେବେ ବି ଚୁପ୍‌ଚାପ୍ ବସି ରହିନଥିଲା । ପରିଣତ ବୟସରେ ମଧ୍ୟ ଅନେକ ଗଠନମୂଳକ କାର୍ଯ୍ୟରେ ପ୍ରତ୍ୟକ୍ଷ ଭାବରେ ଆପଣ ସାମିଲ ହେଉଥିଲେ । ନିଜେ ବିଭିନ୍ନ ଶିକ୍ଷାମୂଳକ କାର୍ଯ୍ୟକ୍ରମରେ ଡେମନ୍‌ଷ୍ଟ୍ରେସନ୍ ଦେଖାଉଥିଲେ । ଜଣେ ଗାନ୍ଧିବାଦୀ ମୌଳିକ-ଶିକ୍ଷା ପ୍ରେମୀଭାବେ ଆପଣ ଆମ ରାଜ୍ୟ ତଥା ଦେଶରେ ଜଣେ ବିଦିତ ବ୍ୟକ୍ତି । ଦେଶ ତଥା ରାଜ୍ୟର ପ୍ରୌଢ଼ଶିକ୍ଷା ତଥା ଶିଶୁ ଶିକ୍ଷା କ୍ଷେତ୍ରରେ ଆପଣଙ୍କର ଦାନ ଅତୁଳନୀୟ । ଆମ ରାଜ୍ୟର ଅଙ୍ଗନୱାଡ଼ି କର୍ମୀ, ଆଇ.ସି.ଡି.ଏସ୍. ସୁପର ଭାଇଜର ତଥା ସି.ଡ଼ି.ପି.ଓମାନେ ଆପଣଙ୍କ ଦ୍ୱାରା ପ୍ରଦର୍ଶିତ ପ୍ରାକ୍‌ବିଦ୍ୟାଳୟ ଶିକ୍ଷା ତାଲିମକୁ ନିଶ୍ଚୟ ମନେ ରଖିବେ । ଅଳ୍ପଖର୍ଚ୍ଚ କିମ୍ବା ବିନାଖର୍ଚ୍ଚରେ ଅନାବଶ୍ୟକ ବସ୍ତୁଗୁଡ଼ିକରୁ ଶିକ୍ଷା ସହାୟକ ଉପକରଣମାନ କିପରି ପ୍ରସ୍ତୁତ କରାଯାଇପାରେ ତାହା ଆପଣ ବତାଇଦେଉଥିଲେ । ମୌଳିକ ଶିକ୍ଷାର ପ୍ରସାର, ନାରୀସମାଜର ପ୍ରଗତି, ଦୁର୍ବଳ ଶ୍ରେଣୀର 'ଉନ୍ନତି ପାଇଁ ଆପଣ ସର୍ବଦା ଚିନ୍ତା କରୁଥିଲେ ଏବଂ ସବୁବେଳେ ବ୍ୟସ୍ତ ବିବ୍ରତ ହୋଇପଡୁଥିଲେ ଏଦିଗରେ, ଏ ଦେଶରେ ବାସ୍ତବରେ କିଛି ହୋଇନି କି ହୋଇପାରୁନି ବୋଲି । ଆଧୁନିକ ଶିକ୍ଷାବ୍ୟବସ୍ଥାରେ ବାସ୍ତବ

ମୂଲ୍ୟବୋଧ ଶିକ୍ଷା ଯେପରି ପରୀକ୍ଷାଗାର ଭିତରେ ରହିଗଲାଣି ସେ'ନେଇ ଆପଣ ନିରନ୍ତର ବ୍ୟଥିତ ହେଉଥିଲେ । ସାମ୍ପ୍ରତିକ ଶିକ୍ଷାଟା ସମ୍ପୂର୍ଣ୍ଣରୂପେ 'ପୋଥିବାଇଗଣ' ହୋଇଯାଉଛି ବୋଲି ଆପଣ ସର୍ବଦା କହୁଥିଲେ । ଆପଣଙ୍କପରି ନିର୍ଭୀକ, ସ୍ପଷ୍ଟବାଦୀ ନିରଳସ କର୍ମୀ ସତ କହିବାକୁ ଗଲେ ପ୍ରକୃତରେ ବିରଳ । ଆପଣଙ୍କ ସହିତ କଥାବାର୍ତ୍ତାବେଳେ ଏବଂ ଆପଣଙ୍କ କାର୍ଯ୍ୟକଳାପରୁ ମନେହୁଏ ନାହିଁ ଯେ, ସମୟ ବା ବୟସ ଆପଣଙ୍କୁ କବଳିତ କରିଥିଲା ।

ଆପଣ ଥିଲେ ଆମ ପରିବାରର ଜଣେ ଶୁଭେଚ୍ଛୁ ଆତ୍ମୀୟ । ପ୍ରାୟ ରାତି ନ'ଟା ସାଢ଼େ ନ'ଟା ପରେ ଆପଣଙ୍କ ଫୋନ୍ ଆସୁଥିଲା 'କଣ କରୁଛ ? ପୂର୍ଣ୍ଣବାବୁ କ'ଣ କରୁଛନ୍ତି ? ପିଲାମାନେ କେମିତି ଅଛନ୍ତି ? ପେନ୍‌ସନ୍ ହେଲାଣି ନା ନାହିଁ ? ଏମିତି କେତେ ଖବର ଆମର ନଉଥିଲେ । ଆମ ସମସ୍ୟାରେ ସମଦୁଃଖୀ ହେଇ ଆଶ୍ୱାସନା ବି ଦେଉଥିଲେ ଠିକ୍ ମୋ ବାପାଙ୍କ ପରି । ଏବେ ବି ରାତିରେ ଫୋନ୍ ରିଙ୍ଗ୍ ହେଲେ ଆପଣଙ୍କ କଥା ହଠାତ୍ ମନେପଡ଼ିଥାଏ । କିନ୍ତୁ ପରମୁହୂର୍ତ୍ତରେ ବାଧହୋଇ ମନେପଡ଼ିଥାଏ ଯେ ଫୋନ୍‌ରେ ଆପଣଙ୍କ ପାର୍ଥିବ କଣ୍ଠସ୍ୱର ଆଉ ଶୁଭିବନି । କିନ୍ତୁ କର୍ଣ୍ଣ ଗୁହରରେ ଆପଣଙ୍କ ଉତ୍ସାହ ଉଦ୍ଦୀପନାଭରା ବାଣୀ ଓ ଗୀତ ସବୁ ଶୁଭୁଛି ।

ହେ ପିତୃପ୍ରତିମ । ଆପଣଙ୍କ ପାର୍ଥିବ ଶରୀରର ଅନୁପସ୍ଥିତିକୁ ଆମେ ମାନିନେବାକୁ ବାଧ ହୋଇଛୁ । ମାତ୍ର ଟିକିଏ ଅନ୍ତର ଭିତରକୁ ଊହିଁଦେଲେ ଆପଣଙ୍କର ସେଇ ହସହସ ଚେହେରା, ଶ୍ରଦ୍ଧାପୂର୍ଣ୍ଣ ବ୍ୟବହାର, କର୍ମଚଞ୍ଚଳ ବ୍ୟକ୍ତିତ୍ୱ ସବୁ ଆମେ ଦେଖିପାରୁଛୁ ।

ଆପଣଙ୍କର ସ୍ମୃତି, ଆପଣଙ୍କ ବ୍ୟକ୍ତିତ୍ୱ ସମସ୍ତଙ୍କୁ ପ୍ରେରଣା ଦେଉଥାଉ ।

ଆପଣଙ୍କର ଜୀବନ୍ତ ସ୍ମୃତିର ଚିହ୍ନ ସେଇ ସରୁଆ ଡେଙ୍ଗା ଜାମୁଗଛଟିରେ ଏବେ ପୁଣି ପେନ୍ଥାପେନ୍ଥା ଫୁଲ ଧରିବାକୁ ଆରମ୍ଭ କଲାଣି ।



# ସ୍ମୃତିର ଶୋଭାଯାତ୍ରା : ୰ଇନ୍ଦୁଭାଇନା

## ସାରଦା ପ୍ରସନ୍ନ ନାୟକ

ମୁଁ ଓ ଆମେ ଅନେକ ତାଙ୍କୁ ଆଦରରେ ଡାକୁଥିଲୁ ଇନ୍ଦୁ ଭାଇନା... । ତାଙ୍କ ପୂରା ନାଁ ଇନ୍ଦୁଭୂଷଣ ମିଶ୍ର । ସେ ଥିଲେ ଜଣେ ଗାନ୍ଧୀବାଦୀ, ଶିକ୍ଷାବିତ୍, ମାନବବାଦୀ ଓ ଉଚ୍ଚକୋଟୀର ସୃଜନଶୀଳ ବ୍ୟକ୍ତି । ସାହିତ୍ୟ, ସଂଗୀତ ଓ କଳାପ୍ରତି ତାଙ୍କର ଅସୀମ ଆଗ୍ରହ ଥିଲା । ପ୍ରୌଢ଼ଶିକ୍ଷା, ଜନଶିକ୍ଷା ଓ ନିରକ୍ଷରତା ଦୂରୀକରଣ ପାଇଁ ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ସମସ୍ତଙ୍କ ପାଖରେ ସଦସର୍ବଦା ଆଦରଣୀୟ ହୋଇ ରହିବ । ତାଙ୍କର ସ୍ନେହ ଓ ସମ୍ବେଦନଶୀଳତା ମୋ'ପାଇଁ ଅଲିଭା ଓ ଅଭୁଲା ହୋଇ ରହିବ । ବଡ଼ ଦୁଃଖ ଲାଗେ ଯେ, ସେହି ସଂବେଦନଶୀଳ ବ୍ୟକ୍ତି ଆମ୍ଭମାନଙ୍କୁ ୨୦୦୪ମସିହାରେ ଛାଡ଼ି ଚାଲିଗଲେ ଓ ଛାଡ଼ିଦେଇ ଗଲେ ତାଙ୍କର ସ୍ନେହ, ଶ୍ରଦ୍ଧା ଓ ଅନୁକଂପାର ନିର୍ଝର....

ଇନ୍ଦୁଭାଇନାଙ୍କ ସହିତ ମୋର ପରିଚୟ ଷାଠିଏ ଦଶକର । ସେତେବେଳେ ମୁଁ କଟକ ବେତାର କେନ୍ଦ୍ରରେ ଶିକ୍ଷା କାର୍ଯ୍ୟକ୍ରମ ପ୍ରଯୋଜକ ଭାବରେ କାର୍ଯ୍ୟ କରୁଥାଏ । କଟକ ବେତାର କେନ୍ଦ୍ର ସହିତ ମୋର ସଂପର୍କ ୧୯୪୮-୪୯ମସିହାରୁ । ମୁଁ ସେଠାରେ ବିଭିନ୍ନ କାର୍ଯ୍ୟକ୍ରମମାନ ପରିବେଷଣ କରୁଥିଲି । କିନ୍ତୁ ୧୯୬୩ମସିହାରେ ମୁଁ ସେଠାରେ ଜଣେ ପ୍ରଯୋଜକ ଭାବରେ ଯୋଗଦେଲି । ସେଇ ସମୟରେ ଇନ୍ଦୁବାବୁଙ୍କ ସହିତ ମୋର ସଂପର୍କ । ସେ କଟକ ସିଟି ଟ୍ରେନିଂସ୍କୁଲର ହେଡମାଷ୍ଟର ଭାବରେ ଯୋଗଦେଲେ । ସିଟି ଟ୍ରେନିଂ ସ୍କୁଲ ଓଡ଼ିଶାର ବିଖ୍ୟାତ ଶିକ୍ଷକ ତାଲିମ୍ କେନ୍ଦ୍ର, ଯାହା ରାଧାନାଥ ଟ୍ରେନିଂ କଲେଜର ଗୋଟିଏ ଶାଖା ଥିଲା । ସେଠି ଇନ୍ଦୁଭାଇନାଙ୍କ ସଙ୍ଗେ ପରିଚୟ ଓ ଘନିଷ୍ଠତା ହେବାରୁ ମୁଁ ଜାଣିଲି ସେ ଜଣେ ଗାନ୍ଧୀବାଦୀ; ମୌଳିକଶିକ୍ଷା ସେବା ଗ୍ରାମରୁ ପାଇଛନ୍ତି ବହୁଦିନ କାଳ ସମ୍ବଲପୁର ଓ ବଲାଙ୍ଗୀର ପ୍ରଭୃତି ଅଞ୍ଚଳରେ ଶିକ୍ଷାଦାନ କାର୍ଯ୍ୟ କରିଛନ୍ତି । ତାଙ୍କ ସହିତ ପରିଚୟ ଓ ଘନିଷ୍ଠତା ହେବା ପରେ ଆତ୍ମୀୟତା ମଧ୍ୟ ବଢ଼ିଲା ।

ଏହିପରି ଏକ ସମୟରେ ଦିନେ ଦିପହର ବେଳେ ମୁଁ ଘରକୁ ଖାଇବାକୁ ଆସିଥିବାବେଳେ ପାଖଘରୁ ନିଆଁଲାଗି ଆମର ଉପର ମହଲା ଘରଟା ମୋ ଆଖି ଆଗରେ ପୋଡ଼ିଗଲା । ଉପର ମହଲାଟା ଚାଳଘର ଥିଲା ଓ ମୋର ବହୁ ଦିନର ସଂଚିତ ବହୁମୂଲ୍ୟବାନ ବହିଗୁଡିକ ମଧ୍ୟ ସବୁ ପୋଡ଼ିଗଲା ।

ଏକଥା ଲେଖିବାର ଉଦ୍ଦେଶ୍ୟ ହେଉଛି ଯେ, ଇନ୍ଦୁବାବୁଙ୍କ ସାଙ୍ଗରେ ଯେତେବେଳେ ମୋର ଦେଖାହେଲା ସେତେବେଳେ ସେ ଅତ୍ୟନ୍ତ ଦୁଃଖର ସହିତ ମୋ ଘରପୋଡ଼ି ବିଷୟରେ ଶୁଣିଲେ । ମୁଁ ଯେ ଅନ୍ୟାନ୍ୟ ଜିନିଷର କ୍ଷତିପାଇଁ ବ୍ୟତିବ୍ୟସ୍ତ ନହୋଇ ମୋ ବହି ଓ ପାଣ୍ଡୁଲିପି ପାଇଁ ମ୍ରିୟମାଣ ହୋଇଯାଇଛି, ସେଥିପାଇଁ ମୋ ଦୁଃଖର ଭାଗି ଦୁଃଖିତ ହୋଇ ମତେହିଁ ଆରଦିନ ତାଙ୍କର କ୍ୱାର୍ଟରକୁ ଯିବାକୁ ଡାକିଲେ ।

ରାଧାନାଥ ଟ୍ରେନିଂ କଲେଜର କ୍ୟାମ୍ପସ୍‌ରେ ତାଙ୍କର କ୍ୱାଟର ଥିଲା । ମୁଁ ତହିଁ ପରଦିନ ରେଡ଼ିଓ ଷ୍ଟେସନ୍‌ର କାମସାରି ତାଙ୍କ ପାଖରେ ପହଞ୍ଚିଲି । ତାଙ୍କର ସହଧର୍ମିଣୀ ଓ ସେ ମୋର ଘରପୋଡ଼ି ଓ କ୍ଷତିପାଇଁ ବହୁତ୍ ସାନ୍ତ୍ୱନା ଦେଲେ । ଘରେ ଜଳଖିଆ ଓ କଫିଖାଇ ଉଠିଲାବେଳକୁ ଇନ୍ଦୁଭାଇନା ମୋ ହାତଧରି ପକେଇ କହିଲେ "ଟିକେ ବସନ୍ତୁ" । ମୁଁ ବୁଝି ନପାରି ବସିପଡିଲି । କିଛି ସମୟ ପରେ ସେ ଘର ଭିତରୁ ଆସିଲେ ଗୋଟିଏ ପୁଡ଼ିଆ ଧରି । ସେ ପୁଡିଆଟିକୁ ମୋ ସାମ୍ନାରେ ଖୋଲିଲେ । ସେଥିରେ ଗୋଟିଏ ମଠାକନା ଥିଲା । ମଠା କନାଟିକୁ ମୋ ହାତରେ ଧରେଇ ଦେଇ ଇନ୍ଦୁ ଭାଇନା କହିଲେ; "ସାରଦାବାବୁ, ମୁଁ ଜାଣେ ଘରପୋଡ଼ିଠାରୁ ବିପତ୍ତି ନାହିଁ । ବହିପତ୍ର ସହିତ ଆପଣଙ୍କ ଲୁଗାପଟାର ମଧ୍ୟ ଖୁବ୍ କ୍ଷତି ହୋଇଥିବ । ଏଇ ମଠା କନାଟିକୁ ମତେ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ ନିଜହାତବୁଣା ଲୁଗା ହିସାବରେ ଉପହାର ଦେଇଥିଲେ । ଏଇଟିକୁ ମୁଁ ଆପଣଙ୍କୁ ଉପହାର ଦଉଛି । ଏଥିରେ ଗୋଟିଏ କୁରୁତା କରି ପିନ୍ଧିବେ ।" ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି । ମଠାକନାଟିକୁ ମୁଁ ହାତରେ ଧରି କହିଲି "ଏଇ ମଠା କନାଟିକୁ ଓଡ଼ିଶାର ଜଣେ ବିଖ୍ୟାତ ବ୍ୟକ୍ତି ଆପଣଙ୍କୁ ମର୍ଯ୍ୟାଦାପୂର୍ଣ୍ଣ ଉପହାର ଦେଇଥିଲେ । ଏଇଟିକୁ ଆପଣ ମୋତେ ଦେଉଛନ୍ତି । "ଉପହାରଟିକୁ ଉପହାର ଦବାହିଁ ଉପହାରର ମର୍ଯ୍ୟାଦା । ଆପଣ ଏଇଟିକୁ ନିଅନ୍ତୁ... ମୁଁ ଆଉ ମୋର ପରିବାର ଭାରି ଖୁସି ହବୁ" । ମୁଁ ମୁଣ୍ଡନୁଆଁଇ ମଠା କନାଟିକୁ ଗ୍ରହଣ କରି କହିଲି; "ସାଧାରଣତଃ ମଠାରେ ପଞ୍ଜାବୀ ତିଆରି କରି ଆମେମାନେ ପିନ୍ଧୁ..., କିନ୍ତୁ ମୁଁ ଏଥିରେ ଗୋଟିଏ ଫୁଲହାଓ୍ୱାଇନ୍ କରି ପିନ୍ଧିବି ଓ ପିନ୍ଧିଲାଦିନ ପ୍ରଥମେ ଆପଣଙ୍କ ପାଖକୁ ଆସିବି ।" ସେ ଆନନ୍ଦରେ ମୋତେ କୁଣ୍ଢାଇ ପକେଇଲେ । କିଛିଦିପ ପରେ ମୁଁ ଗୋଟିଏ ଫୁଲ ହାଓ୍ୱାଇନ୍ ସେଇ ମଠାକନାରେ ତିଆରିକରି ପିନ୍ଧି ତାଙ୍କ ଘରକୁ ଯାଇ ତାଙ୍କ ଆଗରେ ଠିଆହୋଇଲି । ତାଙ୍କର ସେଇ ଅନାବିଳ ଆନନ୍ଦ ଓ ମାନବିକତାର ଦୃଶ୍ୟ ମୋ ଆଖିରେ ଏବେବି ବେଳେବେଳେ ନାଚିଉଠେ; ଆଉ ଯେତେବେଳେ ତାହା ନାଚିଉଠେ ମୁଁ ବି ଆନନ୍ଦରେ ଆତ୍ମହରା ହୋଇଯାଏ ।

ମୁଁ ବେତାର କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରୁଥାଏ । ପ୍ରଥମେ ସ୍କୁଲ ବ୍ରଡ୍‌କାଷ୍ଟରୁ ପ୍ରୌଢଶିକ୍ଷା, ଗୀତି-କବିତାଗୁଡ଼ିକର ସମୀକ୍ଷା, ନାଟକ ରଚନା ଓ ପ୍ରତିଦିନ ସକାଳେ ଗ୍ରନ୍ଥପାଠ ପ୍ରଭୃତି ବହୁ କାର୍ଯ୍ୟକ୍ରମ କରିବାକୁ ପଡୁଥାଏ । ଇନ୍ଦୁଭାଇନା ସେଥିରୁ କେବେ ଶୁଣନ୍ତି ଓ

ଅନେକ ଗଠନମୂଳକ ପ୍ରସ୍ତାବ ଦିଅନ୍ତି କାର୍ଯ୍ୟକ୍ରମର ଉନ୍ନତିପାଇଁ । ଥରେ ଘରଫେରନ୍ତି କଟକ ଚଣ୍ଡୀଛକରେ ଦେଖାହୋଇଗଲା । ସେ ସେତେବେଳକୁ ପଦୋନ୍ନତି ପାଇ ସ୍କୁଲ ବିଭାଗର ଅନ୍ୟତମ ଇନ୍‌ସପେକ୍ଟର ହୋଇଥାନ୍ତି ଓ କନିକାରୋଡ଼ରେ ଗୋଟିଏ ସରକାରୀ ବଙ୍ଗଳାରେ ରହୁଥାନ୍ତି । ମୁଁ ସାଇକେଲରେ ଫେରୁଥିଲି ଓ ସେ ଚାଲିଚାଲି ଆସୁଥିଲେ, ଓହ୍ଲାଇଲି । ସେ ତାଙ୍କର ସେବାଶ୍ରମର ମୌଳିକଶିକ୍ଷା, ପ୍ରୌଢ଼ଶିକ୍ଷା ବିଷୟରେ ବହୁତ କଥା କହିଲେ । ଭାରତର କେତେ ବଡ଼ବଡ଼ ପଣ୍ଡିତମାନଙ୍କ ପାଖୁ ସେ ତାଲିମ୍ ପାଇଥାନ୍ତି । ସେମାନେ ହେଲେ ମହାତ୍ମାଗାନ୍ଧୀଙ୍କର ମୌଳିକ ଶିକ୍ଷାପଦ୍ଧତିକୁ ରୂପଦାନ କରିଥିବା ଡ.ଜାକିର ହୁସେନ୍ (ସେତେବେଳକୁ ସେ ଭାରତର ରାଷ୍ଟ୍ରପତି ଥାନ୍ତି), ପ୍ରସିଦ୍ଧ ଗାନ୍ଧୀବାଦୀ ଶିକ୍ଷାବିତ୍ କାକା କାଲେଲ୍‌କର୍, ଅର୍ଯ୍ୟ ଆର୍ଯ୍ୟନାୟକମ୍, ଶ୍ରୀମତୀ ଆଶାଦେବୀ ଆର୍ଯ୍ୟନାୟକମ୍, ଶ୍ରୀ କିଶୋରଲାଲ ମସୁର ଓ୍ୟାଲା, ଡ.କି.ରାମନ୍ଦ୍ରନ୍ ଓ ଡ. ଜେ.ସି. କୁମାରପ୍ପା, ପ୍ରଭୃତି ଅନେକ । ଇନ୍ଦୁଭାଇନା ସେଦିନ ଏପରି ବିଭୋର ଓ ଆତ୍ମବିସ୍ମୃତ ହୋଇ କଥାଗୁଡ଼ିକ କହିଗଲେ ଯେ, ରାତି ୯ଟା କି ୧୦ଟା ବାଜିଗଲା । ଆମେ ସେଇ ଚଣ୍ଡୀମନ୍ଦିର ଛକରେ ଠିଆହୋଇଥାଉ । ମୁଁ ତାଙ୍କୁ କହିଲି, "ଏ କଥା ଶୁଣି ସେବାଗ୍ରାମ ଓ ଶିକ୍ଷାପଦ୍ଧତି ଉପରେ ମୋର ତ ବହୁତ ଜ୍ଞାନ ହେଲା; ଆପଣ ଏଗୁଡ଼ିକୁ ଉପଯୋଗ କରିବାକୁ ଉଦ୍ୟମ କରୁନାହାନ୍ତି ?" "କାହାକୁ କହିବି ? ଏ ସବୁ କଥାତ କାଲ ଆଗରେ ମୂଳା ଚୋବେଇଲାପରି ସେମାନଙ୍କୁ ଲାଗୁଛି । ଖାଲି କେତେ ଫାଇଲଚଷ କରିବ କରୁଥା... ସେଇଥିରେ ହିଁ ଶିକ୍ଷାର ବହୁତ ଉନ୍ନତି ହେଇଯିବ ।" ତା'ପରେ ହଠାତ୍ ସମୟକୁ ଦେଖି କହିଲେ ଆରେ ବହୁତ ସମୟ ହୋଇଗଲା । ମୋର ଗୋଟିଏ କାମକୁ ଯିବାର ଥିଲା । ହଉଛାଡ଼ ଆସ ମୋ ସାଙ୍ଗରେ । ମୁଁ କହିଲି କୁଆଡ଼େ ଯିବା ?

ଇନ୍ଦୁ ଭାଇନା କହିଲେ - "ଆଗ ଘରକୁ; ମୁଁ ବହୁତ ପାଳଙ୍ଗ ଶାଗ ଲଗେଇଛି । ସେଥିରୁ ମେଞ୍ଚାଏ ଦେବି ।" ତା'ପରେ ପାଳଙ୍ଗ ଶାଗର ଉପକାରିତା ଉପରେ କହିବାକୁ ଲାଗିଲେ ।

ମୁଁ କହିଲି - "ଭାଇନା, ରାତିରେ ଶାଗ ତୋଳନ୍ତି ନାହିଁ । ମୁଁ ଆଉ ଦିନେ ଆସି ପାଳଙ୍ଗ ଶାଗ ନେଇଯିବି ।" "ଆସିବ ତ ?"

"ହଁ ନିଶ୍ଚେ ଆସିବି । ମୋର କାଲି ସକାଳେ ଗୋଟାଏ ରେକର୍ଡିଂ ଅଛି ।" ମୁଁ ସାଇକେଲ ଗଡ଼ାଇ ଚାଲିଗଲି ।

କିଛିଦିନ ଚାଲିଗଲା । ତାଙ୍କ ବଡ଼ସଢୁ ମିଷ୍ଟର ହରିହର ମିଶ୍ରଙ୍କର ଗୋଟାଏ ରେକର୍ଡିଂ ଥିଲା । ସେ ଭୀଷଣ ସମୟାନୁବର୍ତ୍ତୀ । ଠିକ୍ ସମୟରେ ପହଞ୍ଚିଯାନ୍ତି । ସେ ପହଞ୍ଚି ସାଙ୍ଗେସାଙ୍ଗେ ମୋତେ ରେଡ଼ିଓ ଷ୍ଟେସନ୍ ପାଖରେ କହିଲେ "ସାରଦା -ଇନ୍ଦୁ କହିଛି, ତୁମପାଇଁ ପାଳଙ୍ଗଶାଗ ତୋଳି ଅପେକ୍ଷା କରିଥିବ । ତୁମେ ଗଲାବେଳେ ତା'ଘରୁ ନେଇଯିବ ।" ମୁଁ ଭାବିଲି ପାଳଙ୍ଗ ଶାଗକଥା ଇନ୍ଦୁ ଭାଇନା ଭୁଲି ନାହାନ୍ତି ।

କାମର ଗୁରୁତ୍ୱରେ ରେଡିଓଷ୍ଟେସନରୁ ଫେରିବାକୁ ମୋର ବେଶ୍ ଡେରି ହୋଇଗଲା । ତାଙ୍କ ଘର ପାଖରେ ଭାବିଲି ଯିବି କି ନାହିଁ; ଏତେ ରାତି ତ ହେଲାଣି । ତଥାପି କଥା ରଖିବାକୁ ଗଲି । ସତକୁ ସତ ଇନ୍ଦୁ ଭାଇନା ପୁଳାଏ ପାଳଙ୍ଗଶାଗ ଗୋଟାଏ ଖବର କାଗଜରେ ଗୁଡ଼େଇ ମୋ ପାଇଁ ତାଙ୍କ ଡ୍ରଇଂରୁମ୍‌ରେ ଅପେକ୍ଷା କରି ବସିଥାନ୍ତି । ମୋତେ ଦେଖି କହିଲେ, "ଆରେ ସାରଦାବାବୁ ଆସିଲ ଭଲ କଲ; ମୁଁ କେତେବେଳଠୁଁ ତମକୁ ଅପେକ୍ଷାକରି ବସିଛି; ହେଇ ନିଅ... ।" ମୁଁ ଫେରିଲା ବେଳେ ତାଙ୍କର ସ୍ନେହ ଓ ମମତା କଥା ଭାବିଭାବି ଆସୁଥିଲି ।

ବାଲ୍ୟକାଳରୁ ଖଦଡ଼ ପରିହିତ ଜଣେ ନିଷ୍ଠାବାନ୍ ଗାନ୍ଧୀବାଦୀ ଦେଶପ୍ରେମୀ ଜନଶିକ୍ଷାବିତ୍, କଳାକାର ଓ ସଂଗୀତଜ୍ଞ ବର୍ତ୍ତମାନ୍ ସମାଜରେ ପାଇବା ବିରଳ । ତାଙ୍କର କୃତୀରୁ ଗୋଟିଏ ମୁଁ ବର୍ତ୍ତମାନ ବର୍ଣ୍ଣନା କରୁଛି । ଏଇଥିରୁ ମନେହେବ ତାଙ୍କର ଜ୍ଞାନ ଥିଲା କେତେ ଗଭୀର ।

ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ରରେ ମୁଁ ନିର୍ଦ୍ଦେଶକ ହୋଇ ରହିଲି ତିନିବର୍ଷ ଚାରିମାସ । ଇନ୍ଦୁବାବୁଙ୍କ ନିର୍ଦ୍ଦେଶରେ ମୁଁ ବହୁତ ଜିଲ୍ଲା ଓ ଗାଁ ଗହଳିରେ ଚକ୍ରୀପରି ଘୂରିବୁଲୁଥିଲି । ସେତେବେଳେ ମୋର ପ୍ରେରଣାଦାତା ଥିଲେ ଜାତୀୟ ସାକ୍ଷରତାମିଶନର ଚେୟାରମ୍ୟାନ୍ ଡ.ଲକ୍ଷ୍ମୀଧର ମିଶ୍ର ଓ ପୂର୍ବତନ ଉଚ୍ଚ ଶାସନାଧିକାରୀ, ଏବର ରାଜ୍ୟସଭାର ମାନ୍ୟବର ସାଂସଦ ଶ୍ରୀଯୁକ୍ତ ପ୍ୟାରୀମୋହନ ମହାପାତ୍ର ।

ଥରେ ମୁଁ ବାଲେଶ୍ୱରର ଗୋଟିଏ ଗାଁକୁ ଯାଇଥିଲି ଗୋଟିଏ ଜନଶିକ୍ଷା ସଭାର କାର୍ଯ୍ୟରେ ଯୋଗଦବାକୁ । ସଭା ସରିଗଲାପରେ ବେଶ୍ କେତେଜଣ ଯୁବକ, ମଧ ବୟସ୍କ ଓ ବୟସ୍କ ମତେ ଆସି ପଚାରିଲେ "ଆଜ୍ଞା ଆପଣଙ୍କର ବହି "ଅକ୍ଷର ଦୀପ"ରେ ଯେଉଁ "ସାରିଆପୁରର ସନିଆ" ଗୀତଟି ଲେଖାହୋଇଛି ଓ ଆମେ ରେଡ଼ିଓ ଏବଂ ଦୂରଦର୍ଶନରେ ସେ ଗୀତ ଶୁଣୁଛୁ ଓ ଦେଖୁଛୁ, ସେ ସାରିଆପୁର ଗାଁଟି କେଉଁଠି ଓ ସେଥିରେ ଯେଉଁ ସନିଆଁ ନାଁ ଲେଖାହେଇଛି ତାକୁ ଆମେ କେଉଁଠି ଭେଟି ପାରିବୁ ?" ମୁଁ ତନ୍ମୟ ହୋଇ ତାଙ୍କ କଥା ଶୁଣିଥିଲି । ଜଣେ ଯୁବକ ଉଚ୍ଛ୍ୱସିତ ହୋଇ କହିଲେ, ସେ କାହାଣୀଟିକୁ କେଡ଼େ ସରଳିଆ ଭାଷାରେ ଲେଖିଛନ୍ତି ଶ୍ରୀ ଇନ୍ଦୁଭୂଷଣ ମିଶ୍ର ।

ଏକଥା ଶୁଣି ମୋ ଦିହରେ ଗୋଟାଏ ଶିହରଣ ଖେଳିଗଲା । ଇନ୍ଦୁ ଭାଇନାଙ୍କ ଉଦ୍ଦେଶ୍ୟରେ ଗୋଟିଏ ପ୍ରଣାମ କରି ମୁଁ ତାଙ୍କୁ କହିଲି, ଏହା ଗୀତରେ ଗୋଟିଏ କାହାଣୀ । ଏହା ଅନେକ ସ୍ଥାନରେ ସତ ବି ହେଇଥିବ । ଆପଣମାନଙ୍କର ମନକୁ ଯେ ଏ ଗୀତ ଓ ଏହାର ଅଭିନୟ ଛୁଇଁଛି, ଏଥିପାଇଁ ଶ୍ରୀ ଇନ୍ଦୁଭୂଷର ମିଶ୍ର ଧନ୍ୟ ଓ ସେଥିପାଇଁ ଆମ ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ର ମଧ ଧନ୍ୟ, ଏ ଗୀତର ଏତେବଡ଼ ମନଛୁଆଁ ଆକର୍ଷଣୀୟ ସଫଳତା ପାଇଁ । ସଂଯୋଜିକା କୁମାରୀ କ୍ଷୀରୋଦ ନାୟକ ଓ ନିର୍ଦ୍ଦେଶନା ଶ୍ରୀମତୀ ପାର୍ବତୀ ଘୋଷ (ଚପଳା ନାୟକ) ଓ ସଂଗୀତ ନିର୍ଦ୍ଦେଶକ ଶ୍ରୀ ସ୍ୱରୂପ ନାୟକ ମଧ ଧନ୍ୟବାଦର ପାତ୍ର ।



# ଇନ୍ଦୁବାବୁଙ୍କ ସ୍ମରଣେ

## ସଂଧ୍ୟାରାଣୀ ମଲ୍ଲିକ

ବିରଳ ମଣିଷଟିଏ । ସାଧାସିଧା, ଶାନ୍ତ, ସରଳ, ସ୍ନେହୀ ଓ ଅମାୟିକ ମଣିଷ । ତାଙ୍କର ସ୍ନେହବୋଳା କଥା ଯିଏ ଶୁଣିଥିବ, ସେ କେବେ ହେଲେ ଭୁଲିପାରିବ ନାହିଁ । ଏହି ମହାନ୍ ବ୍ୟକ୍ତିଙ୍କ ସହ ମୋର ପରିଚୟ ହୁଏ କସ୍ତୁରବା ଟ୍ରଷ୍ଟରେ । ଠାଙ୍କ ସହିତ ଅତି ଜଣାଶୁଣା ହୁଏ ବେଲାଦିଦିଙ୍କର ଫଣ୍ଡ ମିଟିଂରେ ।

ଏମିତି ଦିନେ ତାଙ୍କ ଘରେ ମିଟିଂ ଥାଏ । ଚୁନୀ ଅପା, ଭାଉଜ, ଗୋଲକ ଭାଇ ଓ ମୁଁ ସମସ୍ତେ ତାଙ୍କଘର ଭୁବନେଶ୍ୱରକୁ ଯାଇଥାଉ । ସେ ଥରକୁ ଥର ଦୁଆର ମୁହଁକୁ ଦେଖୁଥାନ୍ତି ଏମାନେ କେତେବେଳେ ଆସିବେ । ଏହି ସମୟରେ ସମସ୍ତେ ପହଞ୍ଚିଗଲୁ । ଆମକୁ ଦେଖି ଘର ଭିତରକୁ ଚାଲିଯାଇ ଏକ ଝୁଲାବ୍ୟାଗ ନେଇ ଆସି କହିଲେ, ସଂଧ୍ୟା ତମେ ସବୁଠାରୁ ଛୋଟ । ତୁମକୁ ଏ ବ୍ୟାଗ ଦେଉଛି, ତମର କାମରେ ଆସିବ । ଏହିପରି ଆଉଥରେ ମଧ୍ୟ ତାଙ୍କ ଘରେ ମିଟିଂ ହୋଇଥିଲା । ମୋତେ ପଚାରିଲେ - ସଂଧ୍ୟା ତୁମର ସେଠାରେ ଚାରକୋଳି ଗଛ ଅଛକି ? ମୁଁ ମନା କଲି ଏବଂ ଆଗ୍ରହ ସହକାରେ ପଚାରିଲି, ସେ କୋଳି କେମିତିକା । ସେ କହିଲେ ମୁଁ ଏଥର ମଂଜି ତୁମକୁ ଦେବି । ତା'ପରେ ସେ ଆଉ ଦେଇନାହାଁନ୍ତି ଆମଠାରୁ - ଅନ୍ତର ହୋଇଗଲେ ।

ସେ ପ୍ରାପ୍ତ ସମୟରେ ଅଙ୍ଗନୱାଡ଼ି ପିଲାମାନଙ୍କୁ କେବଳ ଗାଁ ଗହଳିରେ ରହିବାକୁ ହେଲେ କଣକଣ ମୁଖ୍ୟ କାର୍ଯ୍ୟକୁ ଲକ୍ଷ୍ୟ କରିବାକୁ ହେବ ସେ ବିଷୟରେ ସର୍ବଦା ବୁଝାଇଥାନ୍ତି । ଗାଁ ରାସ୍ତା, ପୋଖରୀଘାଟ, ଛୋଟପିଲାମାନଙ୍କ ମନରେ ପରିଷ୍କାର ପରିଚ୍ଛନ୍ନତା, ସ୍ୱଚ୍ଛତା, ଆଚରଣ, ବ୍ୟବହାର ତଥା ଲୋକସଂପର୍କ ଉଦ୍ରେକ କରିବାପାଇଁ ତାଙ୍କର 'ଶବର ଶବରୁଣୀ' ବହିରୁ ପରିଲକ୍ଷିତ ହୁଏ । ଗାଁଗହଳିରେ ରହୁଥିବା ମଣିଷମାନଙ୍କ ମଧ୍ୟରେ ସଭ୍ୟତା ଜାଗ୍ରତ କରିବା, ରୋଗ ସଂପର୍କରେ ସଚେତନତା ଆଣିବାପାଇଁ ତାଙ୍କର କଲମ ସର୍ବଦା ଚଳାଇ ରଖୁଥିଲେ । ଏ ବିଷୟରେ ଦାସକାଠିଆ' ମାଧ୍ୟମରେ ଜଣାଇବା ବା ନାଟକ ମାଧ୍ୟମରେ ଜଣାଇବା ପାଇଁ ବହି 'ନାରାୟଣଙ୍କ ଇଚ୍ଛା' ଲେଖିଥିଲେ ।

ନିପଟ ମଫସଲରେ ପର୍ବ-ପର୍ବାଣି, ପିଠାପଣା, ଫଳମୂଳ, ଗାଁର ଚାଲିଚଳଣି, ସଂସ୍କୃତି ଉପରେ ଗୁରୁତ୍ୱ ଦେଉଥିଲେ । ଛୋଟ ଦୁଇପିଲାମାନେ କିପରି ସୃଷ୍ଟି, ପଶୁପକ୍ଷୀ,

ବାଦଲ, ଆକାଶ, ଗଛପତ୍ର ଗଣନା, ମାସ, ଋତୁ ସଂପର୍କରେ ଜାଣିବେ, ସେ ଛୋଟଛୋଟ ଗୀତ ମାଧ୍ୟମରେ, ଅଙ୍ଗଭଙ୍ଗୀ ମାଧ୍ୟମରେ ଶିକ୍ଷା ଦେଉଥିଲେ ।

ଗାଁରେ ମିଳୁଥିବା ଫଳରୁ କିପରି ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତି ହୋଇପାରିବ ତାହା ନିଜଘରେ ପ୍ରଥମେ ପରୀକ୍ଷାକରି ପ୍ରସ୍ତୁତ କରୁଥିଲେ । ତାପରେ ତାଙ୍କର ଲେଖନୀ ମୁନରେ କିପ୍ରକାର ଭିଟାମିନ୍ ମିଳିବ 'ଗୀତଚାଙ୍ଗୁଡ଼ି' ଦ୍ୱାରା ଫୁଟାଇ ପାରିଥିଲେ ।

ପୂର୍ବକାଳର ସମାଜ କ'ଣ ଥିଲା, ବର୍ତ୍ତମାନ କିପରି ଚାଲୁଅଛି, ସମାଜର ଗତି ପତନ ଆଡ଼କୁ ଯାଉଛି, ତାହା କିପରି ରୋକାଯାଇ ପାରିବ ସେ ବିଷୟରେ ଗଭୀର ଭାବରେ ଚିନ୍ତା କରୁଥିଲେ । ଆଜି ସେଭଳି ମଣିଷଟିଏ ମିଳିବା ଦୁଃସାଧ୍ୟ ।

ତାଙ୍କର ନାଚ, ଗୀତ, ଧୂନ ବୋଲିବା ମାଧ୍ୟମରେ ପିଲାମାନଙ୍କୁ ଖୁବ୍ ଆକର୍ଷଣ କରୁଥିଲେ । ପିଲାମାନେ (ଟ୍ରଷ୍ଟର) ତାଙ୍କୁ ଶ୍ରଦ୍ଧାରେ ଅଜାବୋଲି ଡାକୁଥିଲେ ।

ଯେଉଁ ବ୍ୟକ୍ତି ସମାଜର ସର୍ବାଙ୍ଗୀନ ଉନ୍ନତି ପାଇଁ ସର୍ବଦା ସାହିତ୍ୟ ମାଧ୍ୟମରେ ଚେଷ୍ଟିତ ଥିଲେ, ତାଙ୍କର ସ୍ଥାନ କେହି ପୂରଣ କରି ପାରିବେ ନାହିଁ । ସେହି ସ୍ନେହୀ ଏବଂ ମହାନ୍ ଚିନ୍ତାଶୀଳ ବ୍ୟକ୍ତି ନିକଟରେ ମୁଁ ଭକ୍ତିପୂତ ପ୍ରଣାମ ଜଣାଉଅଛି । ତାଙ୍କର ମହନୀୟ ଭାବନାକୁ କାର୍ଯ୍ୟରେ ଲଗାଇ ପାରିଲେ ତାହାହିଁ ହେବ ସେହି ମହାନ୍ ଆତ୍ମା ପାଇଁ ଶ୍ରଦ୍ଧାଞ୍ଜଳି ।

ଜୟଜଗତ



# ଧ୍ରୁବତାରା

## ବେଣୁଧର ସେନାପତି

ଗତିଶୀଳ ସମାଜରେ ବହମାନ ଦୁର୍ଗତିରେ କଣ୍ଠରୋଧ ହୋଇଯାଇଥିବା ମାନବକୁ ପ୍ରଗତିର ଶୀତଳ ଆଲୋକ ସ୍ପର୍ଶ କରାଇବାପାଇଁ ଯେ ସାରା ଜୀବନ ଅହରହ ସଂଗ୍ରାମ ଜାରି ରଖୁଥିଲେ; ସମାଜରୁ ସମସ୍ତ କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ମୂଳପୋଛ କରି ସତ୍ୟ, ପ୍ରେମ, ବିଶ୍ୱ ଭାତୃତ୍ୱ ପୂର୍ଣ୍ଣ, ଦୁଃର୍ନୀତି ମୁକ୍ତ ଗୋଟିଏ ସମାଜ ଗଢିବାର ଯିଏ ସ୍ୱପ୍ନ ଦେଖୁଥିଲେ; ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଯିଏ ବ୍ୟାଧିକ୍ଲିଷ୍ଟ ଓ ଅଗଣିତ ଶିଶୁ, ଦୁସ୍ଥ, ପରାଧୀନ ଜନତାପାଇଁ ନିଜର ବଳିଷ୍ଠ ଲେଖନୀ ଚାଳନା କରୁଥିଲେ;ନିର୍ଯାତିତ ନାରୀର ନ୍ୟାଯ୍ୟ ଅଧିକାର ପାଇଁ ଯିଏ ମୁଷ୍ଟିମେୟ ସମାଜର ତଥାକଥିତ ଭ୍ରଷ୍ଟାଚାରୀ ବଡ଼ ପଣ୍ଡାମାନଙ୍କୁ ଏବଂ ଆଜିର ଗଣ ମାଧମଗୁଡ଼ିକର ନାରୀ ଅଙ୍ଗ ପ୍ରଦର୍ଶନ ଭଳି ବିକୃତ ମାନସିକତାକୁ ଅତି ନିର୍ଭୀକଭାବେ ସମାଲୋଚନା କରୁଥିଲେ; ଯିଏ କବର ତଳର ଗାନ୍ଧୀ-ଦର୍ଶନକୁ ଉନ୍ମୋଚନ କରି ଲୋକମାନଙ୍କ ମଧ୍ୟରେ ମୌଳିକଶିକ୍ଷା ଓ ମାନବସେବାକୁ ପ୍ରଚାର କରିବାପାଇଁ ନିଜ ଜୀବନକୁ ତିଳତିଳ କରି ଜାଳିବାକୁ କେବେବି ପଛାଇ ନଥିଲେ, ସେ ହେଲେ ପ୍ରଖ୍ୟାତ୍ ମାନବବାଦୀ ଶିକ୍ଷାବିତ୍, ବିପ୍ଳବୀ ଶ୍ରୀଯୁକ୍ତ ଇନ୍ଦୁଭୂଷଣ ମିଶ୍ର ।

୧୯୭୮ ମସିହାଠାରୁ ଆଜି ପର୍ଯ୍ୟନ୍ତ ପାଖାପାଖି ପ୍ରାୟ ତିନି ଦଶନ୍ଧିଧରି ରୁଚିକା ପ୍ରାକ୍-ବିଦ୍ୟାଳୟର ଶିକ୍ଷା କାର୍ଯ୍ୟକ୍ରମଠାରୁ ଆରମ୍ଭକରି ରୁଚିକା ସମାଜମଙ୍ଗଳ ସଂଗଠନର ପ୍ରାୟ ୫୦୦୦ରୁ ଉର୍ଦ୍ଧ୍ୱ ଅବହେଳିତ ଶିଶୁଙ୍କ ପାଇଁ ଯେତେସବୁ ଅଭିନବ ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି, ସେଥିରେ ଇନ୍ଦୁବାବୁ ଅତି ନିବିଡ଼ଭାବେ ସଂଶ୍ଳିଷ୍ଟ । ବିଶେଷକରି ପିଲାମାନଙ୍କ ପାଇଁ ନୃତ୍ୟ, ଗୀତ,କଣ୍ଢେଇନାଚ ଓ ଅନ୍ୟାନ୍ୟ ଅଭିନବ ଶିଶୁ-କୈନ୍ଦ୍ରିକ ପଦ୍ଧତିରେ ଶିକ୍ଷକ ତାଲିମ କ୍ଷେତ୍ରରେ ଇନ୍ଦୁବାବୁଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ରୁଚିକାର କୁଳବୃଦ୍ଧ ପିତାମହ ଭଳି ସେ ସମସ୍ତ ଶିକ୍ଷା କାର୍ଯ୍ୟକ୍ରମପାଇଁ ଅକୁଣ୍ଠ ସାହାଯ୍ୟ ଓ ପରାମର୍ଶ ଦେଉଥିଲେ ।

ରୁଚିକା ସମାଜମଙ୍ଗଳ ସଂଗଠନର ପ୍ରଥମ ଉପ-ସଭାପତି ଓ ପରେ ସଭାପତିଭାବେ ମୃତ୍ୟୁ ପର୍ଯ୍ୟନ୍ତ ସେ ତାଙ୍କର କାର୍ଯ୍ୟ ସୂଚାରୁରୂପେ ସଂପାଦନ କରି ପ୍ରମାଣ କରିଛନ୍ତି ଯେ ବାର୍ଦ୍ଧକ୍ୟ କେବେହେଲେ ଜଣେ ଉତ୍ସାହୀ ବ୍ୟକ୍ତିର ପଥରୋଧ କରିପାରିବ ନାହିଁ ।

୧୯୧୭ମସିହା ନଭେମ୍ବର ୨୭ତାରିଖରେ ପୁରୀ ଜିଲ୍ଲାର ବୀରନରସିଂହପୁର ଶାସନରେ ପିତା ପଣ୍ଡିତ ଶ୍ରୀ ନରସିଂହ ମିଶ୍ରଙ୍କ ଔରଷରୁ ଜନ୍ମଗ୍ରହଣ କରିଥିଲେ ଇନ୍ଦୁବାବୁ ।

୧୯୩୦ମସିହା କଥା । ପଣ୍ଡିତ ନରସିଂହ ମିଶ୍ର ସେତେବେଳେ ଆଦିବାସୀ ଅଧ୍ୟୁଷିତ ଫୁଲବାଣୀ ଜିଲ୍ଲାରେ ଶିକ୍ଷକତା କରୁଥାନ୍ତି । ବାଳକ ଇନ୍ଦୁ, ବାପାଙ୍କ ପାଖରେ ରହି ସେହି ଆଦିବାସୀ ପିଲାମାନଙ୍କ ସାଙ୍ଗେ ପାଠ ପଢିଲେ । ସେତିକିବେଳେ ସେ ଆଦିବାସୀ ସଂସ୍କୃତି ସହିତ ପରିଚିତ ହେଲେ । ପିଲାବେଳେ ସେ ନାଚ, ଗୀତ ଓ ଅନ୍ୟକୁ ନକଲ କରିବାର କଳାରେ ଅତ୍ୟନ୍ତ ପାରଙ୍ଗମ ଥିଲେ । ୧୯୪୦ମସିହାରେ ସେ କଟକ ରେଭେନ୍‌ସା କଲେଜରରେ ପଢୁଥାନ୍ତି । କଲେଜ ୟୁନିୟନକୁ ଭାଷଣ ଦେବାପାଇଁ ଭାରତର ବୁଲ୍‌ବୁଲ୍ ସରୋଜିନୀ ନାଇଡୁ ଆସିଥାନ୍ତି । ତାଙ୍କପାଇଁ ଗୋଟିଏ ସ୍ୱାଗତ ସଂଗୀତ ଇନ୍ଦୁବାବୁ ସଂସ୍କୃତରେ ଗାଇଲେ । ସେ ସଂଗୀତର ସ୍ୱରରେ ଶ୍ରୀମତୀ ନାଇଡୁ ଏପରି ଅଭିଭୂତ ହୋଇ ପଡ଼ିଲେ ଯେ, ସେ ଇନ୍ଦୁବାବୁଙ୍କୁ ଡାକି କହିଲେ ତୁମ ସଂଗୀତର ସ୍ୱର ମୋତେ ଅତ୍ୟନ୍ତ ପ୍ରଭାବିତ କରିଦେଇଛି, ମୁଁ ଏହାକୁ ମୋ ସାଙ୍ଗରେ ନେଇଯାଉଛି ।

ପିଲାଦିନୁ ସେ ଦରିଦ୍ର, ଦୁଃସ୍ଥ ଲୋକଙ୍କ ପାଇଁ ବିଭିନ୍ନ ସେବାମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ସାଙ୍ଗମାନଙ୍କୁ ଏକାଠି କରି, ସେ ଅସୁସ୍ଥ ଲୋକମାନଙ୍କ ସେବା କରିବା ଓ ସହରର ପରିତ୍ୟକ୍ତ ବସ୍ତୁଗୁଡ଼ିକୁ ଦାହ କରିବା ଇତ୍ୟାଦିରେ ସର୍ବଦା ବ୍ୟସ୍ତ ରହୁଥିଲେ ।

ଜୀବନରେ ସେ ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ମିଶିବାର ଓ କାର୍ଯ୍ୟ କରିବାର ସୁଯୋଗ ପାଇଥିଲେ, ଯାହାକି ତାଙ୍କୁ ବିଶେଷଭାବେ ପ୍ରଭାବିତ କରିଥିଲା । ସେମାନଙ୍କ ମଧ୍ୟରୁ ୧୯୪୧ମସିହାରେ ଡ. ଜାକିର ହୁସେନ, ୧୯୪୨ରେ ଇନ୍ଦିରା ଗାନ୍ଧୀ ଓ ୧୯୪୭ମସିହାରେ ଗାନ୍ଧୀଙ୍କ ସେବାଗ୍ରାମଠାରେ ମୌଳିକଶିକ୍ଷା ତାଲିମ ନେବା ସମୟରେ ଇ.ଡବଲ୍ୟୁ. ଆର୍ଯ୍ୟ ନାୟକନ୍, ଡକ୍ଟର ଜେ.ସି.କୁମାରପ୍ପା, କାକା କାଲେଲକର, ଶ୍ରୀମାନ୍ ନାରାୟଣ ଅଗ୍ରୱାଲ, ସନ୍ଥ ବିନୋବା ଭାବେ, ସନ୍ଥ ଟୁକୁଡୋଜୀ, ଡ. ରାଜେନ୍ଦ୍ର ପ୍ରସାଦ, ପଣ୍ଡିତ ଜବାହରଲାଲ ନେହେରୁ ଓ ଅନ୍ୟସମୟରେ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ହରିହର ମିଶ୍ର, ଶ୍ରୀମତୀ ମାଳତୀ ଦେବୀ, ରାଜ୍ୟପାଳ ଆସଫ ଅଲ୍ଲୀ, ଫଜାଲ ଅଲ୍ଲୀ, ଜୟପୁର ମହାରାଜା, ଡ. ଢ୍ୱାଇଟ୍ ପ୍ଲାଟ, ଡ. ଏଡ଼୍‌ୱିନ ଆବର୍ଟ, ଡ. ଭିଭିଏନ୍ ଆବର୍ଟ, ଡ. ବି ମହାପାତ୍ର, ଶ୍ରୀ ହୋରସ୍ ଆଲେକ୍‌ଜାଣ୍ଡାର, ଶ୍ରୀ ଡୋନାଲଡ୍ ଗ୍ରୁମ୍ ଇତ୍ୟାଦି ଅନ୍ୟତମ ।

ତତ୍କାଳୀନ ବିଧାୟକ ସଦାଶିବ ତ୍ରିପାଠୀ ଓ ଶିକ୍ଷା ସଂଗଠକ ଶ୍ରୀ ହରିହର ମିଶ୍ରଙ୍କ ଉଦ୍ୟମ ଯୋଗୁଁ ଇନ୍ଦୁବାବୁ ସେବାଗ୍ରାମଠାରେ ମୌଳିକଶିକ୍ଷା ତାଲିମ ଗ୍ରହଣ କରିଥିଲେ । ତା'ପରେ ଓଡ଼ିଶାକୁ ଫେରି ସେ କୋରାପୁଟର ନବରଙ୍ଗପୁର ମୌଳିକ ତାଲିମ ସ୍କୁଲରେ ଯୋଗଦେଲେ । ଖୁବ୍ କମ୍‌ଦିନ ମଧ୍ୟରେ ସେ ସ୍କୁଲଟି ଏଭଳି ନାମ କରିଥିଲା ଯେ

ତତ୍କାଳୀନ ମୁଖ୍ୟମନ୍ତ୍ରୀ ଗାନ୍ଧିବାଦୀ ନେତା ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ପତ୍ନୀ ଶ୍ରୀମତୀ ମାଳତୀ ଦେବୀ, ଝିଅ ଉତ୍ତରା, ଙ୍କାଇଁ ନାରାୟଣ ଦେଶାଇଙ୍କ ସହିତ ପରିଦର୍ଶନରେ ଆସିଥିଲେ । ପିଲାମାନଙ୍କ ଦ୍ୱାରା ଚାଷ କରାଯାଇଥିବା ପରିବା, ତେଲ ଓ ଚାଉଳରେ ରନ୍ଧାଖାଦ୍ୟ ଖାଇ ସେଠାରେ ଝୁମ୍ପୁଡି ଘରେ ସେ ନିଜ ପତ୍ନୀଙ୍କ ସହ ରାତ୍ରିଯାପନ କରିଥିଲେ । ତତ୍କାଳୀନ ରାଜ୍ୟପାଳ ଆସଫ ଅଲ୍ଲୀ ଓ ଫଜଲ ଅଲ୍ଲୀ, ଜୟପୁରର ରାଜା ମଧ୍ୟ ସେହି ସ୍କୁଲ ପରିଦର୍ଶନ କରି ଇନ୍ଦୁବାବୁଙ୍କ ଉଦ୍ୟମକୁ ଭୂୟସୀ ପ୍ରଶଂସା କରିଥିଲେ ।

୧୯୫୨ମସିହାରେ ସେ ଆମେରିକୀୟ ଫ୍ରେଣ୍ଡସ୍ ସର୍ଭିସ୍ ଆସୋସିଏସନ ସହିତ ଗ୍ରାମ୍ୟଉନ୍ନୟନ କାର୍ଯ୍ୟ କରିବାପାଇଁ ଓଡ଼ିଶା ସରକାରଙ୍କ ଦ୍ୱାରା ମନୋନୀତ ହେଲେ । ସମ୍ବଲପୁରର ବରପାଲିଠାରେ ଜନସଚେତନତା କାର୍ଯ୍ୟ ଆରମ୍ଭ ହେଲା । ତାଙ୍କ ପତ୍ନୀ ମଧ୍ୟ ସ୍ୱାସ୍ଥ୍ୟକର୍ମୀଭାବେ ତାଙ୍କସହିତ ଯୋଗଦେଲେ । ଲୋକମାନଙ୍କ ସହଯୋଗରେ ସେ ଖୁବ୍ କମ୍ ଅର୍ଥବ୍ୟୟରେ ବହୁ କୂପ ଖନନ କଲେ, ପାଇଖାନା ନିର୍ମାଣ କଲେ, ମହିଳା ଓ ଯୁବକମାନଙ୍କୁ ନେଇ ବିଭିନ୍ନ ସଂଗଠନ ଗଢିଲେ । ଡ. ଏଡୱିନ୍ ଆବର୍ଟଙ୍କ ସହଯୋଗରେ ବରପାଲି ଲାଟ୍ରିନ୍ ତିଆରି ହେଲା ଓ ଗାଁ ଗାଁ ବୁଲି ଇନ୍ଦୁବାବୁ ତାର ବ୍ୟବହାର ବିଷୟରେ ପ୍ରଚାର କଲେ । ସେ ପାଇଖାନା ବର୍ତ୍ତମାନ ସୁଦ୍ଧା ଓଡ଼ିଶାରେ ବହୁଳଭାବେ ବ୍ୟବହୃତ ହୁଏ ।

୧୯୫୭ରେ ବରପାଲିରୁ ତାଙ୍କର କାର୍ଯ୍ୟ ସରିବାପରେ ସେ ଜିଲ୍ଲା ସାମାଜିକ ଶିକ୍ଷା ସଂଗଠକଭାବେ ପୁଣି କାର୍ଯ୍ୟ ଆରମ୍ଭ କଲେ । ତାପରେ ୧୯୬୩ରେ ସେ ବାଲାଙ୍ଗୀର ଜିଲ୍ଲାର ପୃଥ୍ୱୀରାଜ ହାଇସ୍କୁଲରେ ପ୍ରଧାନଶିକ୍ଷକଭାବେ ଯୋଗଦେଲେ । ସେହି ସ୍କୁଲରେ ଥରେ ଜିଲ୍ଲାପାଳ ଗୋଟିଏ କାର୍ଯ୍ୟକ୍ରମରେ ଯୋଗଦେଇ କହିଲେ "ମିଶ୍ରଜୀ, ମୁଁ ଏଭଳି ସ୍କୁଲ କେବେ ଜୀବନରେ ଦେଖି ନାହିଁ" । ତାପରେ ସେ ୧୯୬୭ରେ କଟକ ଟ୍ରେନିଂ ସ୍କୁଲର ପ୍ରଧାନଶିକ୍ଷକଭାବେ ଦାୟିତ୍ୱ ଗ୍ରହଣକଲେ । ୧୯୬୮ରୁ ୧୯୭୨ପର୍ଯ୍ୟନ୍ତ ସେ କଟକ ଶିକ୍ଷାଜିଲ୍ଲା ନିରୀକ୍ଷକ ଭାବେ କାର୍ଯ୍ୟ କରିଥିଲେ । ୧୯୭୩ରେ ସେ ମାଧ୍ୟମିକ ଶିକ୍ଷା ଉପ-ନିର୍ଦ୍ଦେଶକ ଭାବେ ଯୋଗଦେଇ ତା ୨୭/୧୧/୧୯୭୩ରେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କଲେ । ତାଙ୍କ ସମୟରେ ସେ ଜଣେ ଅତି ଦକ୍ଷ, କର୍ତ୍ତବ୍ୟନିଷ୍ଠ ଓ ସଚ୍ଚୋଟ କର୍ମୀଭାବେ ସରକାରୀ କ୍ଷେତ୍ରରେ ଖୁବ୍ ସୁନାମ ଅର୍ଜନ କରିଥିଲେ ।

ଅବସର ଗ୍ରହଣ ପରେ ସେ ଭୁବନେଶ୍ୱର ନିକଟରେ 'ନଖଉର୍' ନାମକ ଗୋଟିଏ ଗ୍ରାମକୁ ପୌଷ୍ୟଗ୍ରାମ୍ୟ ଭାବେ ଗ୍ରହଣ କରି ସେହି ଗ୍ରାମର ସର୍ବାଙ୍ଗୀନ ଉନ୍ନତିକଳ୍ପେ କାର୍ଯ୍ୟକଲେ । ଲୋକମାନଙ୍କ ମଧ୍ୟରେ ଅନ୍ଧବିଶ୍ୱାସ ଓ କୁସଂସ୍କାର ବିରୁଦ୍ଧରେ ପ୍ରଚାର କଲେ । ଗ୍ରାମବାସୀ ଓ ସରକାରଙ୍କ ମିଳିତ ଉଦ୍ୟମରେ ରାସ୍ତା, ପୋଷ୍ଟଅଫିସ୍, ବ୍ୟାଙ୍କ,

ସ୍କୁଲ ଇତ୍ୟାଦି ନିର୍ମାଣ କରାଗଲା । କୃଷିର ଉନ୍ନତିକଳ୍ପେ ମଧ୍ୟ ଗୋଟିଏ ବହୁବିଧ ଯୋଜନା ପ୍ରସ୍ତୁତକରି ସେ କାର୍ଯ୍ୟ କରିଥିଲେ ।

ଇନ୍ଦୁବାବୁ ସରକାରୀ ଓ ବେସରକାରୀ କ୍ଷେତ୍ରରେ ଅନେକ ବିକାଶମୂଳକ ଯୋଜନା ଓ ଶିକ୍ଷାର ପ୍ରଗତି ପାଇଁ କାର୍ଯ୍ୟ କରିଯାଇଛନ୍ତି । ୟୁନିସେଫ୍, ଡାନିଡା, ଡୋକ୍ରା, ଆଇ.ସି.ଡି.ଏସ୍., ୟୁ.ବି.ଏସ୍. ଇତ୍ୟାଦିରେ ଓଡ଼ିଶାରେ ବିଭିନ୍ନ କାର୍ଯ୍ୟକ୍ରମପାଇଁ ତାଙ୍କର ପରାମର୍ଶ ଗ୍ରହଣ କରାଯାଏ । ବହୁ ବଡ଼ବଡ଼ ବେସରକାରୀ ଅନୁଷ୍ଠାନର ମଧ୍ୟ ସେ ପରାମର୍ଶଦାତା ଭାବେ କାର୍ଯ୍ୟ କରୁଥିଲେ ।

ଓଡ଼ିଶାରେ ଭାରତୀୟ ପ୍ରାକ୍-ବିଦ୍ୟାଳୟ ଶିକ୍ଷା ସଂଗଠନର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଶ୍ରୀ ହରିହର ମିଶ୍ର ଓ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ସହିତ ମିଶି ସେ ପ୍ରାକ୍-ବିଦ୍ୟାଳୟ ଶିକ୍ଷାକୁ ଓଡ଼ିଶାର ପୁରପଲ୍ଲୀରେ ପ୍ରଚାର କରିଥିଲେ ।

୧୯୩୯ ମସିହାଠାରୁ ସେ ଜନଶିକ୍ଷା ଆନ୍ଦୋଳନ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ଥିଲେ । ୧୯୬୭ରେ ସେ ଦିଲ୍ଲୀଠାରେ ଜାତୀୟ ଜନଶିକ୍ଷା କାର୍ଯ୍ୟକ୍ରମ ପାଇଁ କେତେକ ଶିକ୍ଷାବିତ୍‌ଙ୍କ ସହ ମିଶି ଗୋଟିଏ ସ୍ୱତନ୍ତ୍ର ଯୋଜନା ପ୍ରସ୍ତୁତ କରିଥିଲେ । ୧୯୬୮ ମସିହାରେ ସେ ଭାରତୀୟ ଜନଶିକ୍ଷା ସଂଘର ଏକ୍‌ଜିକ୍ୟୁଟିଭ୍ କମିଟିର ସଭ୍ୟଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ ।

ଜଣେ ପରମ ହିତୈଷୀ ବନ୍ଧୁଭାବେ ତାଙ୍କର ବିପ୍ଳବୀ ଅଭିପ୍ରେରଣା ରୁଚିକା ସମାଜମଂଗଳ ସଂଗଠନ, ରୁଚିକା ଉଚ୍ଚବିଦ୍ୟାଳୟ ଓ ରୁଚିକା ପ୍ରାକ୍-ବିଦ୍ୟାଳୟର ସମସ୍ତ କର୍ମକର୍ତ୍ତାଙ୍କୁ ଚିର ଉଦ୍‌ବୁଦ୍ଧ କରୁଥିବ । ଆମେ ସଂଗଠନର ଅଗଣିତ ଶିଶୁ ଓ କର୍ମକର୍ତ୍ତା ତାଙ୍କପ୍ରତି ଏହି ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ । ତାଙ୍କ ପବିତ୍ର ଚରଣ ତଳେ ଆମର ଭକ୍ତିପୂତ ପ୍ରାର୍ଥନା, ଧ୍ରୁବତାରା ହୋଇ ସେ ଆକାଶରୁ ଆମକୁ ଚିର ଦିଗ୍‌ଦର୍ଶନ ଦେଉଥାନ୍ତୁ ।



# ପୂଜ୍ୟ ଇନ୍ଦୁବାବୁଙ୍କ ସ୍ମୃତିରେ

## ଗୋଲକ ଚନ୍ଦ୍ର ଦାସ

ପୂଜ୍ୟ ଇନ୍ଦୁବାବୁ ଥିଲେ ଜଣେ ଉଚ୍ଚ ଶିକ୍ଷାବିତ୍, ଉଚ୍ଚ ଶିକ୍ଷା ବିଭାଗ ଅଫିସର ଓ ଜଣେ ସଚ୍ଚା ଗାନ୍ଧୀ ଆଦର୍ଶର ଲୋକ । ସେ ଶିକ୍ଷାବିଭାଗ ତରଫରୁ ଓ୍ୱାର୍ଦ୍ଧା, ସେବାଗ୍ରାମ ଗାନ୍ଧିଜୀଙ୍କ ଆଶ୍ରମରେ କିଛିମାସ ତାଲିମ୍ ପାଇଁ ଯାଇଥିଲେ । ସେହିଦିନଠାରୁ ସେ ଖଦିବସ୍ତ୍ରକୁ ବ୍ୟବହାର କରିବା ପାଇଁ ଆପଣେଇ ନେଇଥିଲେ । ମୌଳିକ ଶିକ୍ଷାପ୍ରତି ତାଙ୍କର ଆନ୍ତରିକତା ଥିଲା । ତାଙ୍କ ଜୀବନରେ ବହୁତ ଗୁଡ଼ିଏ ବହି ଲେଖିଛନ୍ତି । ସ୍ୱଚ୍ଛ ପରିବେଶ ଗଠନ କରିବା ଓ ସ୍ୱାସ୍ଥ୍ୟରକ୍ଷା ପାଇଁ ଶିଶୁସାହିତ୍ୟ ଓ ପାଲା ଗୀତ ଲେଖି ସମାଜକୁ ଚେତନା ଦେଉଥିଲେ । ସେ ବିଭିନ୍ନ ତାଲିମ୍ କେନ୍ଦ୍ରମାନଙ୍କୁ ଯାଇ ଶିଶୁ ଶିକ୍ଷା ଉପରେ କ୍ଲାସ୍ ନେଉଥିଲେ । କ୍ଲାସ ନେବାବେଳେ ତାଙ୍କର ପଦ୍ଧତି ଅଲଗା ଥିଲା । ବର୍ତ୍ତମାନ ସରକାରଙ୍କର ସର୍ବଶିକ୍ଷା ଅଭିଯାନରେ ଶିକ୍ଷକମାନେ ସେହି ନୀତି ଅବଲମ୍ବନ କରୁଅଛନ୍ତି । ସେ କ୍ଲାସ୍ ନେବାବେଳେ ପିଲାମାନଙ୍କୁ ତଳେ ଗୋଲାକାର ଭାବରେ ବସାଇ ଶିକ୍ଷାଦେଉଥିଲେ । ତାଙ୍କର ଶିକ୍ଷା ମୌଳିକ ଢାଞ୍ଚାରେ ଥିଲା ।

ପୂଜ୍ୟ ଇନ୍ଦୁବାବୁଙ୍କ ସହ ମୋର ୧୯୭୮ ମସିହାରୁ ସଂପର୍କ । ସେ ସେତେବେଳେ ବରପାଲି ଆମେରିକାନ୍ ଫ୍ରେଣ୍ଡ ସୋସାଇଟିରେ ସରକାରଙ୍କ ତରଫରୁ କାମ କରୁଥିଲେ । ସେ ସମୟରୁ ବେଲା ବାନାର୍ଜୀଙ୍କ ସହ ତାଙ୍କର ଘନିଷ୍ଠ ସଂପର୍କ ଥିଲା । ବେଲାଦିଦି ଯେତେବେଳେ କସ୍ତୁରବା ଟ୍ରଷ୍ଟର ଦାୟିତ୍ୱ ନେଲେ, ତାଙ୍କ ସହ ମୁଁ ବରାବର ଇନ୍ଦୁବାବୁଙ୍କ ଘରକୁ ଯିବା ଦ୍ୱାରା ତାଙ୍କ ସହ ମୋର ଘନିଷ୍ଠ ସଂପର୍କ ହୋଇଗଲା । ଶେଷରେ ତାଙ୍କ ପରିବାରରେ ଜଣେ ସଦସ୍ୟ ହୋଇଗଲି । ତାଙ୍କ ସହ ଯଦି ମୁଁ ମାସରେ ଥରେ ଦେଖା ନ କରିବି, ସେ ସତ୍ୟଭାମାପୁରକୁ ଫୋନ୍ କରୁଥିଲେ । ତାଙ୍କ ସହ ଯେତେବେଳେ ବସି ଆଲୋଚନା କରିବି, ସେଇ ଗୋଟିଏ କଥା ଶିକ୍ଷାର କିପରି ପରିବର୍ତ୍ତନ ହେବ । ଗାଁଗହଳିର ପିଲାମାନେ କିପରି ଉଚ୍ଚଶିକ୍ଷା ପାଇ ପାରିବେ, ଗାଁ ମାନଙ୍କରେ ପ୍ରତ୍ୟେକ ପରିବାର କିପରି ପାଇଖାନା ବ୍ୟବହାର କରିବେ, ସେଥିପାଇଁ ସେ ସରକାରୀ ଓ ବେସରକାରୀ ଅନୁଷ୍ଠାନ ସହ ସଂପର୍କ ରଖି କାର୍ଯ୍ୟ କରୁଥିଲେ । ସେ ବିଭିନ୍ନ ପ୍ରକାର ଫୁଲ ଓ ଫଳଗଛ ଆମ୍ଭମାନଙ୍କୁ ବଗିଚାରେ ଲଗାଇବାକୁ ଦେଇଥିଲେ । ତାଙ୍କ ମୃତ୍ୟୁର ଆଠଦିନ ପୂର୍ବରୁ ତାଙ୍କଘରେ ବେଲାଦିଦି ଟ୍ରଷ୍ଟର ମିଟିଂ ଥିଲା ଓ ଏହା ତାଙ୍କ ସହ ମୋର ଥିଲା ଶେଷ ଦେଖା ।

ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଅଛି ।



# ଇନ୍ଦୁ ସାର୍

## ସବିତା ମହାନ୍ତି

ସାର୍‌ଙ୍କ ବିଷୟରେ ଯେତେ ଲେଖିଲେ ମଧ ସରିବନି । କ'ଣ ଲେଖିବି, କେଉଁଠାରୁ ଆରମ୍ଭ କରିବି ଜାଣିପାରୁନି । ମନ ଭିତରେ ଆଜି ସାର୍‌ଙ୍କ ସ୍ମୃତିସବୁ ଅଡୁଆସୂତା ପରି ଏତେ ଛନ୍ଦାଛନ୍ଦି ହୋଇଯାଇଛି ଯେ, ସେଥିରୁ ସୂତାଖଣ୍ଡିଏ ବାହାର କରି ତାର ବିଷୟରେ ଲେଖିବା କଷ୍ଟକର ହୋଇପଡୁଛି । ସଂସାରରେ ଜଣେ ଭଲଲୋକ ସାର୍ ଥିଲେ । ଋରିପଟେ ଆଜି ଆଖି ବୁଲାଇଲେ ସେପରି ଲୋକଟିଏ କାହିଁ ଆଉ ଆଖି ଆଗରେ ପଡୁନି । ବର୍ତ୍ତମାନଯୁଗରେ ସମସ୍ତଙ୍କୁ ନିଜର ବୋଲି ଭାବିବା ଓ ତାଙ୍କପାଇଁ ଚିନ୍ତାକରିବା ସାର୍‌ଙ୍କ ଚରିତ୍ରର ଏକ ବଡ଼ ବିଶେଷତ୍ୱ । ସାର୍‌ଙ୍କୁ ଅନୁଷ୍ଠାନକୁ ଯେତେବେଳେ ଡାକିଲେ ସାର୍ ଖୁସି ହୋଇ ଋଲିଆସନ୍ତି । ପିଲାଙ୍କ ସହିତ ପିଲା ହୋଇ ଗୀତନାଚ ଶିଖାଇବାରେ ଲାଗିଯାନ୍ତି । ସେତେବେଳେ ସାର୍ ଭୁଲିଯାଆନ୍ତି ତାଙ୍କର ବୟସ । ତାଙ୍କର ସୁଲଳିତ ସ୍ୱରରେ ନାଚି, ଗୀତ ବୋଲି, ହସାଇ ସେ ପରିବେଶ ଓ ଶିଖିବା ଶୈଳୀକୁ ପ୍ରକୃତରେ ଖୁବ୍ ଆନନ୍ଦମୟ କରିତୋଳନ୍ତି । ସାର୍ ଋଲିଯିବା ପରେ ସେ ଅଭାବ ଆଉ କିଏ ପୂରଣ କରିବ ? ଆଜି ପୁରପଲ୍ଲୀରେ ସାର୍‌ଙ୍କର 'ଗୀତ ଋଙ୍ଗୁଡ଼ି' ବହୁଳଭାବେ ପରିଚିତ ଓ ସେ ଗୀତ ଶହଶହ ପିଲାଙ୍କ ଭିତରେ ଶୁଣିବାକୁ ମିଳେ । ଗୀତ, ନାଟକ, ଗପ ମାଧ୍ୟମରେ ସାର୍ ବହୁତ ବହି ଲେଖି ଯାଇଛନ୍ତି । ଯେପରି ସାଧାରଣ ଲୋକଟିଏ ମଧ ତାହା ବୁଝିପାରିବ । ସାର୍‌ଙ୍କର ସବୁକଥାରେ ଆତ୍ମୀୟତା ପୂରି ରହିଥିଲା । ଯେତେଥର ମୁଁ ସାର୍‌ଙ୍କ ଘରକୁ ଯାଇଛି, ସବୁଥର କ'ଣ ନା କ'ଣ ଖାଇକରି ଆସିଛି । ଏପରିକି ମଧ୍ୟାହ୍ନ ଭୋଜନ ସମୟରେ ଗଲେ ତାଙ୍କ ଖାଇବାରୁ ଭାଗକରି ସେ ଖାଇବାକୁ ଦେଉଥିଲେ । ବାହ୍ୟ ଋକଚକ୍ୟରେ ସାର୍ ବିଶ୍ୱାସ କରୁନଥିଲେ । ଅନ୍ଧବିଶ୍ୱାସ, ଅଶ୍ଳୀଳତା, ନାରୀ ନିର୍ଯାତନା ଏହି ସବୁର କିପରି ଅବସାନ ହେବ ସେ ବିଷୟରେ ତାଙ୍କର ମନ ସବୁବେଳେ ଆନ୍ଦୋଳିତ ହେଉଥିଲା । ଶିକ୍ଷାର ପ୍ରସାର ପାଇଁ କିପରି ପାଠ୍ୟଖସଡ଼ା ପ୍ରଥମ ସ୍ତରରୁ ପ୍ରସ୍ତୁତ ହେବ; କ'ଣ କ'ଣ ବିଷୟବସ୍ତୁ ରହିବ - ସବୁବେଳେ ସେହି ଚିନ୍ତା । ନାରୀମାନଙ୍କ ଉପରେ ହେଉଥିବା ଅତ୍ୟାଋର ଅଶ୍ଳୀଳତା ବିରୁଦ୍ଧରେ ସାର୍‌ଙ୍କର ବହୁତ କିଛି କରିବାର ଇଚ୍ଛା ଥିଲା । ସମାଜର ବିଭିନ୍ନ ବର୍ଗର ସ୍ତ୍ରୀ ଲୋକମାନଙ୍କୁ ଏକାଠି କରି କିପରି ଆଧୁନିକତା

ନାଁରେ ଅପପ୍ରଚାର ଚାଲିଛି, ତାକୁ ବନ୍ଦକରିବା ପାଇଁ ଗଣ୍ଡଗୋଳ ନକରି ଶାନ୍ତ ଓ ନିରବରେ ତାର ପ୍ରତିବାଦ କରିବାପାଇଁ, ନିଜ ହାତରୁ ପଇସା ଖର୍ଚ୍ଚ କରିବାପାଇଁ ସବୁବେଳେ କହୁଥିଲେ "ଚାଲ ସଂଗ୍ରାମ କରିବା ।" ସେ କଥା ପୂରା ହୋଇପାରିଲା ନାହିଁ । ଆଜିକାଲି ପ୍ରଚାରଧର୍ମୀ ଯୁଗରେ ସାରଙ୍କର କଥା କାହାମନକୁ ପାଇବ ବା କାହିଁକି । କିନ୍ତୁ ଦିନକୁ ଦିନ ଘଟୁଥିବା ନାରୀ ନିର୍ଯାତନା, ବଧୂହତ୍ୟା, ଅଶ୍ଳୀଳତା ଯେ ଦିନେ ଭୟଙ୍କର ରୂପ ନେବ, ଏହାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ରାସ୍ତାରେ ଆଜି ଝିଅଟିଏ କି ବୋହୂଟିଏ ଏକାକୀ ଯିବାକୁ ଡରୁଛି । ଏ କି ସ୍ୱାଧୀନତା ? ସବୁଆଡ଼େ ଆଜି ଉଚ୍ଛୃଙ୍ଖଳତା । ଦିନରାତି ବସି ସମାଜ କିପରି ସୁଧୁରିବ, ଶିକ୍ଷାର ପ୍ରସାର କିପରି ଘଟିବ ଚିନ୍ତା କରୁଥିବା ବ୍ୟକ୍ତିଟି ଆଜି ଆଉ ନାହିଁ ।



# ଇନ୍ଦୁସାର୍‌ଙ୍କ ବିଷୟରେ ପଦେ

## ସବିତା ସାହୁ

ସେଦିନ ଆମର ଟ୍ରେନିଂ ଥାଏ । ନୂତନ ଶିକ୍ଷା-ପ୍ରଣାଳୀରେ ପିଲାମାନଙ୍କୁ କିପରି ଶିକ୍ଷା ଦିଆଯିବ, ସେ ବିଷୟରେ ଶିକ୍ଷକମାନଙ୍କୁ ଅବଗତ କରାଇବା ପାଇଁ Training Programmeର ଆୟୋଜନ କରାଯାଇଥିଲା । ମନରେ ଅଦମ୍ୟ ଆଗ୍ରହ ରଖି ଆମେ ସମସ୍ତେ ଏକତ୍ର ହୋଇଥିଲୁ । ଛୋଟଛୋଟ ପିଲାମାନଙ୍କୁ ଗୀତ, ନାଚ ଓ ଖେଳ ମାଧ୍ୟମରେ ଶିକ୍ଷା ଦେଲେ ସେମାନେ ଖୁବ୍‌ଶୀଘ୍ର ଶିଖି ପାରିବେ । ସେତେବେଳେ ହଠାତ୍ ମୋର ମନେ ପଡ଼ିଗଲା ଏହି ସେହି ବ୍ୟକ୍ତି, ଯେମିତି ମୁଁ ପୂର୍ବରୁ ଜାଣିଛି ବା ଶୁଣିଛି । ମୋର ମନେ ପଡ଼ିଗଲା ଇନ୍ଦୁଭୂଷଣ ସାର୍‌ଙ୍କ କଥା । ସେ ଆମର ନମସ୍ୟ । ପିଲାମାନଙ୍କୁ ଶିକ୍ଷା ଦେବାପାଇଁ ସେ ଗୀତ ଗଳ୍ପକୁ ମାଧ୍ୟମକରି ବହୁତ କିଛି ଲେଖିଥିଲେ, ଏପରିକି ନିଜେ କଣ୍ଠଦାନ ମଧ୍ୟ କରିଥିଲେ । ମୁଁ ଯେତେବେଳେ ପ୍ରଥମଶ୍ରେଣୀ ପଢ଼ାଉଥିଲି, ତାଙ୍କଦ୍ୱାରା ଲିଖିତ କୁତୁରୁକୁତୁ, ଟପର ଟପର ଗୀତ ବୋଲି, ଖେଳି ପଢ଼ାଉଥିଲି ଓ ମୁଁ ଅନୁଭବ କରୁଥିଲି ପିଲାମାନେ ବହୁତ ଆନନ୍ଦ ପାଉଥିଲେ ।

ଏବେ ଯେଉଁ ସର୍ବଶିକ୍ଷା ସର୍ବଶିକ୍ଷା କହୁଛନ୍ତି, ସାର୍‌ଙ୍କର ଏ ଉଦ୍ୟମ କେବେଠାରୁ ଜାରି ରହିଥିଲା । ବିଶେଷକରି ବସ୍ତିମାନଙ୍କୁ ଯାଇ ବସ୍ତିପିଲାଙ୍କୁ ପାଠପଢ଼ିବା ପାଇଁ ବୁଝାଉଥିଲେ ଏବଂ ସେମାନଙ୍କ ଅଭାବ ଅସୁବିଧା ବୁଝି ଦୂରକରିବା ପାଇଁ ଚେଷ୍ଟା କରୁଥିଲେ । ତାଙ୍କ ମତରେ ଗୋଟିଏ ପିଲାକୁ କେବେହେଲେ ଜବରଦସ୍ତ ପଢ଼େଇ ପାରିବା ନାହିଁ, ତାଙ୍କୁ ବୁଝାଇ ସେ ପ୍ରକାର ପରିସ୍ଥିତି ସୃଷ୍ଟିକରି ବିଦ୍ୟାଳୟ ପରିସରକୁ ଆଣିବାଥିଲା ତାଙ୍କର ମୂଳଲକ୍ଷ୍ୟ ।

ମୋତେ ଲାଗେ, ଯେମିତି ସେ ସମସ୍ତଙ୍କ ମନକଥା ବୁଝିପାରୁଥିଲେ ଓ ଗଭୀରତାକୁ ଯାଇପାରୁଥିଲେ । ତାଙ୍କ ଲେଖାରୁ ତାଙ୍କ ମନସ୍ତାତ୍ତ୍ୱିକ ପୃଷ୍ଠଭୂମି ଜଣାପଡ଼େ । କଥାଗୁଡ଼ିକ କେତେଦୂର ଯେ ସତ୍ୟ, ସେ ତାର କାରଣ ଖୋଜି ତାର ନିରାକରଣ ପାଇଁ ବିଭିନ୍ନ ପଦକ୍ଷେପ ନେବାପାଇଁ ଲେଖି ଜଣାଇଲେ, କିନ୍ତୁ କିଏ ବି ଭ୍ରୂକ୍ଷେପ କଲେନାହିଁ । ସେଥିପାଇଁ ସେ କ୍ଷୋଭ ପ୍ରକାଶ କଲେ । ସେ କରିଥିବା ଅନୁରୋଧକୁ କିଏ କାର୍ଯ୍ୟକାରୀ କଲେ ନା ଶୁଣିଲେ ।

ସେ ଯାହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ, ଆଜି ସମସ୍ତଙ୍କ ମନରେ ସେ ଚେତାପଶିଛି ଓ ସମସ୍ତେ ସେ ବାଟ ଆଜି ଖୋଜୁଛନ୍ତି । ସାର୍ ଆଜି ଆମ ଗହଣରେ ନାହାଁନ୍ତି ସତ, କିନ୍ତୁ ତାଙ୍କର ଆନ୍ତରିକ ଭାବ ପ୍ରତି ଯଦି ଧ୍ୟାନ ଦିଆଯାଇଥାନ୍ତା ଆଜି ଏ ସର୍ବଶିକ୍ଷା ଅଭିଯାନ କରିବା ଆବଶ୍ୟକତା ନଥାନ୍ତା ବୋଲି ଭାବୁଛି । ଆମେ ଯଦି ଏକାଠି ହୋଇ ବିଦ୍ୟାଳୟ ନ ଆସିପାରୁଥିବା ପିଲାଙ୍କ ମୂଳକାରଣ କାଢ଼ି, ଖୋଜି ସେମାନଙ୍କୁ ବିଦ୍ୟାଳୟ ଆଣିପାରିବା, ତେବେ ମୋ ମତରେ ସାର୍‌ଙ୍କ ପ୍ରତି ଏହା ହେବ ଆମର ଗଭୀର ଶ୍ରଦ୍ଧାଞ୍ଜଳି ।



# ଇନ୍ଦୁବାବୁଙ୍କ ସ୍ମରଣେ : ସ୍ମୃତିର ପାଖୁଡ଼ା

## ଶ୍ୟାମଳୀ ପତି

ସେ ଆମ କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟର (ପରିବାରର) ଜଣେ ସଦସ୍ୟ ଥିଲେ । ସ୍ୱର୍ଗତ ବେଲାଦିଦି ଯିଏ କି କସ୍ତୁରବା ଟ୍ରଷ୍ଟର ପ୍ରତିନିଧି ଥିଲେ, ତାଙ୍କ ମାଧ୍ୟମରେ ଇନ୍ଦୁବାବୁଙ୍କୁ ଓ ତାଙ୍କର ପରିବାରବର୍ଗଙ୍କୁ ୧୯୮୨ ମସିହାରୁ ଜାଣିବାର ସୁଯୋଗ ପାଇଥିଲି । ଇନ୍ଦୁବାବୁ ସରକାରୀ, ବେସରକାରୀ ଓ ସମାଜସେବା କ୍ଷେତ୍ରରେ ସମସ୍ତଙ୍କର ଅତି ଆପଣର ଥିଲେ । ବିରଳ ତାଙ୍କର ବ୍ୟକ୍ତିତ୍ୱ । ସେ ବହୁତ ସ୍ନେହୀ ଥିଲେ । ଖାଇବା ଓ ଖୁଆଇବାକୁ ସେ ବହୁତ ଭଲପାଉଥିଲେ । ତାଙ୍କର ସ୍ୱଦେଶୀ ପ୍ରୀତି ବହୁତ ଥିଲା । ସେ ରାଜଧାନୀରେ ରହୁଥିଲେ ସତ, କିନ୍ତୁ ଗ୍ରାମ୍ୟ ଜୀବନର ଚଳଣିକୁ ଭଲପାଉଥିଲେ । ଶିଶୁ ଓ ମହିଳାମାନଙ୍କର ସର୍ବାଙ୍ଗୀନ ଉନ୍ନତିପାଇଁ ଓ ସମାଜରେ ରୋଗର ନିରାକରଣ ପାଇଁ ସୁନ୍ଦର ସୁନ୍ଦର ବହିମାନ ଲେଖିଯାଇଛନ୍ତି । ଦାସକାଠିଆ, ପାଲା, ଦାଣ୍ଡିଆନୃତ୍ୟ ମାଧ୍ୟମରେ ଓ ପ୍ରାକ୍-ବିଦ୍ୟାଳୟ ଶିକ୍ଷା ମାଧ୍ୟମରେ ସମାଜରେ ଶୁଭ ସଂସ୍କାରର ପ୍ରଚାର ପ୍ରସାର କରାଉଥିଲେ । ଯେତେବେଳେ ସେ ଆମର ଅଙ୍ଗନବାଡ଼ି ଟ୍ରେନିଂ ସେଣ୍ଟରକୁ ତାଲିମ୍ ଦେବାପାଇଁ ଆସୁଥିଲେ, ସୁନ୍ଦର ଅଙ୍ଗଭଙ୍ଗୀ କରି ପ୍ରାକ୍‌ବିଦ୍ୟାଳୟ ସଂଗୀତ ଶିଖାଉଥିଲେ । କୀର୍ତ୍ତନ ତାଳରେ "ବୋଲ ହରି ବୋଲ ହରି ହରି ହରି ବୋଲ" ତାଳିମାରି ନୃତ୍ୟ କରୁଥିଲେ, ଯାହାକି ମନ ଉପରେ ବହୁତ ପ୍ରଭାବ ପକାଉଥିଲା । ପ୍ରାକ୍-ବିଦ୍ୟାଳୟ ସଂଗୀତ "ଆମ କୁନା ଯିବ ମାମୁଁଘର କୁଲେଇ କଣ୍ଢେଇ ସଜକର" ପାରିବାରିକ ସଂପର୍କକୁ ବାନ୍ଧି ରଖିବାକୁ ପ୍ରେରଣା ସଂଗୀତ ଥିଲା । ତାଙ୍କର ସମସ୍ତ ପ୍ରାକ୍-ବିଦ୍ୟାଳୟ ସଂଗୀତ ଦେହ, ମନ ଓ ପ୍ରାଣକୁ ଆନନ୍ଦ ଓ ପ୍ରେମର ଖାଦ୍ୟ ଯୋଗାଇଥାଏ । ଯିଏ ତାଙ୍କ ସହିତ ମିଶିଛି, ସେ ଜାଣିଛି ତାଙ୍କର ବିରଳ ବ୍ୟକ୍ତିତ୍ୱକୁ । ସେ ପ୍ରାକ୍‌ବିଦ୍ୟାଳୟ ଶିକ୍ଷାଦେବା ସଂଗେସଂଗେ ବିଭିନ୍ନ ପ୍ରକାର ଶାଗ, ସବୁଜ ପନିପରିବା, ଫଳମୂଳ, ଯଥା - ତାଳ, ପଣସ, କଦଳୀ, ନଡ଼ିଆ, ପିଜୁଳି, କାକୁଡ଼ି, ଜାମୁ ଓ ଖଜୁରି ଖାଇବାକୁ ଉପଦେଶ ଦେଉଥିଲେ । ଯାହାକି

ଗ୍ରାମାଞ୍ଚଳରେ ସହଜ ଓ ସୁବିଧାରେ ମିଳୁଥିବ । ଘରେଘରେ ପାଇଖାନାର ବ୍ୟବହାର କରିବାକୁ ପ୍ରବର୍ତ୍ତାଉ ଥିଲେ । ଅସୁସ୍ଥତା ସତ୍ତ୍ୱେ ମଧ୍ୟ ସେ ଆମ ଅନୁଷ୍ଠାନ ସହିତ ସୁସଂପର୍କ ଶେଷପର୍ଯ୍ୟନ୍ତ ରଖିଥିଲେ । ଶେଷନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ତାଙ୍କର ଲେଖନୀ ଚାଲୁ ରହିଥିଲା । ଜୀବନ ତାଙ୍କର କର୍ମମୟ ଥିଲା, ଘର ଥିଲା ତାଙ୍କର ପ୍ରୟୋଗଶାଳା, ଗଛ ଲଗାଇବା ଓ ମଞ୍ଜି ବିତରଣ କରିବାକୁ ସେ ଭଲପାଉଥିଲେ । ସହଧର୍ମିଣୀଙ୍କ ସହଯୋଗରେ ଜୀବନ ଥିଲା ତାଙ୍କର ଚଳଚଞ୍ଚଳ । ଅସୁସ୍ଥତା ସତ୍ତ୍ୱେ ମଧ୍ୟ ସହଧର୍ମିଣୀଙ୍କ ସହ ସଭାସମିତିରେ ଯୋଗ ଦେଉଥିଲେ ।

"ସ୍ମୃତି ତ କଦାପି ନୁହେଁ ଭୁଲିବାର
ଭୁଲି ପାରିଲେ ସେ ପାଆନ୍ତା ନିସ୍ତାର ।"



# ତାଙ୍କୁ ଏଯାଏଁ ଭୁଲିନାହିଁ

## ଗୋରା ମହାନ୍ତି

ଆମ ଜୀବନରେ ଗୋଟିଏ ଗୋଟିଏ ସମୟ ଆସେ, ଯେବେ ଆମର ପିଲାଦିନର ସ୍ମୃତିମାନେ ଧୀରେଧୀରେ ଆମଠୁଁ ବିଦାୟ ନେଇଯାନ୍ତି । ବାଟ ଚାଲୁଚାଲୁ କେତେ କିଏ ଚାଲିଯାଆନ୍ତି, କାହାରି କାହାରିକୁ ଆମେ ବିଦାୟ ଦେଉ, ଆଉ କିଏ ନିଜେ ବିଦାୟ ମାଗିନିଅନ୍ତି । ଆଉ କେହି କେହି ହଠାତ୍ ଖବରଯୋଗେ ଆଉ ନାହାଁନ୍ତି ବୋଲି ଶୁଣିବାକୁ ହୁଏ ।

ଆମ ସୌଭାଗ୍ୟ ଯେ, ସେଇ ନିଶ ଗଜୁରି ନଥିବା ସମୟରେ ଆମକୁ ମାଟିରୁ ଲୁହା, ପିତଳ କିମ୍ବା ସୁନା, ହୀରା କରି ଗଢ଼ିଥିବା ଗୁରୁମାନଙ୍କ ଭିତରୁ ଅନେକେ ଏଯାଏଁ ହାତଟେକି ଆମକୁ ଆଶୀର୍ବାଦ ଦେଉଛନ୍ତି । ସେଇଭଳି ଜଣେ ବିଦ୍ୟାଗୁରୁ ପୂଜ୍ୟ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ ମହାଶୟ ଶ୍ରୀଯୁକ୍ତ ହରିହର ମିଶ୍ର । ତାଙ୍କଠୁଁ ସମ୍ବାଦ ମିଳିଲା ଯେ ଆମକୁ ଛାଟଧରି ଅନୁଶାସନ, ଭକ୍ତି ଏବଂ ଗାନ୍ଧୀବାଦର ଶିକ୍ଷା ଦେଉଥିବା ପୂଜ୍ୟଗୁରୁ ଶ୍ରୀଯୁକ୍ତ ଇନ୍ଦୁଭୂଷଣ ମିଶ୍ର ସ୍ୱର୍ଗାରୋହଣ କଲେ ।

ଆମେ ପାଠଛାଡ଼ି, ଚାକିରି ସରିବା ଉପରେ । କିନ୍ତୁ ଏବେଯାଏଁ ସୁଦ୍ଧା ସାର୍‌ଙ୍କ ଛାଟ ଆମର ମନେଅଛି । ବଲାଙ୍ଗୀର ପୃଥ୍ୱୀରାଜ ହାଇସ୍କୁଲ । ଯାର ଇତିହାସ ବୋଧହୁଏ ଗୋଟିଏ ଶତାବ୍ଦୀର ଇତିହାସ । ପୃଥ୍ୱୀରାଜ ହାଇସ୍କୁଲ ଗଢ଼ିଦେଇଛି ଅନେକ ବିଶିଷ୍ଟ ଉଚ୍ଚ ପଦପଦବିରେ ପ୍ରତିଷ୍ଠା ପାଉଥିବା ଅନେକ କୃତୀ ସନ୍ତାନଙ୍କୁ । ସମାଜର ଅନେକ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ନିଜର କୃତୀଯୋଗେ ପ୍ରତିଷ୍ଠା ପାଇଥିବା ଲୋକେ ଆଜି ବି ମନେପକାନ୍ତି ପୃଥ୍ୱୀରାଜ ହାଇସ୍କୁଲକୁ ।

ମସିହା ମନେ ପଡୁନାହିଁ । ହେଲେ ପୃଥ୍ୱୀରାଜ ହାଇସ୍କୁଲର ପ୍ରଧାନଶିକ୍ଷକ ଭାବେ ଆସିଲେ ଇନ୍ଦୁଭୂଷଣ ସାର୍ । ତେଜୋଦୀପ୍ତ ମୁଖମଣ୍ଡଳ, ଗମ୍ଭୀର ସ୍ୱର ଏବଂ ଧୋବ ଫରଫର୍ ଖଦିର ଧୋତି ଏବଂ କୁର୍ତ୍ତା, ଏ ସବୁର ସମନ୍ୱୟରେ ଆମେମାନେ କିଛିଟା ଅସାଧାରଣ ଦେଖି ଆଶ୍ଚର୍ଯ୍ୟ ହେଉ । ଦେଖିଲାବେଳକୁ କେବଳ ବ୍ୟକ୍ତିତ୍ୱ ନୁହେଁ, ଶ୍ରେଣୀଶ୍ରେଣୀ ବୁଲି ସାର୍‌ମାନେ କିଭଳି କ୍ଲାସ୍ ନେଉଛନ୍ତି ଏବଂ ପିଲାଏଁ କିଭଳି ତାକୁ ଗ୍ରହଣ କରୁଛନ୍ତି, ପଛବେଞ୍ଚରେ ଚୁପ୍‌ଚାପ୍ ବସି ନିରୀକ୍ଷଣ, ପ୍ରଶ୍ନଯୋଗେ ସେ ନିଜକୁ

ସତରେ ଜଣେ ପ୍ରଧାନଶିକ୍ଷକ ଭାବରେ ପରିଚିତ କରାଉଥିଲେ । କିଛିଦିନ ପରେ ବିନାକୌଣସି ସରକାରୀ କାର୍ଯ୍ୟକ୍ରମରେ ସୁଦ୍ଧା ସ୍କୁଲ ଅଗଣାରେ କିସମ କିସମର ବୃକ୍ଷରୋପଣ, ପରିମଳ ବ୍ୟବସ୍ଥା ଏବଂ ଜାତୀୟ ସମର ଶିକ୍ଷାର୍ଥୀବାହିନୀ (ଏନ୍.ସି.ସି.)ର ମଧ୍ୟ ସାମୟିକ ତଦାରଖ କରିବାରେ ତାଙ୍କ ପ୍ରତି ଆମର ସମ୍ମାନବୋଧ ଦ୍ୱିଗୁଣିତ ହୋଇଯାଉଥିଲା ।

ସବୁଠୁ ଆକର୍ଷଣୀୟ ଥିଲା, ସ୍କୁଲର ପ୍ରାତଃକାଳୀନ ସାମୂହିକ ପ୍ରାର୍ଥନା । ନୂଆନୂଆ ଗୀତ ଗାନ୍ଧିଜୀଙ୍କ 'ଆଶ୍ରମ ଭଜନାବଳୀ'ରୁ ସଂଗ୍ରହକରି ସାର୍ ନିଜେ ବୋଲି ଆମକୁ ଶିଖେଇଥିଲେ । ସେଥିରୁ ସବୁଠୁଁ ଭଲ ଗାଇପାରୁଥିବା କେଇଜଣ ଛାତ୍ରଙ୍କୁ ପାଳିକରି ଶିଖିଥିବା ପ୍ରାର୍ଥନାକୁ ସାମୂହିକ ଭାବେ ଆବୃତ୍ତି କରାଇବା ଥିଲା ତାଙ୍କର ଏକ କାର୍ଯ୍ୟକ୍ରମ । ସ୍କୁଲର ବାର୍ଷିକ ଉତ୍ସବବେଳେ ପ୍ରସ୍ତୁତ କରାଯାଇଥିବା ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ନିଜେ ସକ୍ରିୟ ଭାବେ ଅଂଶ ନେଉଥିଲେ । ଏପରିକି ଆମେସବୁ ରିହର୍ସାଲ କଲାବେଳେ ସାର୍ ନିଜେ ଗୀତ ବୋଲି, ନାଚି ଆମକୁ ଉତ୍ସାହ ଦେଉଥିଲେ । ଆଜି ଏସବୁ ମନେପକାଇଲେ, ସଂପ୍ରତି ସରକାରୀ ପ୍ରଚେଷ୍ଟାରୁ ହେଉଥିବା କାର୍ଯ୍ୟକ୍ରମ 'ଆନନ୍ଦମୟ ଶିକ୍ଷା'କୁ ତୁଳନା କରିବାର ଲଚ୍ଛାହୁଏ ।

ସ୍କୁଲ କଲେଜ ପରେ ଚାକିରିରେ ପଶିବାର ଅନେକବର୍ଷ ପରେ ବଲାଙ୍ଗୀରରେ ଆରମ୍ଭ ହୋଇଥିବା ସାକ୍ଷରତା କାର୍ଯ୍ୟକ୍ରମରେ ଜଣେ ସ୍ୱେଚ୍ଛାସେବୀ ଭାବେ ଏଠି ପ୍ରଚଳିତ ପ୍ରଥମ ପାଠବହିର ଜଣେ ଯୁଗ୍ମଲେଖକ ଭାବେ ମୁଁ ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ର ଦ୍ୱାରା ନିମନ୍ତ୍ରିତ ହୋଇ ନବସାକ୍ଷରଙ୍କ ପାଇଁ ଉଦ୍ଦିଷ୍ଟ କିଛି ବହିର ଲେଖକ ଭାବେ ଯୋଗଦେଇଥାଏ । ସେଠି ସାର୍‌ଙ୍କୁ ଦେଖୁଦେଖୁ ଚିହ୍ନି ପ୍ରଣାମ କଲି । ତାଙ୍କର ମନେପଡ଼ିଲା ନାହିଁ ମୋର ନାମ । ପରେ ପିଠି ଆପୁଡ଼େଇ ଭଲମନ୍ଦ ପଚାରିଲେ । ଦୁଃଖ ସୁଖ ହେବାପରେ ଘର ଠିକଣା ଏବଂ ଫୋନ୍‌ନମ୍ବର ଦେଇ ଘରକୁ ନିମନ୍ତ୍ରଣ କରିଥିଲେ ।

ବିଭିନ୍ନ ଜଞ୍ଜାଳରେ ପଡ଼ି ତା' ପରେ ଆଉ ଦେଖା ହୋଇନି । ଅଥଚ କୃତଜ୍ଞତା ଜଣାଇବାର ଏଇ ଅବସରଟି ଆଜି ପାଇ ମନରେ ଆବେଗପୂର୍ଣ୍ଣ ଏକ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଦେବାର ବେଳ । ସାର୍‌ଙ୍କ ଭଳି ଆଉ କେହି ନଥିଲେ ଏଯାଏଁ ଆମ ଆଗରେ । ତାଙ୍କ ସ୍ମୃତି ଦୀର୍ଘଜୀବୀ ହେଉ ।



# ଇନ୍ଦୁବାବୁ : ଶିଶୁ କଲ୍ୟାଣକାରୀ ସମର୍ପିତ ଶିକ୍ଷାଗୁରୁ

## ପ୍ରମୋଦ କୁମାର ମହାନ୍ତି

ସେଇ ପୂର୍ଣ୍ଣାଙ୍ଗ ଶିକ୍ଷକ ଇନ୍ଦୁବାବୁଙ୍କର ସ୍ୱର୍ଗବାସ ହେବା ଏକ ବର୍ଷ ହୋଇଗଲାଣି । ସେ ଥିଲେ ଜଣେ ଦୁର୍ଲଭ ମଣିଷ, ସମର୍ପିତ ଶିକ୍ଷକ, ଗୀତିକାର, ଗାୟକ, ଲେଖକ, ସମାଜସେବୀ, ଜୀବନଧାରାରେ ମୂଳରୁ ଗାନ୍ଧିବାଦୀ ଓ ସହିଷ୍ଣୁ ଗୃହସ୍ଥ । ଗୋଷ୍ଠୀଉନ୍ନୟନ ସଂସ୍ଥାରେ, ମୌଳିକ ବିଦ୍ୟାଳୟଗୁଡ଼ିକରେ, ଟ୍ରେନିଂ ଗୁଡ଼ିକରେ, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଚଳିତ ଶିକ୍ଷାଶ୍ରମରେ - ନାନାସ୍ତରର କର୍ମୀ, ସାମାଜିକ ସେବାକାରୀମାନଙ୍କର ଓ ଅଧିକାରୀ ପ୍ରଭୃତିଙ୍କର ସେ ଥିଲେ ଜଣେ ସଚ୍ଚା ପଥଦ୍ରଷ୍ଟା-ଶିକ୍ଷକ । ନିଜେ ଗୀତଲେଖି, ସ୍ୱରଦେଇ, ଗାଇ, ନାଚି ଅଭିନୟ କରି ନିଜର ପ୍ରତି ପଦପାତକୁ ଛନ୍ଦ ଓ ତାଳ ଅନୁସାରେ ସମନ୍ୱିତ କରି ସେ ବହୁ ଶିକ୍ଷଣୀୟ ବିଷୟକୁ ପିଲାମାନଙ୍କର ଅର୍ନ୍ତପ୍ରବେଶ କରାଇଛନ୍ତି, ବହୁ ବୈତାଳିକ ସମବେତ ଗାନକୁ ମନଃପୂତ କରାଇ ପିଲାମାନଙ୍କ ଦ୍ୱାରା - ଶିକ୍ଷାର୍ଥିନୀଙ୍କ ଦ୍ୱାରା ପରିବେଷଣ କରାଇଛନ୍ତି ।

ସେ ଥିଲେ ଜଣେ ଶିକ୍ଷକଙ୍କର ପୁତ୍ର । ପୁରୀ ଜିଲ୍ଲା ବୀରନରସିଂହପୁର ଶାସନର ଖ୍ୟାତନାମା ଶିକ୍ଷକ, ପଣ୍ଡିତ ନରସିଂହ ମିଶ୍ର ହେଉଛନ୍ତି ତାଙ୍କର ପିତା । ଜନ୍ମ ୧୯୧୭ । ଶୈଶବ ଓ କୈଶୋର କଟିଛି ତତ୍କାଳୀନ ବିହାର ପ୍ରଦେଶ ଅଧୀନସ୍ଥ ଫୁଲବାଣୀ ଆଦିବାସୀ ଜିଲ୍ଲାରେ । ପରେ ସେ ରେଭେନ୍ସା କଲେଜକୁ ପାଠ ପଢ଼ିବାକୁ ଆସନ୍ତି । ୧୯୪୦ରେ ପ୍ରଖ୍ୟାତ କବି ଓ ମହିୟସୀନେତ୍ରୀ ଶ୍ରୀମତୀ ସରୋଜିନୀ ନାଇଡୁ ରେଭେନ୍ସା କଲେଜ ୟୁନିଅନ୍‌ର ଉତ୍ସବକୁ ମୁଖ୍ୟଅତିଥି ଭାବରେ ଉଦ୍‌ବୋଧନ ଦେଲେ । ସେ ସଭାର ପ୍ରାରମ୍ଭରେ ସଂସ୍କୃତରେ ସ୍ୱାଗତ ସଂଗୀତ ଗାନ କରିଥିଲେ ଯୁବକ ଇନ୍ଦୁଭୂଷଣ । ଏହାଶୁଣି ଚମତ୍କୃତା ଶ୍ରମୀତୀ ନାଇଡୁ ତାଙ୍କୁ ପାଖକୁ ଡାକି ପ୍ରଶଂସା ଓ ପ୍ରୋତ୍ସାହନ ଦେଇଥିଲେ । କଲେଜରେ ଛାତ୍ରାବସ୍ଥାରୁ ସେ ବଡ଼ବଡ଼ ମେଳାରେ - ବାରୁଣୀ, ଚନ୍ଦ୍ରଭାଗା, ରଥଯାତ୍ରା ଇତ୍ୟାଦିରେ ପିଇବା ପାଣି ବାଣ୍ଟିବାଠାରୁ ରୋଗୀସେବା କରିଆସିଛନ୍ତି ।

ପରେ ସରକାରଙ୍କ ଦ୍ୱାରା ପ୍ରେରିତ ହୋଇ ସେ 'ଆମେରିକାନ୍ ଫ୍ରେଣ୍ଡସ୍ ସର୍ଭିସ୍'କୁ ତାଲିମ୍ ପ୍ରଦାନକରିବା କାର୍ଯ୍ୟରେ ଯୋଗଦେଇଥିଲେ । ସ୍ଥାନ ଥିଲା ସମ୍ବଲପୁର ଜିଲ୍ଲାର ବରପାଲି ଗ୍ରାମ । ସେଠାରେ ଶିକ୍ଷାଦାନ କାଳରେ ସେ ନାନା ପ୍ରକାରର ଶିକ୍ଷକ ସାମଗ୍ରୀମାନ

ଉଦ୍ଭାବନ କରି ପ୍ରସ୍ତୁତକରି ବ୍ୟବହାର କରିଥିଲେ । ତାଙ୍କର ସହଯୋଗୀ ଥିଲେ ପ୍ରାଣୀବିଜ୍ଞାନରେ ଡି.ଏସ୍.ସି. କରିଥିବା ଡକ୍ଟର ଓ୍ବିଟ୍ ପ୍ଲଟ୍ । ପୁଷ୍ଟିକର ପୋଷଣକାରୀ ଖାଦ୍ୟ, ଶିଶୁ ଲାଳନପାଳନ, ରୋଗ ପ୍ରତିରୋଧ ଉପାୟ ଓ ଏହାର ପ୍ରତିକାର ଉପାୟ ପ୍ରଭୃତି ସଂପର୍କରେ ସେ ଶିକ୍ଷାଦାନ କରୁଥିଲେ । ଏହାର କିଛିଦିନ ପରେ ସ୍ୱାମୀ ସ୍ତ୍ରୀ ଉଭୟେ ଏଲାହାବାଦର ନଇନୀ କୃଷିବିଦ୍ୟାଳୟର ସଂପ୍ରସାରିତ ଶାଖାକୁ ଶିକ୍ଷାମୂଳକ ପରିଭ୍ରମଣରେ ଯାଇଥିଲେ । ସେଠାରେ ଚିକିତ୍ସକମାନଙ୍କ ମେଳରେ ସେହି ଚିକିତ୍ସାଳୟରେ ତାଙ୍କ ସ୍ତ୍ରୀ ଶ୍ରୀମତୀ କମଳା, ସ୍ୱାସ୍ଥ୍ୟକର୍ମୀ ଭାବରେ ସାମୟିକ କାର୍ଯ୍ୟ କରିଥିଲେ ଓ ସେଠାକାର ବିଭିନ୍ନ ଗ୍ରାମକୁ ଏଥିପାଇଁ ଉଭୟଙ୍କୁ ଯିବାକୁ ପଡୁଥିଲା ।

ବରପାଲିକୁ ତାଲିମ ପରେ ଫେରିଆସିଲା ପରେ ତାଙ୍କରି ନିରବଚ୍ଛିନ୍ନ ପରାମର୍ଶ ତଥା ମିଳାମିଶା ଓ ପ୍ରରୋଚନାରେ ସେଠାକାର ହରିଜନ ଗାଆଁଗୁଡ଼ିକରେ ସରକାରଙ୍କ ଠାରୁ କୌଣସି ଆର୍ଥିକ ଅନୁଦାନ ବ୍ୟତିରେକ ଲୋକମାନେ ନିଜ ହାତର ବାରଟି କୂଅ ଖୋଳିଥିଲେ । ସେ ସେଠାରେ ତାଙ୍କର ସହକର୍ମୀ ଡାକ୍ତର ଏଡ଼ଉଇନ୍ ଏବଟ୍ଙ୍କ ଦ୍ୱାରା ଉଦ୍ଭାବିତ ବରପାଲି ପାଇଖାନାର ପ୍ରଚଳନ କରାଯାଇଥିଲା । ଇନ୍ଦୁବାବୁ ଏଥିରେ ପୂର୍ଣ୍ଣପ୍ରାଣରେ ଲାଗି ପଡ଼ିଥିଲେ । ବରପାଲିରେ ରହଣିବେଳେ ଆମେରିକାର ତତ୍କାଳୀନ ରାଷ୍ଟ୍ରଦୂତଙ୍କ ପତ୍ନୀ ଶ୍ରୀମତୀ ଚେଷ୍ଟର ବୋଲ୍ସ୍ ହାତରେ ପ୍ଲେଟ୍‌ସବୁ ଧୋଇବା ଓ ଘର ଓଳାଇବା କାମ କରିଥିଲେ ।

ଏକଦା ୧୯୧୬ ମହିହାରୁ ପ୍ରଥମଦଳ ମେଟ୍ରିକ୍ ପରୀକ୍ଷା ଦେଇଥିବା ବଲାଙ୍ଗୀର ଐତିହାସିକ ପୃଥ୍ୱୀରାଜ ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବରେ ଯୋଗଦେଇ ସେ ଏହାର ସର୍ବବିଧ ଉନ୍ନତିସାଧନ କରି ଉଚ୍ଚପ୍ରଶଂସିତ ହୋଇଥିଲେ । ଓଡ଼ିଶା ସରକାରଙ୍କର ଗୋଷ୍ଠୀଉନ୍ନୟନ ବିଭାଗରେ ବିଭିନ୍ନ ଶିକ୍ଷା ତାଲିମ-ନିର୍ଦ୍ଦେଶନା କାର୍ଯ୍ୟରେ ୧୯୫୭ ଯାଏ କାର୍ଯ୍ୟ କରିଥିଲେ । ପୁଣି ଆଉଥରେ ଶିକ୍ଷାବିଭାଗରେ ସେ ଯୋଗଦାନ କରି ଜିଲ୍ଲା ସାମାଜିକ ଶିକ୍ଷା-ସଂଗଠକ ଭାବେ ପ୍ରାୟ ଦଶବର୍ଷ କାର୍ଯ୍ୟ କରିଥିଲେ । ୧୯୬୮ରୁ ୧୯୭୨ ଚାରିବର୍ଷ ପାଇଁ ବିଖ୍ୟାତ କଟକ ଟ୍ରେନିଂ ସ୍କୁଲର ସେ ଥିଲେ ପ୍ରଧାନଶିକ୍ଷକ । ସେଠାରେ ବହୁ ଉନ୍ନତିକର ସଂସ୍କାର ଆଣିଥିଲେ । କିଛିକାଳ ପାଇଁ ସେ ସ୍କୁଲ ଇନ୍‌ସପେକ୍ଟର ଓ ୧୯୭୩ରେ ସେ ମାଧ୍ୟମିକ ଶିକ୍ଷାବିଭାଗର ଉପନିର୍ଦ୍ଦେଶକ ଭାବେ ଯୋଗଦାନ କରିଥିଲେ ଏବଂ ଏହାର ପ୍ରାୟ ବର୍ଷକ ପରେ ଅବସର ଗ୍ରହଣ କରିଥିଲେ ।

ଅବସର ଗ୍ରହଣ ସିନା ଆନୁଷ୍ଠାନିକ ଥିଲା, ହେଲେ ନିରଳସ ଇନ୍ଦୁବାବୁଙ୍କ ଜୀବନରେ କର୍ମଯୋଗ ହିଁ ଆମୂଳଚୂଳ ଚାଲିଥିଲା । ସେ ଗୋଷ୍ଠୀଉନ୍ନୟନ ବିଭାଗଦ୍ୱାରା ପରିଚାଳିତ ରାଜ୍ୟ ଗ୍ରାମ୍ୟ-ଉନ୍ନୟନ ପ୍ରଶିକ୍ଷଣ ପ୍ରତିଷ୍ଠାନର ଅନୁରୋଧ କ୍ରମେ ଭୁବନେଶ୍ୱର

ନିକଟରେ ଗୋଟିଏ ପୋଷ୍ୟଗ୍ରାମ ଗ୍ରହଣ କରିଥିଲେ । ଏଥିରେ ଗ୍ରାମବାସୀଙ୍କ ଦ୍ୱାରା ସମସ୍ତ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟ କରାଯିବା ପାଇଁ ଉଦ୍ୟମ ହୋଇଥିଲା ।

ଇନ୍ଦୁବାବୁଙ୍କ ଜୀବନ ବହୁମୁଖୀ । ଆମ ପ୍ରଦେଶର ପ୍ରୌଢ଼ଶିକ୍ଷା ଆନ୍ଦୋଳନ ସହିତ ସେ ୧୯୩୯ରୁ ସମ୍ପୃକ୍ତ । ଭାରତ ସରକାରଙ୍କର ଜାତୀୟ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମରେ ସେ ଯୋଗଦାନ କରିଛନ୍ତି । ବସ୍ତି ଅଞ୍ଚଳରେ ପ୍ରୌଢ଼ମାନଙ୍କୁ ଶିକ୍ଷାଦାନ କରିଛନ୍ତି । ସେ ଭାରତୀୟ ପ୍ରୌଢ଼ଶିକ୍ଷା କାର୍ଯ୍ୟାଶ୍ରମର କର୍ମନିର୍ବାହୀ ପରିଷଦର ସଦସ୍ୟ ଭାବେ ଓ ୧୯୭୮ରେ ଜାତୀୟ ସାକ୍ଷରତା ମିଶନ୍ ପ୍ରତିଷ୍ଠିତ ହେଲାପରେ ଏଥିସହିତ ଜଡ଼ିତ ହୋଇଛନ୍ତି । ସେ ୟୁନିସେଫ୍, ଡାନିଡା, ଅଙ୍ଗନବାଡ଼ି ଶିକ୍ଷଣକେନ୍ଦ୍ର, ଜନଶିକ୍ଷା ସାଧନକେନ୍ଦ୍ର, ରାଜ୍ୟ ଶିକ୍ଷା ଗବେଷଣା ପରିଷଦ, ଜ୍ଞାନବିଜ୍ଞାନ ସମିତି, ରାଜ୍ୟ ଗ୍ରାମ୍ୟ ଉନ୍ନୟନ ପ୍ରଶିକ୍ଷଣ ପ୍ରତିଷ୍ଠାନ ଓ ଏସ.ସି.ଇ.ଆର.ଟି. ପ୍ରଭୃତି ବହୁ ଅନୁଷ୍ଠାନର କାର୍ଯ୍ୟକ୍ରମ ସହିତ ଓତଃପ୍ରୋତ ଭାବେ ସମ୍ପୃକ୍ତ ଥିଲେ । ଅଖିଳ ଭାରତ ପ୍ରାକ୍‌ବିଦ୍ୟାଳୟ ଶିକ୍ଷା ସଂସ୍ଥାର ଓଡ଼ିଶା ଶାଖାର ସେ ଥିଲେ ଆବାହକ-ପ୍ରତିଷ୍ଠାତା । ଏହି ଅନୁଷ୍ଠାନ ପ୍ରାକ୍-ବିଦ୍ୟାଳୟ ଶ୍ରେଣୀର ପିଲାମାନଙ୍କ ପାଇଁ ଗୀତବହି, ଗପବହି, ନାଟକ ବହିମାନ ପ୍ରକାଶ କରିଛି । କଣ୍ଢେଇ ତିଆରି, ଗୀତି-ଅଭିନୟ ଖେଳ ଓ କଣ୍ଢେଇନାଚ ପ୍ରଭୃତି ମାଧ୍ୟମରେ ସରଳ କୋମଳମତି ୪ବର୍ଷରୁ କମ୍ ବୟସର ପିଲାଙ୍କୁ ଅଣଆନୁଷ୍ଠାନିକ ଶିକ୍ଷାଦାନର ବିଭିନ୍ନ ଉପାୟ ସେ ସାଧି ଯାଇଛନ୍ତି । ସେ ତାଙ୍କଘରେ ଗୋଟିଏ ଛୋଟ ମ୍ୟୁଜିୟମ୍ ରଖିଛନ୍ତି, ଯେଉଁଥିରେ ପଠନ ସାମଗ୍ରୀ, ଖେଳ ସରଞ୍ଜାମ, କଣ୍ଢେଇ, ଗୀତ, ବିଭିନ୍ନ ବାଦ୍ୟ ପ୍ରଭୃତି ରଖାଯାଇଛି ।

ଆମ୍ଭେମାନେ ତାଙ୍କୁ ଶୁଣି, ଦେଖି, କାଥାବାର୍ତ୍ତାକରି ପ୍ରଭାବିତ ହୋଇଛୁ, ତାଙ୍କୁ ଭଲପାଇଛୁ, ସମ୍ମାନ କରିଛୁ । ସେ ବୟସାଧିକ୍ୟ ସତ୍ତ୍ୱେ ମଧୁର ସ୍ୱରରେ ଅଭିନୟ କରି ଗୀତଗାଇ, ପାଦପକାଇ, ହାତର ମୁଦ୍ରା ଦେଖାଇ ଯେଉଁଭଳି ଶିକ୍ଷାଦାନ କରନ୍ତି, ଦେଖିବାର କଥା । ତାଙ୍କର କଥାବାର୍ତ୍ତା ସ୍ନେହପୂର୍ଣ୍ଣ ଅଥଚ ପ୍ରାଞ୍ଜଳ, ଠୋସ୍ । କାହା ବିଷୟରେ ନକାରାତ୍ମକ କଥା ଶୁଣିବାକୁ ତାଙ୍କର ଆଗ୍ରହ ନଥାଏ । ମଣିଷ ଚିହ୍ନିବାରେ ସେ ପ୍ରାୟ ଭୁଲ୍‌କରି ନଥାନ୍ତି । କିନ୍ତୁ ପ୍ରାଗ୍‌ମାଟିକ୍ । ପରିଧାନ ସର୍ବଦା ଖଦଡ଼ । ଉଚ୍ଚ ରକ୍ତଚାପ ଓ ପରିଣତ ବୟସରେ ହାତଥରିବା ସତ୍ତ୍ୱେ ସେ କେବେହେଲେ କୌଣସି ଶିକ୍ଷାଦାନ କରୁଥିଲାବେଳେ କର୍ମଶାଳାରେ, ଆଲୋଚନା ମଣ୍ଡଳୀରେ, ପରାମର୍ଶଦାତା ବୈଠକରେ କିମ୍ବା ସଭାସମିତିରେ ତାଙ୍କର ବକ୍ତବ୍ୟ ଊଣା କରିନାହାଁନ୍ତି । ସେହି କାରଣରୁ ସେ ଥିଲେ ଅଜାତଶତ୍ରୁ । ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ ହୋଇଛନ୍ତି । ଆମେରିକୀୟ ଜୀବନୀ ପ୍ରତିଷ୍ଠାନ ତରଫରୁ ପ୍ରକାଶିତ ଜୀବନ ଚରିତରେ ଶିଶୁମାନଙ୍କର ତଥା ଶିକ୍ଷକମାନଙ୍କର ଶିକ୍ଷା ନିମିତ୍ତ ଅବଦାନ ପାଇଁ ତାଙ୍କର ନାମ ଲିପିବଦ୍ଧ ହୋଇଛି । ସେ ଭାରତୀୟ ପ୍ରୌଢ଼ଶିକ୍ଷା ସଂସ୍ଥା, ଭାରତୀୟ ପ୍ରାକ୍‌ବିଦ୍ୟାଳୟର ସଂସ୍ଥା, ଭାରତ ସ୍କାଉଟସ୍

ଓ ଗାଇଡସ୍, ଭାରତୀୟ ରେଡକ୍ରସ୍ ସମିତି, ଓଡ଼ିଶା ପରିବେଶ ସମିତି, ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ, ଉତ୍କଳ ସମ୍ମିଳନୀ, ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସମଣ୍ଡଳ ଟ୍ରଷ୍ଟ ବୋର୍ଡ଼ ସମେତ ବହୁ ଅନୁଷ୍ଠାନର ଆଜୀବନ ସଭ୍ୟ ଥିଲେ ।

ଗତ କୋଡ଼ିଏ ବର୍ଷରୁ ଅଧିକକାଳ ଧରି ଏହି ସମ୍ମାନାସ୍ପଦ ସହଜାତ ଶିକ୍ଷକଙ୍କ ଠାରେ ଗୋଟିଏ ସହଜ ବିନୟତ ଜ୍ଞାନ ତଥା ଭାରତୀୟ ଦର୍ଶନର ଅଙ୍ଗୀକରଣତା ଲକ୍ଷ୍ୟ କରିହୁଏ । ସେ ତାଙ୍କର ଅଗଣିତ କର୍ମୀ, ସମାଜସେବୀ, ପିଲାମାନଙ୍କୁ ଭଲପାଆନ୍ତି । ମୂଳରୁ ପିଲାମାନେ କିଭଳି ପାଠ୍‌ରେ ମନଦେବେ, ସେ ଦିଗରେ ଶିକ୍ଷା, ସ୍ୱାସ୍ଥ୍ୟ, ଗୋଷ୍ଠୀଉନ୍ନୟନ, ଶିଶୁ ବିକାଶ - ସ୍ୱେଚ୍ଛାସେବୀ ସମସ୍ତ ପଦାଧିକାରୀଙ୍କୁ ସୁଚିନ୍ତିତ ପରାମର୍ଶ ଓ ଦିଗ୍‌ଦର୍ଶନ ଦେଇ ଆସିଛନ୍ତି । ସବୁଥିରେ ତାଙ୍କର ସହଜ ନମନୀୟ ଗାନ୍ଧିବାଦୀ ଦୃଷ୍ଟିକୋଣ ଓ ନିରାଡ଼ମ୍ବର ଜୀବନଧାରା ପ୍ରତିଫଳିତ ହୋଇଥାଏ ।

ସେ ସଂଯତ ଖାଦ୍ୟପେୟରେ ଅଭ୍ୟସ୍ତ । ଚଳଣି ଓ ବ୍ୟବହାରରେ ମଧ୍ୟ । ତାଙ୍କ କର୍ତ୍ତବ୍ୟରେ ସେ ବେଶ୍ ନିଷ୍ଠାପର । ପଢ଼ଉ ପଢ଼ଉ କେତେବେଳେ ବେଲ୍ ବାଜିଲାଣି ଜାଣିପାରନ୍ତି ନାହିଁ । ପାଠପଢ଼ା ଚାଲିଥାଏ । ଶିକ୍ଷାନବିସମାନେ ତନ୍ମୟ ହୋଇ ଶୁଣୁଥାଆନ୍ତି ।

ହେ ସ୍ୱର୍ଗତ ପିତୃପ୍ରତିମ କର୍ତ୍ତବ୍ୟାନୁରାଗୀ ଶିକ୍ଷାସେବୀ ! ଆମର ଜଡ଼ତାଗ୍ରସ୍ତ ବିବେକ-ଚକ୍ଷୁକୁ ଆପଣଙ୍କ ସ୍ମୃତି ଉନ୍ମୀଳିତ କରୁଥାଉ ଉଜ୍ଜ୍ୱଳ ତାରକାପୁଞ୍ଜି ଭଳି । ଆମର ଆଳସ୍ୟ ନିଦ୍ରିତ କର୍ଣ୍ଣରେ ଆପଣଙ୍କର ବୈତାଳିଗାନ ସଂଜୀବିତ ହେଉଥାଉ । ଏକଦା ୱାର୍ଦ୍ଧାର ସେବାଗ୍ରାମ ତାଲିମକେନ୍ଦ୍ରରେ ଡକ୍ଟର ଜାକିର୍ ହୋସେନଙ୍କ ସହିତ ଭୂଇଁରେ ବସି ଭୋଜନକଲା ପୂର୍ବରୁ ଅଧକ୍ଷା ଆଶାଦେବୀ ନିର୍ଦ୍ଦେଶରେ ଆପଣ ଯେଉଁ ସଂସ୍କୃତ ଶ୍ଳୋକ ଗାଇଥିଲେ -

"ଅୟିତେ ରସନେ ପଦୀୟତେ
ଦଧି ଦୁଗ୍ଧଂ ଚ ଶୀତା ମୁହୁର୍ମୁହୁ
ମରଣାବସରେ ବଦିଷ୍ୟସି
କ୍ଷଣମିଦିବରଂ ଲୋଚନଂ ହରିଂ ।"

ଯାହାର ଅର୍ଥ ହେଲା ହେ ଜିହ୍ୱା ! ତୁମକୁ ସଦାସର୍ବଦା ମୁଁ ଦହି, ଦୁଧ, ଲହୁଣି ଭଳି ବହୁ ଉତ୍ତମ ଖାଦ୍ୟ ଖାଇବାକୁ ଦେଉଛି । ମୋର ପ୍ରାର୍ଥନା, ମୋର ମୃତ୍ୟୁ ସମୟରେ ତୁମେ ଅନ୍ତତଃ ଥରେ ମାତ୍ର ପଦ୍ମଲୋଚନ ହରିଙ୍କ ନାଁ ଉଚ୍ଚାରଣ କରି ମୋତେ ଧନ୍ୟ କରାଇବ ।



# ଇନ୍ଦୁବାବୁଙ୍କ ଶିକ୍ଷା ଆନ୍ଦୋଳନ

## ବିଜୟ ଉପାଧ୍ୟାୟ

ଇନ୍ଦୁବାବୁଙ୍କୁ ମୁଁ ଆଦୌ ଜାଣିନଥିଲି କହିଲେ ଚଳେ । ଯଦିଓ କେ.ଜି. ଶ୍ରେଣୀରେ 'ଗୀତଗଙ୍ଗୁଡ଼ି'ର ଗୀତ, ବିଶେଷକରି 'ଏଇ ତ ମୋର ମଥା' ଏବଂ 'ପାଣିରେ ବୁଡ଼, ଗଛରେ ଚଢ଼, ଆକାଶେ ଉଡ଼ - ଏକ୍, ଦୁଇ' ଆଦିକୁ ବ୍ୟବହାର କରିଛି । ପ୍ରଥମେ ମନ୍ମଥସାର୍ ଯେତେବେଳେ ତାଙ୍କ ଆତ୍ମଜୀବନୀ ଡାଇରୀ ମୋ ହାତକୁ ବଢ଼େଇ ତାଙ୍କ ଉପରେ କରିବାକୁ ଥିବା ବହି ବିଷୟରେ କହିଲେ, ମୁଁ ତା' ଉପରେ ବିଶେଷ ଗୁରୁତ୍ୱ ଦେଇ ନଥିଲି । କିନ୍ତୁ ଆତ୍ମଜୀବନୀ ଲିପିବଦ୍ଧ ଥିବା ଡାଏରୀ ଭିତରକୁ ଯେତେ ଯେତେ ପ୍ରବେଶ କଲି, ଇନ୍ଦୁବାବୁଙ୍କ ବହୁବିଧ ବ୍ୟକ୍ତିତ୍ୱ ବିଷୟରେ ଜାଣି ସେତେସେତେ ଚମତ୍କୃତ ହେବାକୁ ଲାଗିଲି । ଆହୁରି ଆଶ୍ଚର୍ଯ୍ୟ ହେଲି, ଯେତେବେଳେ ଜାଣିଲି ଯେ ସେ ହେଉଛନ୍ତି ବରପାଲି ପାଇଖାନାର ଅନ୍ୟତମ ଉଦ୍ଭାବକ ଏବଂ ଏହାର ନାମକରଣ ବରପାଲି ଗାଁର ନାମକୁ ନେଇ କରାଯାଇଛି ।

ତାଙ୍କ ଜୀବନୀକୁ ପଢ଼ିଲେ ବୁଝିହୁଏ ପ୍ରାକ୍ ଗୋଷ୍ଠୀଉନ୍ନୟନ ଯୋଜନା ସମୟର ଓଡ଼ିଶାକୁ । ବୁଝିହୁଏ ବ୍ୟାପକ ପରିମାଣରେ ଗଢ଼ି ଉଠିଥିବା ସରକାରୀ ପ୍ରାଇମେରୀ ସ୍କୁଲ ମଧ୍ୟକୁ କିପରି ଅମାନବିକ ବିଭାବ ସବୁ ଧୀରେଧୀରେ ପ୍ରବେଶ କରିଛି । ଯେପରିକି ଦୁର୍ନୀତି, ପ୍ରିୟାପ୍ରୀତି, ଶ୍ରମ ବିମୁଖତା, ସମାଜ ଅନୁପଯୋଗୀ ଟେକ୍ସଟ ଓ କରିକୁଲମ୍ ଇତ୍ୟାଦି । ଏଥିପାଇଁ ଯେ ଖାଲି ଶିକ୍ଷା ଅମଲାତନ୍ତ୍ର ଦାୟୀ ତା ନୁହଁ, ଏଥିପାଇଁ ଦାୟୀ ସର୍ବୋଚ୍ଚ ସରକାରୀ ସ୍ତରରେ ପ୍ରସ୍ତୁତ ହେଉଥିବା ଶିକ୍ଷା ପଲିସି ଏବଂ ରାଷ୍ଟ୍ରଦ୍ୱାରା ପ୍ରତ୍ୟକ୍ଷ ପରୋକ୍ଷ ଭାବରେ ପ୍ରଚାର ଓ ପ୍ରତିଷ୍ଠା କରାଯାଉଥିବା ଜୀବନାଦର୍ଶ । ଶିକ୍ଷା ମତାଦର୍ଶ ବା ଦର୍ଶନ କ୍ଷେତ୍ରରେ ଏଭଳି ଅବକ୍ଷୟ ଦେଖାଦେଇଛି ଯେ, ଜନସାଧାରଣଙ୍କ ଜୀବନ ଓ ଜୀବିକାଠାରୁ ତାହା ଏକବାରେ ବିଚ୍ଛିନ୍ନ । ଗୋଟିଏ ଶବ୍ଦରେ ତାହା ସାମାଜିକ ବାସ୍ତବତା ଠାରୁ ଅନେକ ଦୂରରେ । ସାମ୍ରାଜ୍ୟବାଦୀ ଋଣରେ ଚଳାଯାଉଥିବା ଡି.ପି.ଇ.ପି. ଏକ ହାସ୍ୟାସ୍ପଦ ତାମସା ଚଳାଇଛନ୍ତି ଗତ ୧୩ବର୍ଷ ଧରି, ଯାହାର ପ୍ରତିବାଦରେ ମୁଁ ଦଶବର୍ଷ ତଳେ ଲେଖିଥିଲି 'ଭୋକ ସଂସ୍କୃତିର ଇତିବୃତ୍ତ' । ସୃଜନଶୀଳତା ନାମରେ ସର୍ବଶିକ୍ଷା ନାମରେ ଏବଂ ସର୍ବୋପରି ଶିକ୍ଷକମାନଙ୍କୁ ୨୦ରୁ ଊର୍ଦ୍ଧ୍ୱ ଅଣଶିକ୍ଷା କାର୍ଯ୍ୟରେ ନିୟୋଜିତ କରି ସରକାରୀ

ପ୍ରାଥମିକ ଶିକ୍ଷା ବ୍ୟବସ୍ଥାକୁ ପ୍ରାୟ ନବେଭାଗ ହତ୍ୟାକରା ସରିଲାଣି । ଫଳରେ କର୍ପୋରେଟ୍‌ମାନଙ୍କ କବଳରେ ଥିବା ଘରୋଇ ଶିକ୍ଷାବ୍ୟବସ୍ଥା ଗାଁଗହଳରୁ ଆରମ୍ଭକରି ସହର ନଗର ପର୍ଯ୍ୟନ୍ତ ଚରିଆଡ଼େ ନିଜର ବିଜୟ ଢକ୍‌କା ବଜାଇ ଚଲିଲାଣି । ଗରିବ ଲୋକଙ୍କ ପିଲା, ଚଷୀ ମୂଲିଆ, ଦଳିତ ଆଦିବାସୀଙ୍କ ପିଲା ଆଉ ଭଲ ଶିକ୍ଷା ପାଇ ପାରିବେ - ଏ ସମ୍ଭାବନା ହିଁ ଲୋପ ପାଇଗଲାଣି । ଯେଉଁ ଲକ୍ଷଲକ୍ଷ ପ୍ରାଇମେରୀ ଶିକ୍ଷକ ସରକାରୀ ଚକିରିରେ ନିଯୋଜିତ, ସେମାନଙ୍କର ପିଲାମାନେ ପ୍ରାୟ ସମସ୍ତେ ଘରୋଇ ଇଂରାଜୀ ମିଡିୟମ୍ ସ୍କୁଲର ଆଶ୍ରିତ ।

ଏଇ ବ୍ୟବସ୍ଥାକୁ ବୁଝିବା ଦିଗରେ ଇନ୍ଦୁବାବୁଙ୍କ ଆତ୍ମଜୀବନୀ ଓ ଅନ୍ୟାନ୍ୟ ଲେଖା ଏକ କମ୍ପାସ୍ ବା ଦିଗ୍‌ଦର୍ଶକ ଭଳି କାମ ଦେଲା । ଇନ୍ଦୁବାବୁ ସକାରାତ୍ମକ ଭାବେ ପିଲାଙ୍କ ସୃଜନଶୀଳତାର ବିକାଶ ପାଇଁ ଯେଉଁ ଶିକ୍ଷାପଦ୍ଧତିର ପ୍ରୟୋଗ କରିଛନ୍ତି, ମୌଳିକଶିକ୍ଷା ସହ ଆଧୁନିକ ଶିକ୍ଷାପଦ୍ଧତିକୁ ସମନ୍ୱିତ କରି ତାର ଯେଉଁ ବିକାଶ ଘଟାଇଛନ୍ତି, ସେ ସଂପର୍କରେ ଏପର୍ଯ୍ୟନ୍ତ ମୁଁ ଅଜ୍ଞ ଥିଲି କେମିତି ?

ନାଟକ, ପାଲା ଓ ଦାସକାଠିଆ ମାଧ୍ୟମରେ ଶିକ୍ଷା ଓ ସ୍ୱାସ୍ଥ୍ୟ ଚେତନାର ବିକାଶପାଇଁ ଓ କୃଷିର ବିକାଶ ପାଇଁ ସେ ଅନେକ ବହି ଲେଖିଛନ୍ତି । ସେହିପରି ଗପ ଓ ଗୀତ କହିବା ଓ ଗାଇବାର ପଦ୍ଧତି ବତାଇ ଲେଖିଛନ୍ତି "ଆସରେ ପିଲେ ଶୁଣିବା ଗପ" ଓ "ଆସରେ ପିଲେ ଶୁଣିବା ଗୀତ" । ଓଡ଼ିଆ ରାଇମ୍ ପାଇଁ ଲେଖିଛନ୍ତି "ଗୀତଚଙ୍ଗୁଡ଼ି" । ଗୀତ ଲେଖିବାବେଳେ ସାଧାରଣ ଲୋକେ ପ୍ରୟୋଗ କରୁଥିବା ଭାଷାର ଆଶ୍ରୟ ନେଇଛନ୍ତି । କେତେବେଳେ ଭାଗବତ ଛନ୍ଦର ଆଶ୍ରୟ ନେଇଛନ୍ତି ତ କେବେ ପୁରାଣର ଛାନ୍ଦ । "ଶୁଣ ଶୁଣ ସଭାଜନେ ଦେଇ ମନ କର୍ଣ୍ଣ, ମଳରୁ କିପରି ରୋଗ ହୁଏ ଉତ୍ପନ୍ନ । ପଛବାଟେ ଯେଉଁ ମଳ ଦେଲୁ ଆମେ ଛାଡ଼ି, ଏ ଦେହକୁ କେମିତି ତାହା ଆସୁଅଛି ଚଲି ।" ଇତ୍ୟାଦିକୁ ଦାସକାଠିଆ ମାଧ୍ୟମରେ ନିଜେ ଗାଇ ସେ ପ୍ରଚର କରୁଥିଲେ ।

ସେହିପରି ଗରିବ ବିଦ୍ୟାଳୟରେ ଆଖପାଖରେ ଓ ହାତ ପାଆନ୍ତାରେ ଥିବା ଉପକରଣକୁ ନେଇ କିପରି ଶିକ୍ଷା ଦିଆଯାଇପାରେ, ସେଥିରେ ସେ ବହୁ ନୂଆନୂଆ ପଦ୍ଧତିର ଉଦ୍ଭାବନ ଓ ପ୍ରୟୋଗ କରିଛନ୍ତି । ଆମ ସରକାର ଆଜି ଟିକେଟିକେ କଥାରେ ପାଶ୍ଚାତ୍ୟ ଶିକ୍ଷୋପକରଣ ମୋହରେ ପଡ଼ି ବ୍ୟୟବହୁଳ କମ୍ପ୍ୟୁଟର ଓ ଇଣ୍ଟରନେଟ୍ ପ୍ରୟୋଗ ପାଇଁ ପ୍ରଚର ଓ ଅର୍ଥ ବିନିଯୋଗ କରୁଥିବାବେଳେ ସେ ଏହାର ଘୋର ବିରୋଧକରି ଗାଁ ଗହଳି ବିଶେଷକରି ବିଦ୍ୟୁତ୍ ସରବରାହ ନଥିବା ଅଞ୍ଚଳ ମାନଙ୍କରେ ଏସବୁ କିପରି ଅର୍ଥହୀନ ସେ କଥା ପ୍ରତିପାଦିତ କରିଛନ୍ତି । ଏପରିକି ବିଦ୍ୟୁତ୍ ସରବରାହ ଥିବା ସ୍କୁଲମାନଙ୍କରେ ଯେଉଁ ଶିକ୍ଷକମାନେ ପାଠ ପଢ଼ାଉଛନ୍ତି, ସେମାନେ ଏସବୁ ବ୍ୟବହାରରେ କେତେଦୂର ମାହିର୍ ? ସେହିପରି ୩ୟ ଶ୍ରେଣୀରୁ ଇଂରାଜୀ ଶିକ୍ଷାର ବ୍ୟବସ୍ଥା କରାଯାଇଥିଲେ ବି

ଯେଉଁ ଶିକ୍ଷକମାନେ ୧୫ କି ୨୦ ଗ୍ରେସ୍‌ମାର୍କ ପାଇ କିମ୍ବା କପିକରି ସାର୍ଟିଫିକେଟ୍ ପାଇଛନ୍ତି, ସେମାନେ କିଭଳି ଇଂରାଜୀ ପଢ଼ାଇ ପାରିବେ ? ଏଇସବୁ ପ୍ରଶ୍ନ ସେ ଉଠାଇଛନ୍ତି, ଦୀର୍ଘଦିନ ରାଜ୍ୟ ଶିକ୍ଷା ରିସୋର୍ସ ପାରସନ୍ ହିସାବରେ କାମକରିବା ଭିତରେ । ନିଜର ଦୃଢ଼ ମତାମତ ରଖିଛନ୍ତି, କିନ୍ତୁ ସରକାର ବାହାଦୁର ଏସବୁ ମତକୁ ଭ୍ରୂକ୍ଷେପ ନକରି ଏବଂ ଶିକ୍ଷକମାନଙ୍କ ଗୁଣାତ୍ମକ ଯୋଗ୍ୟତା ପ୍ରତି ଆଖିବୁଜି ଦେଇ ଯାହାକରି ଚାଲିଛନ୍ତି, ତାହା ପ୍ରାଥମିକ ସରକାରୀ ଶିକ୍ଷା ବ୍ୟବସ୍ଥାର ମୃତ୍ୟୁଘଣ୍ଟି ବଜାଇବା ବ୍ୟତୀତ ଆଉ କ'ଣ ହୋଇପାରେ ?

ଇନ୍ଦୁବାବୁ ଶିକ୍ଷାବିଭାଗରେ ସଂସ୍କାର ଆଣିବା ଦିଗରେ ଷାଠିଏବର୍ଷରୁ ଊର୍ଦ୍ଧ୍ୱ ସମୟକାଳ ନିଜର ଏକକ ପ୍ରୟୋଗ ଜାରି ରଖିଛନ୍ତି । ତାଙ୍କର ଏଇ ଏକକ ଶିକ୍ଷା-ସଂଗ୍ରାମକୁ ଏକ ଆନ୍ଦୋଳନରେ ପରିଣତ କରିବା ପାଇଁ ସରକାରୀ ଚାକିରିରୁ ଅବସର ନେବାପରେ ସେ ବିଭିନ୍ନ ବେସରକାରୀ ସଂଗଠନର ସାହାଯ୍ୟ ନେଇଛନ୍ତି । ଶିକ୍ଷାପ୍ରତି ତାଙ୍କର ଯେଉଁ ହୋଲିଷ୍ଟିକ୍ ଏପ୍ରୋଚ୍ ବା ସାମଗ୍ରିକ ଦୃଷ୍ଟିକୋଣ ତାହା ସମାଜ-ବିଜ୍ଞାନ ଦୃଷ୍ଟିରୁ ଅତ୍ୟନ୍ତ ବାସ୍ତବ । ଯେଉଁ ରାଜ୍ୟରେ ଗରିବୀ ରେଖାତଳେ ଶତକଡ଼ା ଷାଠିଏରୁ ଊର୍ଦ୍ଧ୍ୱ ଲୋକ ବାସ କରନ୍ତି, ଯେଉଁଠି ଚାଷୀ ଆତ୍ମହତ୍ୟା ଅବିରତ ଘଟି ଚାଲିଥାଏ, ଭିକ୍ଷା ଅର୍ଥନୀତି ଉପରେ ଯେଉଁ ଦେଶ ନିର୍ଭରଶୀଳ, ସେଠାରେ ଶିକ୍ଷା ଯଦି ସମାଜ ପରିବର୍ତ୍ତନର ଆଧାର ନହୋଇ କେବଳ କର୍ପୋରେଟ୍ ଦାସ ନିର୍ମାଣ କରିବାପାଇଁ ଉଦ୍ଦିଷ୍ଟ ହୁଏ, ସେଠାରେ ପରିବର୍ତ୍ତନ ଆସିବ କିପରି ? ଶିକ୍ଷା ସହ ଶ୍ରମ, ଚାଷବାସ, କୁଟୀରଶିଳ୍ପ, ସମାଜ ସଂସ୍କାର ଯଥା ମଦ୍ୟ ବିରୋଧୀ ଅଭିଯାନ, ସାକ୍ଷରତା ଅଭିଯାନ, କପି ବିରୋଧୀ ଅଭିଯାନ ବା ଅନ୍ଧବିଶ୍ୱାସ ନିର୍ମୂଳନ ଅଭିଯାନକୁ ଯୋଡ଼ା ନଯାଏ, ସେ ଶିକ୍ଷା ମାନବସମ୍ବଳକୁ ଉତ୍ପାଦନଶୀଳ ତଥା ସୃଜନଶୀଳ କରାଇବ କିପରି ? ସେଇଥିପାଇଁ ତ ଆମେ ଆଜି ବି ଜଣେ ବୈଜ୍ଞାନିକ, ସଚ୍ଚା ଇଂଜିନିୟର ବା ଆତ୍ମନିର୍ଭରଶୀଳ ଶିଳ୍ପପତି ସୃଷ୍ଟି କରିବାରେ ବିଫଳ ହେଉଛୁ ।

ସବାଶେଷରେ ତାଙ୍କର ପଦେକଥା ଉଦ୍ଧାର କରି ମୋର ଏଇ ନିବନ୍ଧ ସାରିବି । ସେ ଲେଖିଛନ୍ତି "ନିଶାପାନକୁ ସରକାର ବାଧ୍ୟତାମୂଳକ କଲାପରି ଜଣାଯାଏ । ସରକାର ଭାବିଲେ ବାପା ମାଆମାନେ ମଦ୍ୟପାନ କଲେ ପଇସା ମିଳିବ ଏବଂ ସେଇ ପଇସାରେ ପିଲେ ପାଠପଢ଼ିବେ । ହେଲେ ଫଳ ହେଲା ଓଲଟା । ××× ସେମାନେ (ଗରିବ ଘରର ପିଲାମାନେ) ପରଘରେ ବେଠି ଖଟିଲେ, ଗାଈଗୋରୁ ଜଗିଲେ ଓ ଗଣ୍ଡେ ଖାଇବାକୁ ପାଇଲେ, ନହେଲେ ଭୋକ ଉପାସରେ କଷ୍ଟ ପାଇଲେ ।" ଏହାଠାରୁ ବଳି ବିଡ଼ମ୍ବନା ଆଉ କ'ଣ ଥାଇପାରେ ? ଶିକ୍ଷାପ୍ରତି ସାମଗ୍ରିକତାବୋଧର ଦୃଷ୍ଟିଭଂଗୀ ନ ଆସିବା ଯାଏ, ଶିକ୍ଷା କେବଳ ଧନୀକଶ୍ରେଣୀର ସେବା କରିବ ଓ ଗରିବଙ୍କ ଗରିବୀ ବଢ଼ାଇ ଚାଲିବ ।



# MY EXPERIENCE OF WORKING WITH INDU BABU

## Mrs. Inderjit Khurana

A puppet suddenly appears at the window as the teacher trainees sat quietly in the room waiting for the trainer to come in. "Namaskar Pilamane" Mo Na ta heuchi Indu Babu. Sing a song, said the puppet till I come into your room. That was Indu Babu's innovative way of a lively introduction.

A steam of memories flood through my mind's eye of my long association with Indu Babu for the last 26 years - 1978 to 2004. I met Indu Babu as he was fondly and informally addressed for the first time at a meeting of the Indian Association for Preschool Education, Orissa Branch held in Subhadra Mahatab High School. If I remember correctly this branch had just been inaugurated. All the members were luminaries in the field of education in Orissa - some of them like Prof. Satrughna Nath and Indu Bhusan Mishra were at the national level too. The energetic Mrs. Sanjukta Choudhuri was its first elected Secretary.

Indu Babu in his early sixties looked gently and benign with keen eyes with bushy eye brows, pouting lips and peaceful demeanor. He was always clad in a Khadi Kurta, dhoti and leather thong chappals influenced by Gandhiji. I would not be wrong if I say that he later revealed his true self as a study in contrast. His appearance belied the strength his convictions and he was uncompromising and aggressively vocal on issues related to education, religious belief, superstitions and social issues be it health, safe environment, women's empowerment, child labour, preschool education, balance diet, sanitation etc.

A great protagonist of hands on experience, constant repetition of messages to the people at large to the rural population in particular, he believed in using folk cultural practices as the best medium of dissemination. Hence protection from Malaria, balance diet for pregnant mothers, immunizatin, night blindness, potable water, sanitation were some of the issues on which he focused. These were set to "Sabara Sabarani Dance" and "Daskathia". Rural population of villages and migrants from villages living in the slums would relate well to this form of performing art.

Deeply interested in education right from preschol to adult literary he was very practial in his approach and had no patience with those who spouted high sounding theory alone. Trained in Gandhiji's basic method of Nai Talim he spoke repeatedly of promoting skill based and activity oriented education. A gifted performing artist himself, he could sing and dance (folk) to perfection. Naturally, therefore, he was impatient with mediocrity when teacher trainees could not pick up Dandia. steps to sing in rhythm. His voice was so melodious that Subodh Pattanayak of Natya Chetana paid him a great tribute by arranging to have his favourite songs recorded.

Where puppetry dance and music were other areas of his creative expression, he was also a prolific writer of stories and poems for children besides writing on many social issues. On the question of women's rights and empowerment he said as long as Sita, Radha, Droupadi were revered as role models the position of women would never improve for ultimately it was the man who decided what a women's role would be. Krishna's extra marital relationship, Ram's acceptance of rumours, Pandav's polyandry have been over looked by the powers that be. These remarks and opinions however did not mean that he was an atheist – he was only a questioner. He told me once that he never objected to or stopped his wife and family members from observing religious / cultural practices, but he did have discussions on these matters and would only ask of them to practise what they truly believe in and given to

superstitions, myths or mass hysteria. As for himself his scholarly pursued included the study of the Vedas, Upanisads, Ramayan, Mahabharats and Gita. He often quoted, drew parallels and made references from these exalted scriptures.

A fun loving person with a great sense of humour, he regaled us with many funny stories and episodes from his life as a teacher, his contacts with British S.I.s and D.I.s. One story he often repeated was about a Gore Saheb S. I. who sat down near a squatting child in the class room to ask him a question. The reason he explained later was "not to look down as child but to meet him eye to eye". His experiences and his learning from the Americans with whom he did the Barapali latrine project in Bargarh became the background of many of his interesting stories. So lasting was his relationship with them that thery continued to communicate with and visit him – their last visit being in 2003.

In 1998 – 99 the Ruchika Social Service Organisation was registered with Prof. Satrughna Nath as the president and Sri Indu Bhusan Mishra as the Vice-President. In 2001 Prof. Nath retired voluntarily due to deteriorating health and Indu Babu took over as President. Many meetings there after were held in his house, where Mrs. Mishra graciously hosted keeping the favourite foods of every member in mind. In this context I must say that Mrs. Mishra looked after him as one would look after a child, coaxing him to drink water, eat and take rest.

I must also admit that besides Ruchika he was sought after by many NGOs – there was a stream of people by his door everyday seeking his advice. He physically visited as many organizations as he could, to analyze their work and worth before he endorsed. Government departments of Child Welfare and Education also invited him to many important planning on decision – making meetings. At the same time he was also indispensable to his family – all family meetings being held in his house. Ungrudgingly giving his time, opining and advising to any one who came to him or called.

Knowing Indu Babu for 27 years was wonderful for he shared his learning and his experiences with me and taught me much that I have put into practice in the school and the social service. A unique personality the likes of whom is difficult to find.

Quick at repartee he unhesitatingly criticized the government's inability to improve governance, schools and other services. He openly expressed his anguish at the other services. He openly expressed his anguish at the conditions prevailing in the state especially with regard to poverty alleviation and education.

There was no training where Indu Babu would improvise games and other IEC materials specially designed for certain concept. A cooperative game for the construction and use of toilet, balance diet with cut outs, which stuck on to his kurta.



# INDUBHUSAN MISHRA
## Dwight Platt

When I first came to India in 1954 to work with the American Friends Service Committee, I was fresh out of graduate school. I was assigned to work in Barpali Village Service in Orissa. Indu became my closest coworker in the education department of this project. He was also my friend and teacher who helped me learn the ways of Indian villages and who taught me much about educational strategies. Although I was a "youngster" with no experience in education in India, my ideas were seriously considered by Indu even though he had much more experience having worked in the Gandhian movement and in the government education department. Although I left Barapali in 1957, my contact with Indu continued for almost fifty years,

As I think back over these past years, many images of Indu flow through my memory. Indu was committed to basic education, the integrated education of the whole child. In basic education children learn to work with hands as well as with mind. Whenever he visited a school, Indu always asked to see the school garden and was very enthusiastic in his praise of those students who had raised good vegetables.

Indu was a very creative person with strong interest and ability in music, dance and drama. He was able to use this creativity in composing songs and dramas to further educational goals in village development and in schools. Some of my clearest memories are of Indu singing traditional Indian songs with his daughter or with the village health workers and of his dramas on flies and mosquitoes as the carriers of disease written and performed in the style of traditional village drama.

Although he had strong ideas, Indu was very curious about new ideas and ways of doing things. He was open to new ways of working with teachers and village workers in order to make their educational efforts more effective but he was also culturally sensitive and with his knowledge of Oriyan village culture was able to adapt new ideas to the traditional setting. During the years I was at Barpali Village Service, we tried many things in the education department – posters, flannelgraph, educational movies, filmstrips and slide sets, educational songs and dramas, a village newsletter Janiba Katha, teachers' workshop, and a paikana campaign in Ainthapali come to mind. I had suggested some of these but Indu was the one who was able to adapt them to village culture.

Many evenings Indu and I would take the small generator and the motion picture projector to one of the villages in Barpali Thana. I can still hear Indu interpreting in Oriya educational films that had a sound track in another language. He was an excellent communicator with village people but he could also communicate well with more educated teachers or government officials. He was very impatient with bureaucratic excesses but he was effective at working within the system and making it work. We drank many cups of tea in government offices as we worked on our business with government, but Indu was just as comfortable sharing tea in a mud house in the village.

Indu could be very pessimistic when discussing the situation in the world, in India, in Orissa or in the Barpali project. He spoke very frankly about problems and I came away from some of these discussions wondering if the situation was hopeless. But Indu was never cynical or apathetic. He continued to work as though all problems could be solved. And he became very enthusiastic about persons and projects which were contributing to real solutions, like the railroad platform schools in Bhubaneswar established by Mrs. Khurana.

Indu and his family were a very important part of the marriage celebration when Lavonne and I were married at Barpali and our two families have remained close. Whenever

we visited India later, Indu's home was always open and he was ready to assist in any way that he could. He helped me obtain a one-year appointment in the postgraduate Department of Biological Sciences at Sambalpur University in 1970-71. During that year, our family had many good times with Indu and his family. He was very helpful when I organized a one-month student trip to India in the 1980s and worked closely with the students when we were in coastal Orissa. He was also helpful when I came to India to restudy frogs around Barapali in the 1990s. I will never forget the birthday party he gave me in 1993.

I have many cherished memories of Indu. These are memories that continue to inspire me and I am sure that similar memories have inspired many others. Indubhai was a very special person.



# INDUBHUSAN AND KAMLA - THE CONNECTION

## Kamala Platt

My life was inextricably connected to Indubhusan and Kamala Mishra's from birth. When I was named after Kamala, my parents told me as a child that they chose Kamala's name because as a newly married couple in Barpali they had felt that Indu and Kamala's children were just the kind of children they would want themselves. So when our family journeyed back to Orissa and were planning our first trip to Cuttack to visit the Misras, I was prepared to meet an exemplary family. Our first visit made apparent that not only was this an exemplary family, but that my family was an accepted part of it, related by sprit that was as strong as blood. I immediately felt at home in their home, and I admired the stucco walls, the courtyard garden, the indoor outdoor openness of urban tropical architecture and landscape. But most memorable was the way I felt valued as a child, growing and learning – the generosity of time and experience that Indu and his family shared with us seemed planned to include and even focus on my brother Richard and me. During the first visit, I remember sitting on caned chairs, and listening to Indu talking with us; I held onto every word as I felt encouraged to follow the adult conversation, keen to learn from the experiences of elders. Perhaps this sense I had was a side effect of Indu's lifelong work in administering education.

I remember vivid images from our many visits to the Misras, trips made by bus from Sambbalpur to Cuttack, as highlights of our time in India. In the fall, I remember going out for the Durga puja, riding in a bicycle rickshaw with Kamala

and my mother, learning Hindu traditions and trying out my newly acquired Oriya vocabulary from beetaray, from inside a rickshaw cab moving through the crowded, warm night streets of Cuttack I remember traveling to the jungles in coastal Orissa of Cuttack I remember travelling to the jungles in coastal Orissa to see the tiger that had jumped into captivity to join its mate. I remember drinking cool coconut milk after walking about the ancient carved structures of the Konarak Temple I remember going to Bhubaneswar a city with an ancient and holy history, where we were escorted insides the temples and invited to share in a meal of holy food. And then there was Puri, where we braved the tide under the tutelage of a guide, at a meal with more courses than I'd ever had at one time before, and shopped for Orissa artisan work to send to the U.S. In puri, we were taken to neighboring rooftop, where we could see into a large temple courtyard with a walled-in perimeter that my non-Hindu family could not enter. And I remember special times in the Mishra compound – celebrating Nandita's birth day with rice flour designs, oil lamps and song that went beyond voice as knew it. Learning cooking tips in Kamala's kitchen, and tasting the results of her culinary expertise, most especially her gur cakes. I remember gifts that became keepsakes, still worn on special occasions, silver filigree and forest green dress with embroidered tucks. I remember learning about the city's architecture, paintings and sculptures and functions with dance and music and garlands. I remember lying in our bedroom reading National Geographic magazines that Indu had provided Richard and me. My concept of myself, who I was and who I could become was laid wide in our visits to Indu and Kamala's.

As I write down these memories, at first straining to connect to long past moments, then sitting through the rush of images to express just the right rif of thoughts, I am amazed at how many of my values, passions, theorizing, creative impulses and 'druthers' as an adult in her 4 decade trace back not just to out year in India, but to the Misras. When I think about my understanding of rejecting white privilege as it was termed in

the university and grassroots organizing discussions, I realize that perhaps an early conceptualization of refusing came with my parents' description of Indu Mishra and other Brahmins who had in symbolism and daily practice rejected the privilege that came with the Brahmin thread. I learned by example how economic and educational privilege can be put to service of learning, one learned oneself the foundations of my Socratic pedagogy, thus begun.

I saw that Indu had clear opinions, but encouraged those around him to critique, envision and act for themselves as well. My favorable impressions extended to how Indu related to Kamalka and to their extended circle of family and friends. I remember hearing that when my mother was back in India travelling with Bela Banerjee. Bela and Kamala were discussing a piece of land where they were hoping to build a clinic and other places of service for people in the villages and urban communities; I gather that there was support all around, but the project was to be developed under the women's vision and leadership. Perhaps it was the model of the parents, and their practice of mutual respect and encouragement that produced the children by whom my parents had been so impressed before my birth.

I remember that for Indu, the way other people were treated was of supreme importance. This was not just a value he applied to government or to other people but an active, guiding principle in his own interactions with others.



# Our Inspiratoin OurJejebapa

-1-

Sri Indubhusan Mishra to all, but Jejebapa to me. Jejebapa was a teacher not only by profession, but also by nature. I still remember those days when we all youngsters used to learn English from him; It was really great fun. Today I can proudly say that if I am able to write and speak good English then the credit of that goes to Jejebapa. His contribution to the society was immense and was also very well appreciated. His views and his writings on adult education, hygiene, carry a lot of weight even today. His way of conveying these messages through songs were a very noble method that was easy to understand and also very entertaining. I remember when we were kids we used to drew pictures for him that would carry these messages to the society. It was really great fun in interacting with him. The arguments the discussions we had not only entertained us but also developed our knowledge and hence developing us become responsible citizens of this nation.

Another thing which I really enjoyed was watching cricket with him; We used to have a lot of discussions during matches especially if the match was between India and Pakistan but that was the charm of watching a match with him and today I really miss him during a match.

Some say I have traits of my grandfather in me and that's the best compliment I can get from any body because I feel proud when anybody called me as the grandson of Shri Indubhasan Mishra. And I pray to God that I will consider myself a successful human being if I can be a little bit like my

grandfather, a selfless and a self-made man. He was truly my first teacher, truly a grand father not only to me but to this nation. If the Mahatma was called 'bapu' then he was truly the 'Jejebapa' of this nation according to me, who crossed the boundaries of this nation and the boundaries of heart to be what he was.

Truly my jejebapa will always be my inspiration.

***Ansuman Mishra (Bitu)***



-2-

Although my interaction with Jejebapa was for a short time, I found him as a charming, nice and a broad minded person. While interacting with him I found out how he was very concerned about women's education and his encouragement and participation in the said field was very well appreciated. The way he introduced me to all relatives and friends as saying 'She is M.Sc. in Microbiology', made me feel very proud. It's very difficult to express how I felt when I showed him my PG certificate, and he reackd with immensel encouragement.

Even though we were so far away from him at Nagpur, still he was always concerned for us. Whenever we used to call he would enquire about everything from our health to what we had eaten and everything and this made us feel very secure.

One thing that I found about Jejebapa which makes me really proud was how popular he was. Whenever I met somebody and told about Jejebapa I would find out that they already knew about him. I really consider myself blessed and honoured to be a part of his family. I always pray to God that may his soul rest in peace and he shower his choicest blessings on us.

***Krishna Misra***



# Memories of Indubhusan Mishra and his family

## Lavonne Platt

Even before I went to India for the first time in May 1956, I felt as though I was somewhat acquainted with Indu Misra and his family because Dwight mentioned them often in his letters to me, as he and Indu worked together in the BVS Education program.

When Dwight and I begin to plan our wedding soon after my arrival at BVS Indu took us to a goldsmith to have our rings made, and he worked with his daughters and other little girls at the project to teach them songs and dances they performed at our reception - our "Indian wedding" Kamala Misra and Bela and other women at the projects also planned and carried out the other parts of that day festivities, including the enormous feast at the end.

Indu also helped me make arrangements with Raikishori Devi (the NES Lady Education Officer) to work together with women and girls in the village of Satlama on day and evening each week.

After the Misras left BVS, Dwight and I continued our friendship with them, and when we returned to Sambalpur District where Dwight taught at the newly founded Sambalpur University at Burla (an appointment Indu helped to arrange), our family visited several times with the Misra family at their home in Cuttack and went on trips with them to historic sites in Orissa. We enjoyed getting to know Monju and Bibhu as young adults and they were still living at home. Our children especially had fun with Nandita, who was staying with kamala and Indu and attending school. We also visited with Suni and her family

in northern Orissa and with Meena and her family in the mining town where G.N. was working in Madhya Pradesh.

Richard, who was only eight years old during the year we lived in Sambalpur, recently told us some of his memories of being with the Misra family. One memory was of riding a full-size bicycle- which he accomplished by putting one leg under the bar that led from the seat to the handlebars in order to reach the pedal on the other side. He also had memories of going to the Konark temple with the Misras and of Indu purchasing green coconuts with the tops slashed off for us to drink the fresh juice. Although many of his memories of that year were some what vague until we mentioned specific events, he knew that the Misra family and our family were close friends and he was saddened to learn about Indubhai's death last year.

When I spent a couple of months with Bela in preparation for writing her biography, she and I stayed with Kamala and Indu at their home in Bhubaneswar several times in our travels, and I tape-recorded several of our conversations for later use in the book. I also enjoyed being with Bibhu and Meenu and their small boys who were living with Indu and Kamala at the time.

When I spent a couple of months in India during 1994, while Dwight was doing research on frogs in Barapali, it was a wonderful opportunity for me to renew acquaintances with Kamala and Indu and their children, and to learn to know most of their grandchildren, now young adults, Although Indu was officially retired then, he still had many interests in education at all levels. He had recently written a literacy book for women to learn to read and write in Oriya. He took me to meet a small publisher, who had formed a company, Mayur Publication, where I made some purchases and sold them copies of Bela's biography.

He was interested in the work of and Open Learning School, which was a combination of pre-school for normal children, as well as a special school for handicapped children, of all ages, including young adults. We attended a "function" at

the Open Learning School. Indu also took us to meet Mrs. Khurana who had developed the "Railroad School" to teach children who lived at the railroad station.

On the flight I took from Bhubaneswar to Delhi, I wrote in my journal :

"I've had such a good time with Kamala and Indu and Sonju and her children, Ma-ma-Jhum, and Deblu; as well as earlier with Bibhu and Meenu and their boys, Raja and Bitu; and Meena and G.N. and their son Gyanesh and daughter Tukun and granddaughter Malika; and also Sumi and her husband and their son Baltu; and Monju's son, Sita.

"I really feel close to all the Misra family, but especially to Kamala who is one of my closest friends (as I believe Indu is to Dwight) and over longer period of time them almost anyone else I have ever known. I'am glad I could be with them all again, but especially to be with Kamala once again and to remember Bela with her. It has been important to me, and, I think to her, too.



# ରଘୁନାଥ ପୂଜାରିଙ୍କ ସହ ଏକ ସାକ୍ଷାତ୍କାର

## ଉପସ୍ଥାପନା : ବିଜୟ ଉପାଧ୍ୟାୟ

ପ୍ର : ଆପଣ କିପରି ଭାବେ ଇନ୍ଦୁବାବୁଙ୍କ ସହ ସଂପୃକ୍ତ ହେଲେ ?

ଉ. ୧୯୫୨ରୁ ୫୭ ପର୍ଯ୍ୟନ୍ତ ଇନ୍ଦୁବାବୁ ବରପାଲି ଆମେରିକାନ୍ ଫ୍ରେଣ୍ଡସ୍ ସାର୍ଭିସ୍‌ରେ କାମ କରୁଥିବା ସମୟରେ ବାପା ୰ଭାଗୀରଥି ପୂଜାରି, ଯେ କି ଜଣେ ସ୍ୱନାମଧନ୍ୟ ଶିକ୍ଷକ ଓ ଓଡ଼ିଶା ସାହିତ୍ୟ ଏକାଡେମୀର ତାମ୍ରଫଳକ ପାଇଥିଲେ, ସେ ତାଙ୍କର ପିଲାମାନଙ୍କୁ ଶିକ୍ଷାଦାନ କରୁଥିଲେ । ସେଇଥିପାଇଁ ଆମମାନଙ୍କ ମଧ୍ୟରେ ପାରିବାରିକ ସମ୍ବନ୍ଧ ଥିଲା । ସେ ଆମକୁ ପୁତ୍ରବତ୍ ସ୍ନେହ କରୁଥିଲେ । ତାପରେ ସେ ଟ୍ରାନ୍‌ସଫର ହେବାରୁ ସଂପର୍କରେ ଶିଥିଳତା ଆସିଗଲା । ତେବେ ଡକ୍ଟର ରାଲ୍‌ଫ୍ ଭିକ୍ଟରଙ୍କୁ ତଥା ତାଙ୍କ ପରିବାରର ପିଲାମାନଙ୍କୁ ମୁଁ ଓଡ଼ିଆ ଶିଖାଉଥିଲି । ସେ ମଧ୍ୟ କ୍ୱାକାର୍ ସୋସାଇଟିର ଅନ୍ୟତମ ମୁଖ୍ୟରୂପେ ବରପାଲିରେ କାମ କରୁଥିଲେ । ସେଇ ରାଲ୍‌ଫ୍ ଭିକ୍ଟରଙ୍କୁ ମୁଁ ଡକ୍ଟର ମାୟାଧର ମାନସିଂଙ୍କ ସହିତ ପରିଚିତ କରାଇଥିଲି । ସେ ସଂପର୍କ ଏତେ ଘନିଷ୍ଠ ହୋଇଗଲା ଯେ, ଏବେ ମଧ୍ୟ ଭିକ୍ଟରଙ୍କ ଝିଅ ଆସିଲେ ମାନସିଂହ ପରିବାରର ଅତିଥି ହୁଅନ୍ତି । ମୁଁ ଆଇ.ଏସ୍.ସି. ପଢ଼ିବାବେଳେ ଡିଫେନ୍ସରେ ଅର୍ଥାତ୍ ବିମାନବାହିନୀରେ ଯୋଗଦେଲି । ପରବର୍ତ୍ତୀ ସମୟରେ ବିଜୁ ପଟ୍ଟନାୟକଙ୍କର କଳିଙ୍ଗ ଟିଉବ୍‌ସ୍‌ରେ ଇଣ୍ଟେଲିଜେନ୍‌ସ ଅଫିସର ହିସାବରେ ଯୋଗଦେଇଥିଲି । ୩୨ବର୍ଷ ବୟସରେ ସେ ଚାକିରି ଛାଡ଼ି ବି.ଏ.ବି.ଇଡି ସମ୍ବଲପୁର ଠାରେ ଶେଷକରି ଚନ୍ଦ୍ରଶେଖର ବେହେରା ଜିଲ୍ଲାସ୍କୁଲରେ ଶିକ୍ଷକତା କଲି । ସେଇ ସମୟରେ ଇଂରାଜୀରେ ଡିପ୍ଲୋମା କଲି । ଇ.ଏଲ୍.ଟି.ଆଇ.ରେ ସେଇଠି ମୁଁ ଇନ୍ଦୁବାବୁଙ୍କ ବାପୁଜୀନଗର ସ୍ଥିତ ଘରେ ତିନିମାସ ଯାକ ରହିଥିଲି । ଇ.ଏଲ୍.ଟି.ଆଇ.ର ଶିକ୍ଷକ ମନ୍ମଥ କୁଣ୍ଡୁଙ୍କ ସହ ସେହି ସମୟରେ ମୋର ପରିଚୟ ହୋଇଥିଲା । ମୁଁ ଇଂଲିଶ୍ ଲାଙ୍ଗୁଏଜ୍ ଡିପ୍ଲୋମା କଲାପରେ ସେଇ ମେଥଡ୍‌କୁ ଖୁବ୍ ଭଲପାଇ ବସିଲି ଏବଂ ଶିକ୍ଷାକ୍ଷେତ୍ରରେ ତାହାକୁ ବ୍ୟବହାର କରିବାକୁ ଲାଗିଲି ।

ପ୍ର. : ଆପଣ ଇନ୍ଦୁବାବୁଙ୍କ ଆତ୍ମଜୀବନୀ ଲେଖା କାମରେ କେବେ ଓ କିପରି ହାତଦେଲେ ?

ଉ. : ଇନ୍ଦୁବାବୁଙ୍କ ବୟସାଧିକ୍ୟ ହେତୁ ହାତ ଥରୁଥିବାରୁ ଏବଂ ସେ ଆତ୍ମଜୀବନୀ ଲେଖିବାକୁ ଆଗ୍ରହୀ ଥିବାରୁ ମୁଁ ତାଙ୍କ ସହାୟକ ରୂପେ ସାହାଯ୍ୟ କରିଥିଲି । ସେ ଡାକୁଥିବାବେଳେ ସବୁକଥା ଲେଖି ରଖୁଥିଲି । ମୋର ଅବସରପ୍ରାପ୍ତି ହେଲା ୧୯୯୪ରେ । ୧୯୯୫ ପାଖରୁ ମୁଁ ଭୁବନେଶ୍ୱର ଆସିବାମାତ୍ରେ ସେକାମ କରି ଆସୁଥିଲି । କୁଣ୍ଡୁବାବୁ ବିଭିନ୍ନ ସମୟରେ ଇ.ଏଲ୍.ଟି. ଆଇ.ର ବିଭିନ୍ନ ୱାର୍କସପ୍‌ରେ ଯୋଗଦେବାକୁ ମୋତେ ଭୁବନେଶ୍ୱର ଡାକୁଥିଲେ । ସେଇ ସୁଯୋଗରେ ମୁଁ ମଧ୍ୟ ଇନ୍ଦୁବାବୁଙ୍କ ଆତ୍ମଜୀବନୀ ଲେଖାରେ ସାହାଯ୍ୟ କରୁଥିଲି ।

ପ୍ର. : ଇନ୍ଦୁବାବୁ ଜଣେ ବହୁବିଧ ବ୍ୟକ୍ତିତ୍ୱ । ତାଙ୍କ ବ୍ୟକ୍ତିତ୍ୱର କେଉଁ କେଉଁ ଦିଗ ଆପଣଙ୍କୁ ଆକୃଷ୍ଟ କରିଥିଲା ଓ କାହିଁକି ?

ଉ. : ସେ ଥିଲେ ଜଣେ ଗାନ୍ଧିବାଦୀ, ସତ୍ୟବାଦୀ, ସ୍ପଷ୍ଟବାଦୀ ଓ ଅତିଥିପରାୟଣ ବ୍ୟକ୍ତି । ଦରିଦ୍ରନାରାୟଣ ସେବାରେ ତାଙ୍କର ଦିନ କଟୁଥିଲା । ସେ ମଧ୍ୟ ଥିଲେ ଜଣେ ସୁସାହିତ୍ୟିକ । ଜୀବନଯାପନ ଥିଲା ଅତି ସରଳ । ତାଙ୍କର ସବୁଠୁ ବଡ଼ ଗୁଣ ଥିଲା ଅତିଥିପରାୟଣତା । ତାଙ୍କ ଘରର ଜଣେ ସଦସ୍ୟ ରୂପେ ରହି ମୁଁ ଜୀବନରେ ବେଶ୍ କିଛିଦିନ କଟାଇଥିବାରୁ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ମୋର ପରିଚୟ ହୋଇପାରିଛି । ତାଙ୍କର ସ୍ତ୍ରୀ ମୋତେ ପୁତ୍ରବତ୍ ସ୍ନେହ କରୁଥିଲେ । ପୁଅ ଝିଅମାନେ ମଧ୍ୟ ନିଜର ଭାଇ ଭଳି ମୋତେ ଭାବି ଆସୁଥିଲେ । ଶିକ୍ଷକ ଓ ଶିକ୍ଷାବିତ୍ ରୂପେ ମଧ୍ୟ ଇନ୍ଦୁବାବୁ ବହୁ ବୈପ୍ଳବିକ ପଦକ୍ଷେପ ନେଇଥିଲେ । ଆଉ ମଧ୍ୟ ସେ ଥିଲେ ଜଣେ ନାଟ୍ୟପ୍ରେମୀ । ଶିକ୍ଷା ବିଭାଗ ଏବଂ ବ୍ୟବସ୍ଥାରୁ ସବୁପ୍ରକାର ଦୁର୍ନୀତି ନିବାରଣ ମଧ୍ୟ ଥିଲା ତାଙ୍କ ଜୀବନର ଧ୍ୟେୟ । ସବୁକ୍ଷେତ୍ରରେ ସବୁପ୍ରକାର ପ୍ରଶାସନିକ ଦୁର୍ନୀତିର ସେ ପର୍ଦ୍ଦାଫାସ୍ କରୁଥିଲେ । ଏଥିପାଇଁ ସବୁ ମହଲରେ ସେ ଜନପ୍ରିୟତା ଅର୍ଜନ କରିଥିଲେ । ତାଙ୍କ ଉପର ଅଫିସରମାନେ କ୍ଷୁବ୍ଧ ହୋଇ କେବେକେବେ ତାଙ୍କ ଉପରେ କାର୍ଯ୍ୟାନୁଷ୍ଠାନ ନେଇଥିଲେ । ତଥାପି ସେ ଥିଲେ ଏକାନ୍ତ ନିର୍ଭୀକ ।

ପ୍ର. : ଇନ୍ଦୁବାବୁଙ୍କର ମୃତ୍ୟୁପରେ କେଉଁକଥା ପାଇଁ ତାଙ୍କୁ ଓଡ଼ିଶାବାସୀ ମନେ ରଖିବେ ? କେଉଁକଥା ସବୁଠାରୁ ଜାଜ୍ୱଲ୍ୟମାନ ?

ଉ. : ସେ ମୌଳିକ ଶିକ୍ଷାକ୍ଷେତ୍ରରେ ଆଣିଥିବା ଯୁଗାନ୍ତକାରୀ ପରିବର୍ତ୍ତନ ପାଇଁ ସ୍ମରଣୀୟ । ତେବେ ସରକାର ସେସବୁ ପ୍ରାପ୍ତିକୁ ଆଜି କେଉଁଠି ନେଇ ପହଞ୍ଚାଇଛନ୍ତି ? ଆଜି ମୌଳିକ ଶିକ୍ଷାର ଅବସ୍ଥା କ'ଣ ? କେଉଁଠି ପହଞ୍ଚିଛି ଆମର ପ୍ରାଥମିକ ଶିକ୍ଷା ?

ପ୍ର. : ତାଙ୍କ ଜୀବନର ଶେଷସମୟ କେଉଁ ଅଞ୍ଚଳରେ ଅତିବାହିତ କରିଛନ୍ତି ?

ଉ. : ତାଙ୍କ ଜୀବନର ଶେଷସମୟ ସେ ବରପାଲିରେ ବିତାଇଛନ୍ତି । ବିଶେଷକରି ସେଠାରେ ଜନସେବା କରିଛନ୍ତି । ସ୍ୱାସ୍ଥ୍ୟସେବାରେ ସେ ଏବଂ ତାଙ୍କ ସ୍ତ୍ରୀ ଏହି ବ୍ଲକ୍‌ରେ ଗାଁଗହଳିରେ ଘୂରିବୂଲିଛନ୍ତି । ବରପାଲି ପାଇଖାନା ଉଦ୍ଭାବନରେ ଏବଂ ସଂପ୍ରସାରଣରେ ଡୁଇଟ୍ ପ୍ଲାଟ୍‌ଙ୍କ ସହ ସେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଇଛନ୍ତି । ଓଡ଼ିଶାରେ ଯେପର୍ଯ୍ୟନ୍ତ ବରପାଲି ପାଇଖାନାର ପ୍ରଚଳନ ଥିବ, ଇନ୍ଦୁବାବୁ ସମସ୍ତଙ୍କ ସ୍ମରଣକୁ ଆସୁଥିବେ ।

ପ୍ର. : ଇନ୍ଦୁବାବୁଙ୍କ ପରିବାରର ସ୍ଥିତି ଏବେ କ'ଣ ?

ଉ. : ତାଙ୍କର ଜଣେ ପୁଅ । ଚାରିଟି ଝିଅ । ପୁଅର ନାମ ବିଭୂତି । ସେ ଥିଲା ମାଇନିଂ କର୍ପୋରେସନ୍‌ର ଲିଆସନ୍ ଅଫିସର୍ । ଦିଲ୍ଲୀ ଚାକିରିରୁ ଅବସର ନେଇ ସେ ଏବେ ଭୁବନେଶ୍ୱରର ଉତ୍କଳସମ୍ମିଳନୀ ଭୁବନେଶ୍ୱର ଶାଖାର ସଂପାଦକ ଅଛନ୍ତି । ଦୁଇଝିଅଙ୍କ ସ୍ୱାମୀମାନେ ଇହଧାମ ତ୍ୟାଗ କରିଛନ୍ତି । ବାକି ଦୁଇଜଣଙ୍କ ଅବସରପ୍ରାପ୍ତ ଇଂଜିନିଅର । ଇନ୍ଦୁବାବୁଙ୍କ ସ୍ମୃତିରକ୍ଷା ପାଇଁ ପରିବାରର ସମସ୍ତେ ଚେଷ୍ଟିତ । ତାଙ୍କର ଜଣେ ନାତୁଣିଜ୍ୱାଇଁ ଅସିତ୍ ତ୍ରିପାଠୀ, ଆଇ.ଏ.ଏସ୍. ପାଇ ଏବେ ଦିଲ୍ଲୀଠାରେ ଅବସ୍ଥାପିତ । ବିଭୂତିର ପୁଅମାନେ ଏମ୍.ବି.ଏ.କରି ଜଣେ ଲଣ୍ଡନରେ ଓ ଅନ୍ୟଜଣେ ଭୋପାଳରେ ଅବସ୍ଥାପିତ ।



# ଇନ୍ଦୁଭୂଷଣ ମିଶ୍ରଙ୍କ ଜୀବନ ଓ ଶିକ୍ଷାଦର୍ଶନ

## (ସରକାରଙ୍କୁ କିଛି ପ୍ରସ୍ତାବ)

### ଜୀବନ-ଦର୍ଶନ

**ଜୀବନର Motto :** ଜୀବନର ଶେଷପର୍ଯ୍ୟାୟରେ ଇନ୍ଦୁସାର୍ ବେଶ୍ କିଛି ଲେଖାଲେଖି କରି ନିଜ ଜଣାଶୁଣା ଲୋକମାନଙ୍କ ମଧ୍ୟରେ ବାଣ୍ଟୁଥିଲେ । ସେସବୁ ଲେଖାର ମୂଳ ଉଦ୍ଦେଶ୍ୟ ଥିଲା ସମାଜ ଏବଂ ଶିକ୍ଷା କ୍ଷେତ୍ରରେ ପରିବର୍ତ୍ତନ ଆଣିବା । ସିମିତି କିଛି ଲେଖା ମୋତେ ସେ ଦେଇଥିଲେ । ତାଙ୍କର କେତୋଟି ଲେଖାର ଶେଷରେ ସେ ତାଙ୍କ ଜୀବନର ଋରୋଟି motto କଣ ତାହା ଲେଖିଥିଲେ । ସେଇ ଋରୋଟି mottoରେ ଥିଲା ତାଙ୍କ ଜୀବନ-ଦର୍ଶନ ।

**ପ୍ରଥମ mottoଟି ଥିଲା :** "If you take recourse to truth, no prayer is necessary." ସେ ସତ କହୁଥିଲେ । ମନ୍ଦିର ଯାଉନଥିଲେ । ସେ ଥିଲେ ସତ୍ୟବାଦୀ ଓ ହେତୁବାଦୀ । ହେତୁବାଦୀ ଠାରୁ ବେଶି ଥିଲେ ସତ୍ୟବାଦୀ ଏବଂ ସ୍ପଷ୍ଟବାଦୀ । ତାଙ୍କ ଜୀବନରେ ଏସବୁର ଉଦାହରଣ ଅନେକ । ସେ ମନ୍ଦିର ଯାଉ ନଥିଲେ କି ପୂଜାପାଠ କରୁନଥିଲେ । କାରଣ, ସତ କହୁଥିଲେ ପୂଜାପାଠ ବା ପ୍ରାର୍ଥନାର ଆବଶ୍ୟକ ନଥାଏ ।

**ତାଙ୍କ ଜୀବନର ଦ୍ୱିତୀୟ motto ଥିଲା :** "Plain living, high thinking" ଯାହା ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ତାଙ୍କ ବେଶଭୂଷା, ଜୀବନଶୈଳୀରୁ ଆରମ୍ଭକରି ମୌଳିକଶିକ୍ଷାର ଆଦର୍ଶ ପର୍ଯ୍ୟନ୍ତ ମିତବ୍ୟୟିତା ଏବଂ ଅଳ୍ପ ଖର୍ଚ୍ଚରେ ବେଶି ଫଳାଫଳ ଥିଲା ତାଙ୍କ ଜୀବନର ମନ୍ତ୍ର । ଏଇ mottoଟିର ପାଖାପାଖି ଥିଲା ତାଙ୍କ ଜୀବନର ତୃତୀୟ mottoଟି । ତାହାଥିଲା "Look at the people below you on the ladder." ତାଙ୍କ ଜୀବନର ଶେଷ mottoଟି ଥିଲା :

"If you cannot shine like a star
Be a little candle and brighten the corner,
Where you are.
Brighten the corner where you are."

*ପ୍ରକୃତରେ ସେ ଥିଲେ ଜଣେ ଉଜ୍ଜ୍ୱଳ ତାରକା । ମାତ୍ର ତାଙ୍କର extreme sense of huminity ଦୃଷ୍ଟିରୁ ନିଜକୁ ଛୋଟ ଦୀପ ବୋଲି କହୁଥିଲେ ।*

## ଇନ୍ଦୁସାର୍‌ଙ୍କ ନିଜଲେଖା-୧

ଇନ୍ଦୁସାର୍‌ଙ୍କ ଜୀବନ ଦର୍ଶନର ପ୍ରତିଫଳନ ଅଛି ତାଙ୍କର ଲେଖା 'ଅତୀତର ସ୍ମୃତିଚାରଣରେ' । ଲେଖାଟି କେବେ ଲେଖିଛନ୍ତି - ଆତ୍ମଜୀବନୀ ଡକାଇବାର ପରେ କି ପୂର୍ବରୁ କି ମଝିରେ ତାହା ଠିକ୍ ଜଣାପଡ଼େ ନାହିଁ । ବୋଧହୁଏ ଲେଖିଛନ୍ତି ଆତ୍ମଜୀବନୀ ଡକାଇବାର ବେଶ୍ କିଛିଦିନ ପରେ । ତାଙ୍କ ଜୀବନର ଅନେକ କଥା ମନେପଡ଼ିଛି, ଯାହା ସେ ଜୀବନୀ ଡକାଇଲାବେଳେ କହିନଥିଲେ । ସେଇଥିପାଇଁ ସେ ନାମକରଣ କରିଛନ୍ତି 'ଅତୀତର ସ୍ମୃତିଚାରଣ' ! ଏଥିରେ ସେ ଯାହାକିଛି ମନେ ପକାଇଛନ୍ତି, ସେସବୁ ତାଙ୍କ ଜୀବନୀରେ ପ୍ରାୟତଃ ନାହିଁ । ବେଶ୍ ପଛେ ସ୍ମୃତିଚାରଣ କରିଥିବା ହେତୁ ସେଇକଥା ଗୁଡ଼ିକ ମନେପଡ଼ିଛି, ଯେଉଁଥିରେ ପ୍ରତିଫଳିତ ହୋଇଛି ତାଙ୍କ ଜୀବନଦର୍ଶନ । ଜୀବନଦର୍ଶନ ସହ ମେଳତାଳ ଥିବା ଅତୀତ ଘଟଣାଗୁଡ଼ିକୁ ସେ ମନେ ପକାଇଛନ୍ତି । ବିଷୟଟିରେ ବେଶ୍‌କିଛି ଅଂଶ ବେଲାଦିଦିଙ୍କ ସମ୍ବନ୍ଧରେ ଏବଂ ବେଲାଦିଦିଙ୍କ ସଂପର୍କିତ ଆମେରିକାର କ୍ଲାକର ପରିବାରର ସଦସ୍ୟମାନଙ୍କ ସମ୍ବନ୍ଧରେ । ସବୁଗୁଡ଼ିକ ଘଟଣା ଓତପ୍ରୋତଃ ଭାବେ ଜଡ଼ିତ ତାଙ୍କ ଜୀବନଦର୍ଶନ ସହ । ତାଙ୍କ ସ୍ୱଲିଖିତ ଲେଖାଟି ତଳେ ଦିଆଗଲା -

## "ଅତୀତର ସ୍ମୃତିଚାରଣ"

୧୯୩୬ ମସିହା କଟକର ରେଭେନ୍‌ସା କଲେଜରେ ମୋର ପ୍ରଥମବର୍ଷ। ମୋର ଟନ୍‌ସିଲାଇଟିସ୍ ବଢ଼ିଥିବାରୁ ମଝିରେ ମଝିରେ ମଝିରେ ସର୍ଦ୍ଦି, କାଶ, ଜ୍ୱର ଇତ୍ୟାଦି ହୁଏ। ଦିନେ ମୁଁ କଟକସ୍ଥ ମେଡିକାଲ୍ ସ୍କୁଲର ତତ୍କାଳୀନ Principal Major O'Neil ସାହେବଙ୍କୁ ଭେଟିଲି ତାଙ୍କ ଅଫିସ୍‌ରେ। ସେ ମୋ ଟନ୍‌ସିଲାଇଟିସ ଦେଖି ସୁପରିନ୍‌ଟେଣ୍ଡେଣ୍ଟ ଡ.କାଶିନାଥ ମିଶ୍ରଙ୍କୁ ଡାକି ହସ୍‌ପିଟାଲରେ ତିନିଦିନ ଛାଡ଼ି ଅର୍ଥାତ ଡିସେମ୍ବର ୧୭ ତାରିଖଦିନ ମୋର ଟନିସିଲାଇଟିସ ଅପରେସନ କରିବାକୁ ସ୍ଥିରକଲେ। ସେଦିନ ଅପରେସନ ହେଲା ଏବଂ ମୋତେ ହସ୍‌ପିଟାଲରୁ ଦୁଇଦିନ ପରେ ଛାଡ଼ିଲେ। ଅପରେସନ ପରେ ମୁଁ ଠିକ୍ ହୋଇଗଲି ।

ସେ ବର୍ଷ ମୋର ରେଭେନ୍‌ସା କଲେଜରେ ତୃତୀୟବର୍ଷ । ଡ. ସଦାଶିବ ମିଶ୍ର ସେହିବର୍ଷ ଲେକଚର୍‌ର ହିସାବରେ କଲେଜରେ ଯୋଗଦେଇଥାନ୍ତି। ସେ ମହମ୍ମଦିଆ ବଜାରରେ ଗୋଟିଏ ଛୋଟିଆ ଘର ଭଡ଼ାନେଇ ଏକାକୀ ରହୁଥାନ୍ତି। ଥରେ ତାଙ୍କ ଦେହଖରାପ ହେବାରୁ ସେ Major O'Neilଙ୍କୁ ଡକାଇଲେ। ମୁଁ ତାଙ୍କୁ ଦେଖିବାକୁ ଯାଇଥାଏ। Major O'Neil ତାଙ୍କଗାଡ଼ିରେ ଆସି ସଦାଶିବବାବୁଙ୍କ ଘରେ ପହଞ୍ଚିଲେ ଏବଂ

ସଦାଶିବବାବୁଙ୍କୁ ପରୀକ୍ଷାକଲେ । ତାଙ୍କ ଗୋଡ଼ର ଫୋଟକାଗୁଡିକୁ କାଟିଲେ ଏବଂ ସ୍ପିରିଟ୍‌ରେ ସଫାକଲେ । କିଛି ଔଷଧଦେଲେ । ଯିବାକୁ ବାହାରିବାରୁ ସଦାଶିବବାବୁ ତାଙ୍କୁ ମାଣ୍ଡିତଳୁ ଷୋହଳଟି ଟଙ୍କା କାଢ଼ି ଯାଚିଲେ । Major O'Neil କହିଲେ, "No, No. I cannot accept any fees from you. You are a teacher in the Government" । ଏହା କହି ତାଙ୍କ ଗାଡ଼ିରେ ବସି ପଳେଇଲେ । ସେତେବେଳେ ସିଭିଲ୍ ସର୍ଜନ ଫିସ୍‌ଥିଲା ଷୋହଳ ଟଙ୍କା ।

ମୁଁ ସରକାରୀ କାର୍ଯ୍ୟରେ ଯୋଗଦେବା ପରେ ଗୋଟିଏ ମେଡିକାଲ୍ ସାର୍ଟିଫିକେଟ୍ ଆଣିବାପାଇଁ ବ୍ରହ୍ମପୁରର ତତ୍କାଳୀନ ସିଭିଲ୍ ସର୍ଜନ ବାଓଡ଼େନ ସାହେବଙ୍କ ନିକଟକୁ ଗଲି । ସେ ପରିଦର୍ଶନରେ ଥିବାରୁ ମୋତେ କିଛିସମୟ ଅପେକ୍ଷା କରିବାକୁ ପଡ଼ିଲା । ସେ ଆସିବା ମାତ୍ରକେ ମୋତେ ପରୀକ୍ଷା କରି ସାର୍ଟିଫିକେଟ୍‌ଟିଏ ଦେଲେ । ତାପରେ ମୁଁ ତାଙ୍କୁ ଫିସ୍ କେତେ ଦେବିବୋଲି ପଚାରିବାରୁ ସେ କହିଲେ, ମୁଁ ତମଠାରୁ ଫିସ୍ କାହିଁକି ନେବି ? ତାପରେ ହେଡ୍‌କ୍ଲର୍କଙ୍କୁ ପଚାରିବାରୁ ସେ କହିଲେ ଯେ, ସରକାରୀ ରିକ୍ୟୁଇଜିସନ ଆସିନଥିବାରୁ ସିଭିଲ୍ ସର୍ଜନ ଫିସ୍ ନେଇପାରନ୍ତି ଏବଂ ହେଡ୍‌କ୍ଲର୍କ ମୋଠାରୁ ମୋ ଦରମା ୫୦ଟଙ୍କା ଜାଣି ହିସାବକରି ଚାରିଟଙ୍କା ଆଠଅଣା ମୋତେ ଦେବାକୁ କହିଲେ । ମୁଁ ତାହା ସିଭିଲ୍ ସର୍ଜନଙ୍କୁ ଦେଇ ସାର୍ଟିଫିକେଟ୍‌ଟି ଧରି ଫେରିଲି ।

୧୯୫୭ ମସିହାର କଥା । ମୁଁ ସେତେବେଳେ ସମ୍ବଲପୁରରେ ଡି.ଏସ୍.ଇ.ଓ. ଥାଏ । ଜିଲ୍ଲା ଉନ୍ନୟନର ଜଣେ ସଭ୍ୟ ହିସାବରେ ଜିଲ୍ଲାପାଳଙ୍କ ଅଫିସ୍‌ରେ ସବୁ ମିଟିଂରେ ଯୋଗଦିଏ । ସମ୍ବଲପୁରର ତତ୍କାଳୀନ ଜଣେ ଓଡ଼ିଆ ସିଭିଲ୍ ସର୍ଜନ ମଧ୍ୟ ଯୋଗଦିଅନ୍ତି । ଅନେକ ସମୟରେ ମୁଁ ତାଙ୍କ ସଙ୍ଗରେ ଏକା ପାଖରେ ବସେ । ଗପସପ ହେଉ, ଚା' ପିଉ । ତାପରେ ବାଟରେଘାଟରେ ଡାକ୍ତରଖାନାରେ ମଧ୍ୟ ଦେଖାହୁଏ । ଖୁସିହାସିଆ କଥାବାର୍ତ୍ତା ମଧ୍ୟ ହୁଏ । ଦିନେ ମୋର ଗୋଟିଏ ମେଡିକାଲ ସାର୍ଟିଫିକେଟ୍ ଦରକାର ପଡ଼ିଲା । ତାଙ୍କ ପାଖକୁ ଗଲି । ସେ ମୋତେ ସାର୍ଟିଫିକେଟ୍‌ଟିଏ ଦେଲେ । ମୁଁ ୧୬ଟଙ୍କା ତାଙ୍କ ହାତକୁ ବଢ଼ାଇ ଦେବାରୁ ସେ ସଙ୍ଗେସଙ୍ଗେ ନେଇଗଲେ ।

ବରପାଲିରେ କାର୍ଯ୍ୟ କରୁଥିବା ସମୟରେ ଆମେରିକାନ୍ ଏବଂ ଅନ୍ୟାନ୍ୟ ବିଦେଶାଗତ ବନ୍ଧୁଙ୍କର କଠିନ ପରିଶ୍ରମ, ନିଷ୍ଠା, ଜୀବନର ଆଦର୍ଶ, ପ୍ରତିଜ୍ଞାବଦ୍ଧତା ଆଦି ଗୁଣଦ୍ୱାରା ମୁଁ ବହୁଳ ଭାବରେ ପ୍ରଭାବିତ ହୋଇଛି । ସେଠାରେ କର୍ମୀମାନଙ୍କ ଭିତରେ ବେଲା ବାନାର୍ଜୀ ବୋଲି ଜଣେ ଷ୍ଟାଫ୍‌ନର୍ସ ଥିଲେ । ସେ ଡାକ୍ତରମାନଙ୍କୁ କ୍ଲିନିକ୍‌ରେ ସାହାଯ୍ୟ କରିବାଛଡ଼ା ମହିଳା କର୍ମୀମାନଙ୍କୁ ସ୍ୱାସ୍ଥ୍ୟକର୍ମୀ ହିସାବରେ ପ୍ରସ୍ତୁତ କରିବାପାଇଁ ସକଳ ପ୍ରକାର ତାଲିମ ଦେଉଥିଲେ । ଅବଶ୍ୟ ଏଥିରେ ଡାକ୍ତର ଡାକ୍ତରାଣୀମାନେ ପ୍ରତ୍ୟକ୍ଷ ନିର୍ଦ୍ଦେଶନା ଦେଉଥିଲେ ।

ବେଲା ବାନାର୍ଜୀ ଗୋଟିଏ ଗରିବ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ। ସେ ଥିଲେ ତାଙ୍କ ବାପାଙ୍କର ତୃତୀୟ ଭାର୍ଯ୍ୟାଙ୍କର କନିଷ୍ଠାକନ୍ୟା । ବାପାଙ୍କର ମୃତ୍ୟୁଅନ୍ତେ ସେ ଏବଂ ତାଙ୍କର ମା' ଜଣେ ସାବତଭାଇ ଘରେ ଆଶ୍ରୟ ନେଇଥିଲେ। ରୂପରେ କାଳୀ, ସିଙ୍ଘାଣି ବହିଯାଉଛି। ବିଦ୍ୟାଳୟର ଦ୍ୱାର ରୁଦ୍ଧ । ଏହି ଅବସ୍ଥାରେ ସେ ଭାଇଘରେ କାମଦାମ କରି ଚଳୁଥିଲେ। ଚଉଦବର୍ଷ ବୟସରେ ନିରକ୍ଷରା ବେଲାର ଜୀବନରେ ପଟ୍ଟ ପରିବର୍ତ୍ତନ ଦେଖାଦେଲା । ସ୍ୱେଚ୍ଛାସେବୀ ଡାକ୍ତର ମୈତ୍ର ତାଙ୍କର ଜନସେବା କାର୍ଯ୍ୟରେ ବେଲାଙ୍କୁ ଗୋଟିଏ ଧାଇଭାବେ ନିଯୁକ୍ତି ଦେଲେ। ସେଠାରେ ଘରକାର୍ଯ୍ୟରେ ଦକ୍ଷତା ଓ ନିଷ୍ଠାଦେଖି .କେତେବର୍ଷ ପରେ ତାଙ୍କୁ ଗୋଟିଏ ବିଦେଶୀ ସ୍ୱେଚ୍ଛାସେବୀ ଅନୁଷ୍ଠାନରେ ନିଯୁକ୍ତି ଦେଲେ। କେତେବର୍ଷ ପରେ ନର୍ସିଟ୍ରେନିଂ ପାଇଁ ସେ ବିଲାତ ଓ ଫ୍ରାନ୍ସ ଆଦି ଦେଶକୁ ଗଲେ। ଏହିପରି ଭାବରେ ନିରକ୍ଷରା ବେଲା ବାନାର୍ଜୀଙ୍କର ପ୍ରତିଭା ବିକାଶଲାଭ କଲା ଏବଂ American Friends Service Committee ତାଙ୍କର ଯୋଗ୍ୟତା ଓ ସମାଜସେବାରେ ନିଷ୍ଠା ଜାଣିପାରି ତାଙ୍କୁ ବରପାଲି ଆଣିଲେ ।

ବେଲା ବରପାଲିରେ ଦଶବର୍ଷ କାର୍ଯ୍ୟ କରିସାରିଲା ପରେ କିଛିବର୍ଷ ମଧ୍ୟପ୍ରଦେଶର ହୋସାଙ୍ଗାବାଦ ଜିଲ୍ଲାର ରସୁଲିଆ ଠାରେ ଥିବା ବିଟ୍ରିଶ କୁଏକରମାନଙ୍କ ଗୋଟିଏ କେନ୍ଦ୍ରରେ କାମକଲେ। ତାପରେ ସେ କେରଳର ମିତ୍ର ନିକେତନରେ କାର୍ଯ୍ୟକଲେ। ମିତ୍ର ନିକେତନ ସେଠାକାର ଏକ ବଡ଼ସେବା ଅନୁଷ୍ଠାନ। ସେଠାରେ ଦଶବର୍ଷକାଳ ରହି ଲୋକପ୍ରିୟତା ଅର୍ଜନ କରିଥିଲେ। ସେଠାକାର ଡାଇରେକ୍ଟର ଓ କର୍ମୀମାନେ ତାଙ୍କୁ ଛାଡ଼ିବାପାଇଁ ଉହୁଁନଥିଲେ । କିନ୍ତୁ ଏତେକାଳ ରହିବାପରେ ଫେରିଆସିବାକୁ ତାଙ୍କ ମନ ହେବାରୁ ସେ ସେଠାରୁ ଫେରିଆସିଲେ ଏବଂ ଓଡ଼ିଶାରେ କିଛି କାମକରିବା ପାଇଁ ମୋର ପରାମର୍ଶ ଲୋଡ଼ିଲେ। ମୁଁ ତାଙ୍କୁ ରମ୍ଭାଦେବୀଙ୍କର ଜିମା କରାଇଦେଲି। ସେ ହରିଦାସପୁର ଡାକ୍ତରଖାନାରେ କିଛିଦିନ ରହିବା ପରେ ରମ୍ଭାଦେବୀ ତାଙ୍କୁ ମା' ରମାଦେବୀଙ୍କ ପାଖରେ ସମର୍ପଣ କରିଦେଲେ।

ତହୁଁ ବେଲାଦିଦି ସତ୍ୟଭାମାପୁରରେ ଗାନ୍ଧୀସ୍ମାରକ ନିଧି ଅନୁଷ୍ଠାନରେ ଅବସ୍ଥାପିତ ହେଲେ । ସେ ସେଠାରେ ପ୍ରଥମେ କ୍ଲିନିକ୍‌ରେ କାମ କଲେ । ସେ ସେଠାରେ ଥିବା ସକଳ କର୍ମୀ ଏବଂ ଅନାଥାଶ୍ରମର ବାଳିକାମାନଙ୍କୁ ଅନ୍ତରର ସହିତ ଭଲପାଉଥିଲେ ଏବଂ ନିଜର ସ୍ୱଳ୍ପ ଆୟରୁ ସେମାନଙ୍କୁ ଜିନିଷପତ୍ର ଆକାରରେ କିଛି ସାହାଯ୍ୟ କରୁଥିଲେ । ବେଲାଦିଦି ସେଠାରେ ତିନିବର୍ଷ କାଳ ପ୍ରତିନିଧି ହିସାବରେ କସ୍ତୁରବା ଟ୍ରଷ୍ଟର କାମ ମଧ ଚଳାଇଥିଲେ । ଆସ୍ତେଆସ୍ତେ ସ୍ୱାସ୍ଥ୍ୟହାନି ଘଟିବାରୁ ସେ କଲିକତା ଏବଂ କଟକରେ ଚିକିତ୍ସିତା ହେଲେ । କିନ୍ତୁ କିଛି ଫଳ ହେଲାନାହିଁ । ଡ.ଏଡୱିନ୍ ଏବଟ୍ ଏବଂ ଭିଭିଆନ୍ ଏବଟଙ୍କର ପ୍ରରୋଚନା ଏବଂ ପରାମର୍ଶରେ ସେ କାନାଡ଼ା ଗଲେ । ଯିବାର ଖର୍ଚ୍ଚ ଡାକ୍ତର

ଦମ୍ପତି ମଧ ଗ୍ରହଣ କଲେ । କାନାଡ଼ାରେ ଡ. ଏବଟ୍‌ଙ୍କ ଘରେ କିଛିଦିନ ରହି ଟିକିଏ ସୁସ୍ଥ ଅନୁଭବ କରିବାରୁ ସେ ଆମେରିକା ଭ୍ରମଣରେ ଗଲେ ଅନ୍ୟାନ୍ୟ ବନ୍ଧୁମାନଙ୍କୁ ସାକ୍ଷାତ କରିବାପାଇଁ ।

କିନ୍ତୁ ଆମେରିକାରେ ତାଙ୍କର ଦେହ ବହୁତ ଖରାପ ହେଲା। ତହୁଁ ଡ. ଡିଓ୍ୱିଟ୍ ପ୍ଲାଟ ଏବଂ ଶ୍ରୀମତୀ ଲାଭୋନେ ପ୍ଲାଟ ତାଙ୍କ ନିଜଘରେ ରଖି ବହୁତ ସେବାଶୁଶ୍ରୂଷା କଲେ। ତାପରେ ଦୁଇଟି ଡାକ୍ତରଖାନାରେ ରଖାଇ ମଧ୍ୟ ତାଙ୍କର ସେବାଶୁଶ୍ରୂଷାରେ ଲାଗିପଡ଼ିଲେ। ଖ୍ୟାତିପ୍ରାପ୍ତ ଡାକ୍ତରମାନଙ୍କୁ ମଧ୍ୟ ଦେଖାଇଲେ। ସେଥିରେ ସେ ଭଲ ନହେଲେ ମଧ୍ୟ ଟିକିଏ ସୁସ୍ଥ ଅନୁଭବ କରିବାରୁ ତାଙ୍କୁ ନେଇଆସି ନିଜଘରେ ରଖି ପ୍ଲାଟ୍‌ଦମ୍ପତି ବହୁତ ସେବାକଲେ ଏବଂ ତାଙ୍କର ସାଇପଡ଼ିଶା ଲୋକେ ମଧ୍ୟ ବେଲାଦିଦିଙ୍କର ସେବାଶୁଶ୍ରୂଷାରେ ଲାଗିପଡ଼ିଲେ। କଥାଥିଲା ଡ.ଶ୍ରୀମତୀ ଏବଟ କାନାଡ଼ାକୁ ଯାଇ ତାଙ୍କୁ ବିଲାତ ନହେଲେ ଭାରତର ପହଞ୍ଚାଇବାର ବନ୍ଦୋବସ୍ତ କରାଇବେ । କିନ୍ତୁ ତାହା ହେଲାନାହିଁ । ବେଲାଦିଦି ସମସ୍ତଙ୍କର ସେବା ସତ୍ତ୍ୱେ ସାତଆଠ ଦିନପରେ ଡ.ଡିଓ୍ୱିଟ୍ ପ୍ଲାଟଙ୍କ ଘରେ ଶେଷନିଶ୍ୱାସ ତ୍ୟାଗକଲେ।

ବେଲାଦିଦିଙ୍କର ମୃତ୍ୟୁର କେତେମାସ ପରେ ପ୍ଲାଟ୍‌ଦମ୍ପତି ଭାରତ ବୁଲିଆସି ଯଥାରୀତି ଆମଘରେ ପହଞ୍ଚିଲେ। ସେ ୬୨,୦୦୦ଟଙ୍କା ଆଣିଥିଲେ ବେଲାର ସ୍ମୃତିରକ୍ଷା ପାଇଁ । ଏହି ଅର୍ଥ ପ୍ଲାଟ୍ ଦମ୍ପତି ଏବଂ ତାଙ୍କର ବନ୍ଧୁମାନେ ବେଲାର ସ୍ମୃତି ଉଦ୍ଦେଶ୍ୟରେ ପ୍ରଦାନ କରିଥିଲେ। ମୋର ପରାମର୍ଶ ନେବାରୁ ମୁଁ ସେ ଅର୍ଥକୁ ସତ୍ୟଭାମାପୁର କସ୍ତୁରବାଗାନ୍ଧୀ ମେମୋରିଆଲ୍‌କୁ ଗୋଟିଏ ନିର୍ଦ୍ଦିଷ୍ଟ ସେବା ଉଦ୍ଦେଶ୍ୟରେ ଦାନ କରିବାକୁ ପରାମର୍ଶ ଦେଲି। ଏହାର କାରଣହେଲା, ବେଲାଦିଦି ସେଠାରେ ଚାରିବର୍ଷ କଟାଇଥିଲେ ଏବଂ ଜନସେବାରେ ଅତି ଲୋକପ୍ରିୟ ହୋଇ ପାରିଥିଲେ। ତଦନୁସାରେ ସେଇ ଅର୍ଥ ସେହି ଅନୁଷ୍ଠାନକୁ ପ୍ରଦାନ କରାଗଲା ଏବଂ ପରେ ଇଂଲଣ୍ଡ ଓ ତାଓ୍ୱାଇନ୍‌ରୁ ମଧ୍ୟ କେତେକ ମହିଳାବନ୍ଧୁ କିଛିକିଛି ଅର୍ଥ ବେଲାର ସ୍ମୃତି ଉଦ୍ଦେଶ୍ୟରେ ପ୍ରେରଣକଲେ। ବର୍ତ୍ତମାନ ସେ ସ୍ମୃତିପାଣ୍ଠିରେ ଏକ ଲକ୍ଷରୁ କିଛି ଅଧିକ ଟଙ୍କା ହୋଇଗଲାଣି। ଏହି ବେଲା ସ୍ମୃତିପାଣ୍ଠିର ସଦ୍‌ବ୍ୟବହାର ପାଇଁ ଗୋଟିଏ କମିଟି ଗଢ଼ାଯାଇଛି ଏବଂ ସାହାଯ୍ୟ ବିତରଣ ପାଇଁ ନୀତି ନିର୍ଦ୍ଧାରିତ ହୋଇଛି। ଏହି ଅର୍ଥରୁ ତିନିଜଣ ଗରିବ ଝିଅଙ୍କୁ ସାହାଯ୍ୟ ପ୍ରଦାନକରି ଇନ୍ଦୋରରେ ନର୍ସିଂଟ୍ରେନିଂ ଦେଇ କସ୍ତୁରବାଗାନ୍ଧୀ ଜାତୀୟଟ୍ରଷ୍ଟରେ ଚାକିରି ମିଳିଛି। ସତ୍ୟଭାମାପୁରର ଅନାଥାଶ୍ରମର ଝିଅମାନଙ୍କୁ ଏବଂ ଅନାଥା ମହିଳାମାନଙ୍କୁ ଥଇଥାନ କରିବା ହେଲା ଏହି ପାଣ୍ଠିର ଲକ୍ଷ୍ୟ।

ମୋର ସହକର୍ମୀ ଡ. ଡିଓ୍ୱିଟ୍ ପ୍ଲାଟ୍‌ଙ୍କ ଧର୍ମପତ୍ନୀ ଶ୍ରୀମତୀ ଲାଭୋନେ ପ୍ଲାଟ୍ ବେଲାଦିଦିଙ୍କର ଜୀବନୀ ଏବଂ ସମାଜସେବା କାର୍ଯ୍ୟଉପରେ ବହୁ ତଥ୍ୟ ସମ୍ବଳିତ ଖଣ୍ଡିଏ ବହି ଲେଖିଛନ୍ତି।

ଉପରୋକ୍ତ ଘଟଣାରୁ ଆମେ ହୃଦୟଙ୍ଗମ କରିବା ଉଚିତ୍ ଯେ, ଭଲମଣିଷଟିଏ ଦେଖିଲେ ତା'ର ଆଦର କରିବା ଏବଂ ତାର ମୃତ୍ୟୁପରେ ତାର ସ୍ମୃତିରକ୍ଷାର ବ୍ୟବସ୍ଥା କରିବାର ଗୁଣଗୁଡ଼ିକ ଆମେରିକା ଓ ପାଶ୍ଚାତ୍ୟଦେଶର ଲୋକମାନଙ୍କ ଭିତରେ ବହୁ ପରିମାଣରେ ଦେଖାଯାଏ। ଅମେ ତ୍ୟାଗର ନାଁ ଧରୁ । କିନ୍ତୁ ଅନ୍ୟକୁ ଶୋଷଣକରୁ ଏବଂ ପରୋପକାର ପାଇଁ ଦେହର ମଳି ଦେବାକୁ ମଧ୍ୟ ପ୍ରସ୍ତୁତ ନଥାଉ ।

ମୁଁ ବରପାଲିରେ ଥିଲାବେଳେ ଡ. ଆଲଷ୍ଟନ୍ ୱ୍ୱାରିଂ ଏବଂ ତାଙ୍କର ପତ୍ନୀ ବେଉଲା ୱ୍ୱାରିଂ ବୋଲି ଗୋଟିଏ ବୟସ୍କ ଦମ୍ପତ୍ତି ମଧ୍ୟ ସେଠାରେ କାମ କରୁଥିଲେ। ଆଲଷ୍ଟନ ୱ୍ୱାରିଂ ଜଣେ extension worker ହିସାବରେ ବହୁତ ଗୁଣର ଅଧିକାରୀ ଥିଲେ। ମୁଁ ତାଙ୍କଠାରୁ ବହୁତକଥା ଶିକ୍ଷା କରିଅଛି। ୱ୍ୱାରିଂଦମ୍ପତି ବର୍ଷେଖଣ୍ଡେ ରହି ତାଙ୍କ ଦେଶକୁ ଫେରିଗଲେ।

ଦଳେଇଘାଇ ବଢ଼ିକଥା ମୁଁ ଆଗରୁ ଲେଖିଛି। ୱ୍ୱାରିଂଦମ୍ପତି ଏବଂ ମୋ ମଧ୍ୟରେ ସାମୟିକ ଭାବରେ ପତ୍ରାଳାପ ହୁଏ। ମୁଁ ତାଙ୍କୁ ମୋର ଚିଠିରେ ଦଳେଇଘାଇର ଭୟାବହତା ସମ୍ବନ୍ଧରେ ଲେଖିଥିଲି ଏବଂ ଲେଖିଥିଲି ଯେ, ଆମର କେତେକ ଗ୍ରାମସାଥୀଙ୍କର ପରିବାର ମଧ୍ୟ କ୍ଷତିଗ୍ରସ୍ତ ହୋଇଛି । କିନ୍ତୁ ମୋର ପତ୍ରରେ ମୁଁ ତାଙ୍କଠାରୁ କୌଣସି ସାହାଯ୍ୟ ବା ଅର୍ଥ ଭିକ୍ଷା ଚାହିଁନଥିଲି। ମାତ୍ର ସେ ଆମ ଅନୁଷ୍ଠାନର ଡାଇରେକ୍ଟରଙ୍କ ପାଖକୁ ପ୍ରାୟ ପନ୍ଦରଶହ ଟଙ୍କା ପଠାଇ ଦେଇଥିଲେ। Director Miss Elinera Eton ମତେ ସେ ଟଙ୍କାତକ ଦେଇ ଆମର କ୍ଷତିଗ୍ରସ୍ତ ଗ୍ରାମବାସୀ ମାନଙ୍କୁ ବାଣ୍ଟି ଦେବାପାଇଁ କହିଲେ।

ଆଉଥରେ ମୁଁ କଟକରେ ସ୍କୁଲ ପରିଦର୍ଶକ ଥିଲାବେଳେ ୧୯୭୧ ମସିହାରେ କଟକ ଜିଲ୍ଲାରେ ଝଡ଼ତୋଫାନ ହୋଇ ବହୁତ କ୍ଷତି ଘଟିଥିଲା। ସେହିପରି ଯଥାରୀତି ଆଲଷ୍ଟନ ୱ୍ୱାରିଂଙ୍କ ପାଖକୁ ଚିଠିରେ ଝଡ଼ତୋଫାନ କଥା ମଧ୍ୟ ଟିକିଏ ଲେଖି ଦେଇଥିଲି। କିଛିଦିନ ପରେ ସେ ମୋତେ ୧୫୦୦ଟଙ୍କା ପଠାଇ ଦେଇଥିଲେ କୌଣସି ଗୋଟିଏ କ୍ଷତିଗ୍ରସ୍ତ ପ୍ରାଇମେରୀ ସ୍କୁଲକୁ ଦାନ କରିବାକୁ। ତାଙ୍କର ଚିଠିରେ ସେ ଲେଖିଥିଲେ ଯେ ତାଙ୍କର ଗୋଟିଏ ବହି ପ୍ରେସକୁ ଯିବାପୂର୍ବରୁ ସେ ଗୋଟିଏ ପଡ଼ୋଶୀ ବନ୍ଧୁଙ୍କୁ ଟାଇପ୍ କରିବାପାଇଁ ଦେଇଥିଲେ। ଟାଇପ୍ ସରିବାପରେ ସେ ବନ୍ଧୁଙ୍କୁ କିଛି ପଇସା ଯାଚିବାରୁ ସେ ତାହା ଗ୍ରହଣ କଲେନାହିଁ । ଆଲଷ୍ଟନ ୱ୍ୱାରିଂ ଲେଖିଥିଲେ ଯେ, ମୋ ଚିଠିଟି ଟେବୁଲ ଉପରେ ପଡ଼ିଥିବା ଦେଖି ସେଇ ଟଙ୍କାଟିକୁ ବାତ୍ୟାଗ୍ରସ୍ତ ଲୋକଙ୍କୁ ସାହାଯ୍ୟ କରିବାପାଇଁ ସେ ତତ୍କ୍ଷଣାତ୍ ସ୍ଥିରକଲେ। ଏଇ ଅର୍ଥରେ ଗୋଟିଏ ଆଲମାରି, ଦୁଇଟି ବାଲ୍‌ଟି, ଫାଉଡ଼ା, ଘଣ୍ଟା ଇତ୍ୟାଦି ଜିନିଷ ଇନ୍ଦୁପୁରରୁ କିଣି ଡଙ୍ଗାରେ ପାରିହୋଇ ଡି.ପି.ଆଇ.ଙ୍କୁ ସାଂଗରେ ନେଇ ସେଇ ଜିନିଷଗୁଡ଼ିକୁ ବରୀନଦୀର ଅପରପାର୍ଶ୍ୱସ୍ଥ ଗୋଟିଏ ପ୍ରାଇମେରୀ ସ୍କୁଲକୁ ଦାନ କରାଗଲା । ସେହି ଗାଁଲୋକମାନେ ସ୍କୁଲଘରଟିକୁ ଆଗରୁ ମରାମତି କରିଥିଲେ।

ଆଉ ଜଣେ ଆମେରିକାବାସୀ ମୋର ବନ୍ଧୁ ଡ.ରାଲଫ୍ ଭିକ୍ଟର ଏବଂ ତାଙ୍କର ଧର୍ମପତ୍ନୀ ପଲି ଭିକ୍ଟରଙ୍କ ଦାନକଥା କହିବା ଆଜକୁ ୩୦ବର୍ଷ ହେଲା ଏହି ଦମ୍ପତିଙ୍କର ଅର୍ଥ ଦାନରୁ ବହୁ ଗରିବ ମେଧାବୀ ଛାତ୍ରଛାତ୍ରୀ ଓଡ଼ିଶାର ପ୍ରାୟ କୋଡ଼ିଏଟି ହାଇସ୍କୁଲରେ ମାସିକ ସାହାଯ୍ୟପାଇ ଜୀବନରେ ବହୁ ଉନ୍ନତି କରିଛନ୍ତି। ଏପରି ଛାତ୍ରଛାତ୍ରୀଙ୍କର ସଂଖ୍ୟା ଆମେ କହି ନପାରିଲେ ମଧ୍ୟ ଶତଶତ ଛାତ୍ରଛାତ୍ରୀ ଡାକ୍ତର, ଇଞ୍ଜିନିୟର ଆଦି ହୋଇ ଦେଶବିଦେଶରେ କାର୍ଯ୍ୟରତ ଅଛନ୍ତି। ଗୋଟିଏ ନର୍ଦ୍ଦିଷ୍ଟ ପାଣ୍ଠିର ସୁଧରୁ ଏହି ସାହାଯ୍ୟ ପ୍ରଦାନ କରାଯାଉଛି। ଏଇ ପାଣ୍ଠିର ପରିଚାଳନା ଦାୟିତ୍ୱରେ ଡ.ସୂର୍ଯ୍ୟକାନ୍ତ ଦାସ ଅଛନ୍ତି।

ପାଶ୍ଚାତ୍ୟ ଦେଶର ଲୋକେ ବସ୍ତୁବାଦୀ ବୋଲି ଆମର ଦୃଢ଼ ଧାରଣା। କିନ୍ତୁ ସେମାନଙ୍କ ମଧ୍ୟରେ ଉପଯୁକ୍ତ କ୍ଷେତ୍ରରେ ସ୍ୱାର୍ଥତ୍ୟାଗ କରିବାର ପ୍ରବୃତ୍ତି ମନୁଷ୍ୟୋଚିତ ଭାବରେ ବଞ୍ଚିରହିଛି। ଯାହାକି ଆମର କର୍ଣ୍ଣ ଆଉ ବଳୀଙ୍କ ଦେଶରେ ଆମ ମଧ୍ୟରେ ଦେଖାଯିବା ଅତି ବିରଳ।

ସେମାନଙ୍କର ସ୍ୱାର୍ଥତ୍ୟାଗର ଏଇ ଉଦାହରଣମାନ ଦେଖି ମୁଁ ମୋ ଜୀବନରେ ଅବସରକାଳୀନ ପ୍ରାପ୍ତ ଅର୍ଥରୁ ପ୍ରାୟ ୨୬,୦୦୦ଟଙ୍କା ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏବଂ ଉନ୍ନତକାମୀ ବ୍ୟକ୍ତିମାନଙ୍କୁ ଦାନ କରିଅଛି। ଏବେ ମଧ୍ୟ ଉପଯୁକ୍ତ ପାତ୍ରରେ ଦାନକରିବାକୁ ମୁଁ ଏବଂ ମୋର ଦେଶବାସୀଙ୍କର ସର୍ବଦା କର୍ତ୍ତବ୍ୟ ବୋଲି ମନେକରୁଛି।

ମୁଁ କଟକରେ ଇନିସ୍‌ପେକ୍ଟର ଥିବା ସମୟରେ ଥରେ ଶିକ୍ଷାମନ୍ତ୍ରୀ ମୋତେ ଡକାଇ ଗୋଟିଏ ହାଇସ୍କୁଲରେ କାହିଁକି ଦୁଇଜଣ ଶିକ୍ଷକଙ୍କୁ Managing Committee ବାହାର କରିଦେଲା ବୋଲି ପଚାରିବାରୁ ମୁଁ କହିଲି "ଶିକ୍ଷକଙ୍କୁ ବାହାର କରିଦେବା ପାଇଁ Managing Committeeର ଅଧିକାର ରହିଛି। ଯାହାହେଉ ମୁଁ ତଦନ୍ତକରି ମୋର ରିପୋର୍ଟ ଏପିଲ୍ କମିଟିକୁ ଦେଇ ଦେଇଛି। ଆମେ ତ ପୁଣି ନିୟମ ଅନୁସାରେ ଚଳିବା ।" ସେଠୁ ମନ୍ତ୍ରୀ ମୋତେ କହିଲେ, "ଆପଣ ଖାଲି ନିୟମର ଚେପା ଛଡ଼ାଉଛନ୍ତି। କିଛି ପଦକ୍ଷେପ ନଉନାହାଁନ୍ତି।" ମୁଁ ସାଙ୍ଗେସାଙ୍ଗେ ତାଙ୍କୁ କହିଲି, "ଆପଣ ପଦକ୍ଷେପ ନେଲେଣି ? ରାଣୀହାଟ ହାଇସ୍କୁଲରୁ ଜଣେ ଶିକ୍ଷକଙ୍କୁ ଆଜକୁ ୧୭ବର୍ଷ ହେଲା କାଢ଼ି ଦିଆଯାଇଛି। Inspector, D.P.I. ମନ୍ତ୍ରୀ ଓ HighCourt କହିଲେ ଯେ, ଶିକ୍ଷକ ଜଣକ ସେ ସ୍କୁଲରେ ରହିବେ। ତାଙ୍କୁ କାଢ଼ି ଦିଆଯାଇ ପାରିବ ନାହିଁ। ଆପଣ ସେ ଶିକ୍ଷକଙ୍କୁ ରଖି ପାରିଲେଣି ?" ଦ୍ୱିତୀୟକଥା କହିଲି, "ଆପଣ Education Act କଲେ। Actର Rules କଲେଣି ? ଆପଣ decision ନେଉନାହାଁନ୍ତି ବୋଲି ମୋତେ କ'ଣ କହୁଛନ୍ତି ? ଆପଣ decision ନନେଲେ ସରକାରୀ କର୍ମଚାରୀମାନେ କାମ କରିବେ କେମିତି ?" ମନ୍ତ୍ରୀ ଚୁପ୍ ରହିଲେ। ମୁଁ ଏବଂ ମୋ ସାଥିରେ ଥିବା ଜଣେ ଇନିସ୍‌ପେକ୍ଟର ଆଉ ଜଣେ D.I. ସେଠାରୁ ଫେରିଆସିଲୁ ।

ଆଉଥରେ ଜଣେ ଶିକ୍ଷାମନ୍ତ୍ରୀ ନିଜ ଦାୟିତ୍ୱରେ ଗୋଟିଏ ହାଇସ୍କୁଲକୁ ଅଷ୍ଟମଶ୍ରେଣୀର ମଞ୍ଜୁରି ଦେଇଦେଲେ। ସେତେବେଳକୁ ସେଇ ଅବସ୍ଥାରେ ଥିବା ଅନେକଗୁଡ଼ିଏ ହାଇସ୍କୁଲକୁ ଇନିସ୍ପେକ୍ଟରମାନେ ମଞ୍ଜୁରି ଦେଇ ନଥିଲେ। ସୁତରାଂ ବୋର୍ଡ଼ର ନଷ୍ଟଭିକୁ ଉଲ୍ଲଙ୍ଘନକରି ମନ୍ତ୍ରୀଙ୍କର ଏଇ ଆଦେଶ ଅଗଣତାନ୍ତ୍ରିକ ଏବଂ ଗର୍ହିତ ବୋଲି ମୁଁ ମନ୍ତ୍ରୀଙ୍କୁ ପରେ ବୁଝାଇଲି ଏବଂ ଏହା ସରକାରଙ୍କର impropriety ବୋଲି ତାଙ୍କୁ କହିବାରୁ ସେ କହିଲେ, "ପାର୍ଟିର pressureରେ ମୁଁ ଏହା କରିବାରୁ ବାଧ୍ୟହେଲି।"

ମିସ୍ ମେୟେ ବୋଲି ଜଣେ ପାଶ୍ଚାତ୍ୟ ମହିଳା "Mother India" ବୋଲି ଖଣ୍ଡେ ବହି ବୋଧହୁଏ ୧୯୨୮ ମସିହାରେ ଲେଖିଥିଲେ। ସେଥିରେ ସେ ଆମଦେଶର ଚାଲିଚଲଣ ଓ ସଂସ୍କୃତି ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନାକରି ଭାରତବର୍ଷକୁ ଗୋଟିଏ ନରକର ରୂପରେଖ ଦେଇଥିଲେ। ତାଙ୍କ ବହିରେ ସେ ଗଙ୍ଗାରେ କନ୍ୟାସନ୍ତାନ ବିସର୍ଜନ, ବାଲ୍ୟବିବାହ, ନରବଳି, ପଶୁବଳି, ଗୁଣିଗାରେଡ଼ି, ଯନ୍ତ୍ରମନ୍ତ୍ର ଓ ପୂଜାପୂଜି ଦ୍ୱାରା ରୋଗ ଛଡ଼ାଇବା, ଗାଈଗୋରୁ, ମାଙ୍କଡ଼, ସାପ ମୂଷା ଇତ୍ୟାଦିଙ୍କୁ ପୂଜାକରିବା, ନାରୀ ନିର୍ଯାତନା, ଗାଈଗୋରୁ, ଛେଳି ମେଣ୍ଢାମାନଙ୍କୁ ବିଚରଣ କରିବା ପାଇଁ ସ୍ୱାଧୀନତା ଦେବା ଓ ରାସ୍ତାଘାଟରେ ଯଥେଚ୍ଛା ପୁରୀଷ ତ୍ୟାଗ ଇତ୍ୟାଦି ବିଷୟରେ ଲେଖଥିଲେ। ମହାତ୍ମାଗାନ୍ଧୀ ସେ ବହିଖଣ୍ଡିକ ପଢ଼ି ତାଙ୍କୁ ଜଣେ ମ୍ୟୁନିସିପାଲଟି Drain Inspector ବୋଲି ଆଖ୍ୟା ଦେଇଥିଲେ। ମୁଁ ଭାବୁଛି ମହାତ୍ମାଗାନ୍ଧୀଙ୍କ ଏପରି କହିବା ଗାଲୁ ଭୁରୁଡ଼ି ଓ ଅଯୌକ୍ତିକ। ମିସ୍ ମେୟୋ ଯାହା କହିଥିଲେ, ତାହା ଏବେ ମଧ୍ୟ ଆମ ସମାଜରେ ପ୍ରଚଳିତ । ଏବେ ମଧ୍ୟ ଆମେ ତାଙ୍କରି ବର୍ଣ୍ଣିତ ଭାରତବର୍ଷରେ ବାସକରି ରହିଅଛୁ। ନାରୀମାନଙ୍କୁ ନାନାଭାବରେ ନିର୍ଯାତନା କରି ହତ୍ୟାକରିବା ଗୋଟିଏ ଦୈନନ୍ଦିନ ଘଟଣା ହୋଇଗଲାଣି। ଲୋକେ ଗଙ୍ଗାକୁ ନଯାଇ ଗର୍ଭସ୍ଥ ଶିଶୁକନ୍ୟାକୁ ହତ୍ୟା କରିବାରେ ଲାଗିଲେଣି । କାରଣ କନ୍ୟାସନ୍ତାନକୁ ପାଳିପୋଷି ପାଠପଢ଼େଇ ମଣିଷକରି ବିବାହଦେବା ବର୍ତ୍ତମାନ ସମାଜରେ ଅତି ଦୁରୂହ ବ୍ୟାପାର। ସାପ, ମାଙ୍କଡ଼ ଇତ୍ୟାଦି ଏବେବି ପୂଜା ପାଉଛନ୍ତି। ମୂଷାମାନେ ଏ ଦେଶରେ ଯେତିକି ବର୍ଷକୁ ଖାଆନ୍ତି ଏବଂ ନଷ୍ଟକରନ୍ତି ତାହା ଓଡ଼ିଶାର ବର୍ଷକର ଖାଦ୍ୟ। ଆଖଣ୍ଡଳମଣିଙ୍କ ଠାରେ ଅଧିଆପଡ଼ି କୁଷ୍ଠ ଓ କର୍କଟରୋଗ ଆଦି ଭଲ ହୋଇଯାଉଛନ୍ତି ବୋଲି ସରକାର ଟି.ଭି.ରେ ପ୍ରଚାର କରୁଛନ୍ତି। ନରବଳି, ପଶୁବଳି ଏବେ ମଧ୍ୟ ଚାଲିଛି। ଏବେ ମଧ୍ୟ ଆମ ଦେଶରେ ଲୋକେ ଯତ୍ର କୁତ୍ରାପି ପୁରୀଷୋତ୍ସର୍ଗ କରି ଭାରତୀୟ ସଂସ୍କୃତିକୁ ରକ୍ଷା କରୁଛନ୍ତି। ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ସହରରେ ମଧ୍ୟ ଦୁଇଥର ଲୋକେ ମହାସମାରୋହରେ ବିଷଧର ସର୍ପର ପୂଜା କରିବାର ଆମେ ଦେଖିଅଛୁ। ସୁତରାଂ ବର୍ତ୍ତମାନ ଆମ୍ଭେମାନେ ମିସ୍ ମେୟୋଙ୍କର Mother Indiaରେ ବାସ କରୁଅଛୁ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ।

ସ୍ୱାଧୀନତାପରେ ଆମେମାନେ ଗଣତନ୍ତ୍ରର ଅର୍ଥ ନବୁଝି ଗଣତନ୍ତ୍ର ଶାସନକୁ ଲମ୍ଫପ୍ରଦାନ କରିଅଛୁ। ପୃଥିବୀର ଉନ୍ନତ ଦେଶମାନଙ୍କୁ ଅନୁକରଣକରି ଆମେମାନେ ସାର୍ବଜନୀନ ସାବାଳକ ଭୋଟପ୍ରଥାକୁ ଆଦରି ନେଇଛୁ। ୧୮ବର୍ଷର ବାଳକ ବାଳିକା ଭୋଟ ଦେବାର ଅଧିକାର ପାଇଛନ୍ତି। ନାରୀମାନଙ୍କ ପାଇଁ ସବୁକ୍ଷେତ୍ରରେ ୩୩ (୧/୩) ସ୍ଥାନ ସଂରକ୍ଷଣର ବ୍ୟବସ୍ଥା କରାଯିବାର ପ୍ରସ୍ତାବ ଅଛି । ବର୍ତ୍ତମାନ ପର୍ଯ୍ୟନ୍ତ ଦେଖାଯାଉଛି ଯେ କେବଳ ଦିଲ୍ଲୀ ଓ ପ୍ରାଦେଶିକ ରାଜଧାନୀ ମାନଙ୍କରେ ପାର୍ଲିଆମେଣ୍ଟ ଓ ବିଧାନସଭାର ଭୟାନକ ରୂପ ଦେଖାଦେଇଛି । ଗଣତନ୍ତ୍ରର ବିକେନ୍ଦ୍ରୀକରଣ ପାଇଁ ଯେତେ ଧ୍ୱନିଦେଲେ ମଧ୍ୟ ଗ୍ରାମାଞ୍ଚଳର ଲୋକଙ୍କୁ ସେମାନଙ୍କର ନିଜ ସୁଖ ଦୁଃଖ ଚିନ୍ତାକରିବା ଏବଂ ସମସ୍ୟା ଗୁଡ଼ିକର ନିରାକରଣ ଉପାୟ ଖୋଜିବାପାଇଁ ସେମାନଙ୍କୁ କୌଣସି ସୁଯୋଗ ଦିଆଯାଇନାହିଁ। ଗ୍ରାମପଞ୍ଚାୟତ, ପଞ୍ଚାୟତସମିତି, ଜିଲ୍ଲା ପରିଷଦ, ବିଜ୍ଞାପିତ ଅଞ୍ଚଳ ପରିଷଦ, ନଗରପାଳିକା, ମହାନଗର ନିଗମ ଆଦି ଗଢ଼ାଯାଏ କେବଳ ସେଗୁଡ଼ିକୁ ନାନା ଆଳରେ ସୁପରସିଡ୍ କରିଦେବା ପାଇଁ । ସୁଦୂର ମଫସଲର ପ୍ରାଇମେରୀ ସ୍କୁଲଗୁଡ଼ିକୁ ଭୁବନେଶ୍ୱରରୁ ପରିଚାଳିତ କରାଯାଏ। ଯେଉଁ ଦେଶର ଲୋକେ ପ୍ରାଇମେରୀ ସ୍କୁଲଟିଏ ଚଳାଇବା ପାଇଁ ଅସମର୍ଥ, ସେମାନେ ଏତେବଡ଼ ଦେଶଟିକୁ କିପରି ଚଳାଇବେ ? ଏ କଥା ଭାବିଲେ ବିସ୍ମୟ ଲାଗେ।

ବ୍ରିଟିଶ ଅମଳରେ ଆମରି ଲୋକେ ପ୍ରାଥମିକ ଶିକ୍ଷା, ରାସ୍ତାଘାଟ, ଡାକ୍ତରଖାନା ଇତ୍ୟାଦି ଚଳେଇବାର ଅଧିକାର ପାଇଥିଲେ। ଆମ ଲୋକପ୍ରତିନିଧିମାନେ District Board ଓ Local Boardରେ ରହି ଏହି କାର୍ଯ୍ୟଭାର ଗ୍ରହଣ କରିଥିଲେ। ସ୍ୱାଧୀନତା ୫୦ବର୍ଷପରେ ଏ ଦେଶରେ ଗଣତନ୍ତ୍ରର ଚେର ମାଡ଼ିପାରିଲା ନାହିଁ। ବର୍ତ୍ତମାନ ପୁଣି ତ୍ରିସ୍ତରୀୟ ପଞ୍ଚାୟତ ଶାସନ ଲାଗୁ ହେବାକୁ ଯାଉଛି। ଏହା ଭିତରେ ସାଧାରଣ ଜନତା, ଆମପରି ଶିକ୍ଷିତ ଲୋକ ଏବଂ ନେତାମାନଙ୍କଠାରୁ ସକଳ ଦୁର୍ନୀତିର ପନ୍ଥା ଅବଲମ୍ବନ କରିବାର ଉପାୟମାନ ଶିକ୍ଷା କରିସାରିଲେଣି। ସେମାନଙ୍କର ମଧ୍ୟ ଅଧିକାର ଓ ପଦପଦବିର ଲାଳସା ଭୟଙ୍କର ରୂପଧାରଣ କରିବ । ତଥାପି ସେମାନଙ୍କୁ ସମସ୍ତ ସୁବିଧା ଓ ଅଧିକାର ଦେବା ଉଚିତ । ହୋଇପାରେ ଆହୁରି ୫୦ବର୍ଷ ପରେ ପ୍ରକୃତ ଗଣତନ୍ତ୍ର ଏ ଦେଶରେ ବିକଶିତ ହୋଇପାରେ। ବ୍ରିଟିଶ ଶାସନରୁ ମୁକ୍ତି ପାଇବାପାଇଁ ଆମଦେଶର ଲୋକେ ଅଭୂତପୂର୍ବ ଏକତା, ନିଷ୍ଠା ଓ ସାହସ ପ୍ରଦର୍ଶନ କରିଥିଲେ । ହାୟ ! ଆମେ ସେହି ଏକତାକୁ ରକ୍ଷାକରି ପାରିଲୁନାହିଁ । ପୁଣିଥରେ ଜାତି, ଧର୍ମ ଏବଂ ଅଞ୍ଚଳକୁ ନେଇ ଶତଧା ବିଭକ୍ତ ହୋଇଗଲୁ । ଇଂରାଜୀରେ ଗୋଟିଏ ପ୍ରବାଦ ଅଛି, "United we stand. Divided we fall." ବର୍ତ୍ତମାତ ଆମର ସେହି ଅବସ୍ଥା ହୋଇଅଛି । ସହସ୍ରଦଳରେ ବିଭକ୍ତହୋଇ ଆମେମାନେ ଏତେ ବିଭ୍ରାନ୍ତ ଓ ବିପଦଗ୍ରସ୍ତ ଯେ, ପୃଥିବୀରେ ଭାରତ ଏକ ବିଶାଳ ଗଣତନ୍ତ୍ର ଦେଶ ବୋଲି ଗର୍ବ କରିବାର ସୌଭାଗ୍ୟ ଆଉ ଆମର ନାହିଁ ବୋଲି କହିବାକୁ ହେବ।

## ଇନ୍ଦୁସାର୍‌ଙ୍କ ନିଜଲେଖା – ୨

*ଇନ୍ଦୁସାର୍‌ଙ୍କ ଶେଷଲେଖାଟି ବୋଧହୁଏ 'ଦୈନନ୍ଦିନ ଶାସନ', ଯେଉଁଥିରେ କି, ସେ ରାଜ୍ୟର ଉନ୍ନତି ପାଇଁ ପ୍ରସ୍ତାବ ଦେଇଛନ୍ତି ସରକାରଙ୍କୁ । ତାଙ୍କର ସବୁଗୁଡ଼ିକ ଉପଦେଶରେ ଦେଖାଯାଏ, ତାଙ୍କ ଜୀବନଦର୍ଶନର ସିଧାସିଧି ପ୍ରତିଫଳନ ଏବଂ ସେ ଦର୍ଶନର practical application in state administration. ଦେଖନ୍ତୁ କେତେ ଯୁଗୋପଯୋଗୀ ସେ ପ୍ରସ୍ତାବ ଗୁଡ଼ିକ । ଆଜିକାଲି ଆମ ରାଜ୍ୟ ଓ ଦେଶକୁ ଉପଦେଶ ଦେବାପାଇଁ ବେଶ୍ ମୋଟା ଦରମାରେ ସରକାର ନିଯୁକ୍ତି ଦେଉଛନ୍ତି ବିଦେଶୀ ବିଶେଷଜ୍ଞମାନଙ୍କୁ । ମାତ୍ର ଶୁଣୁନାହାଁନ୍ତି ଦେଶପ୍ରେମୀ ଦେଶୀ ଲୋକମାନଙ୍କ କଥା, କାରଣ "ଗାଁ କନିଆଁ ସିଙ୍ଘାଣିନାକୀ" ।*

## ସରକାରଙ୍କୁ ପ୍ରସ୍ତାବ

**ଦୈନନ୍ଦିନ ଶାସନ :** ଏବେ ଦୈନନ୍ଦିନ ଶାସନ ଚୁଲିକି ଗଲାଣି ବୋଲି ଲୋକେ ଅନୁଭବ କରୁଛନ୍ତି। ଏହା ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଇଚ୍ଛାଶକ୍ତିର ଅଭାବ ଏବଂ କର୍ମଚାରୀମାନଙ୍କର ସ୍ୱକାର୍ଯ୍ୟରେ ଜଡ଼ିତ ନହେବା ଏବଂ ସ୍ପୃହାର ଘୋର ଅଭାବପାଇଁ ଘଟୁଅଛି । ଗୋଟିଏ ଗୋଟିଏ ଜିଲ୍ଲାରେ ବର୍ଷକୁ ପାଞ୍ଚପାଞ୍ଚଟି ଜିଲ୍ଲା ଅଧିକାରୀ ଓ ପୁଲିସ୍ ଅଧିକାରୀଙ୍କର ବଦଳି ହେବାର ଦେଖାଯାଉଛି। ବର୍ତ୍ତମାନ ଦେଶର କାମ କାହାରି ନୁହେଁ। ଦେଶର ଉନ୍ନତିପାଇଁ ବାହାରୁ ଋଣ ଏବଂ ଦାନଗ୍ରହଣ କରିବା ଆମର ଗୋଟିଏ ବିପଦଜନକ ଅଭ୍ୟାସ ହୋଇଗଲାଣି। ଭୁବନେଶ୍ୱରରେ ଛାଞ୍ଚୁଣି ମୁଠାବାଜିବା ପାଇଁ ଏବଂ କଟକ ସହରରେ ନର୍ଦ୍ଦମାଗୁଡ଼ିକୁ ସଫା କରିବାପାଇଁ ଆମକୁ ବାହାର ଦେଶର ଋଣ ବା ଦାନ ଉପରେ ନିର୍ଭର କରିବାକୁ ପଡୁଅଛି। ପ୍ରାଇମେରୀ ସ୍କୁଲର ଛାଳରେ କଣାଟିଏ ହୋଇଗଲେ ଗ୍ରାମବାସୀମାନେ ସେ କଣାଟି ବୁଜିବାପାଇଁ ସରକାରଙ୍କରୁ ଚାହିଁ ବସିଛନ୍ତି। ପୁରାତନ ସ୍କୁଲ, ରାସ୍ତାଘାଟ, ଡାକ୍ତରଖାନା, ବନ୍ଧବାଡ଼ ଓ ଜଳସେଚନ ବ୍ୟବସ୍ଥାର ବର୍ତ୍ତମାନ ବଡ଼ ଦୟନୀୟ ଅବସ୍ଥା । ସରକାର ଏଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ସମର୍ଥହେବା ବଡ଼ ଦୁରୂହ ବ୍ୟାପାର। କିନ୍ତୁ ଏ ଦେଶରେ ଅର୍ଥର ଅଭାବ ନାହିଁ। ଏ ଦେଶର ଟିକସ ହାର ଅତି କମ୍ । ଏହା ବଢ଼ିବା ଏକାନ୍ତ ଆବଶ୍ୟକ । ସରକାର ନିର୍ମମଭାବେ ପ୍ରତ୍ୟକ୍ଷ ଟିକସଭାର ବଢ଼ାଇବା ଉଚିତ। ସହର ଓ ନଗରବାସୀଙ୍କ ଉପରେ ପ୍ରତ୍ୟକ୍ଷ ଟିକସଭାର ବହୁ ପରିମାଣରେ ବଢ଼ାଇବା ଆବଶ୍ୟକ। କିନ୍ତୁ କଥାହେଲା, ଲୋକଙ୍କର ସରକାରଙ୍କ ଉପରେ ବିଶ୍ୱାସ ଓ ଆସ୍ଥା ଲୋପ ପାଇଲାଣି। ସରକାରୀ ଅର୍ଥ ବିନିର୍ବ୍ୟୟ ହେବାରେ ଲାଗିଛି। ଲୋକେ ସରକାରୀ ସେବା ସୁଚାରୁରୂପେ ଆଦୌ ପାଇପାରୁ ନାହାଁନ୍ତି । ସୁତରାଂ ପଇସାଟିଏ ଟିକସ ବଢ଼ିଲେ ମଧ୍ୟ ଲୋକେ ଦେବାକୁ ଅନିଚ୍ଛୁକ ।

ଅତି ଆବଶ୍ୟକସ୍ଥଳେ ବିଦେଶରୁ ଶିଳ୍ପ, ଯନ୍ତ୍ରପାତି, ବାଣିଜ୍ୟ ଓ ଜ୍ଞାନକୌଶଳ ଇତ୍ୟାଦି ପାଇଁ ଋଣ କରାଯାଇପାରେ । କିନ୍ତୁ ପାନୀୟଜଳ, ସ୍ୱାସ୍ଥ୍ୟରକ୍ଷା, ପରିଷ୍କାର ପରିଚ୍ଛନତା, ରାସ୍ତାଘାଟ, ଗୃହନିର୍ମାଣ, ବୃକ୍ଷରୋପଣ ପାଇଁ ନିଜ ସମ୍ବଳ ଉପରେ ନିର୍ଭର କରିବା ଉଚିତ୍।

ସରକାରୀ ଅର୍ଥ ନାନାଉପାୟରେ ଦୁର୍ନୀତିଗ୍ରସ୍ତ ଲୋକମାନେ ଆତ୍ମସାତ୍ କରିବାର ଏବଂ ଅବାସ୍ତବ କାର୍ଯ୍ୟକ୍ରମରେ ସାଧାରଣ ଅର୍ଥ ନଷ୍ଟହେବାର ଦେଖୁଛନ୍ତି ଏବଂ ଶାସନର ଅଯୋଗ୍ୟତା, ଅପାରଗତା ଓ ନିଷ୍କ୍ରିୟତା ହେତୁ ଦେଶରେ ସର୍ବତ୍ର ନରହତ୍ୟା, ଚୋରି, ଡକାୟତି, ରାହାଜାନୀ, ନାରୀଧର୍ଷଣ, ନାରୀ ନିର୍ଯାତନା, ଦାଦାବଟୀ, ଯାନବାହନ ଚଳାଚଳରେ ଦୁର୍ଘଟଣା, ଅପରହରଣ ଆଦି ଚାଲିଛି। ପୁଲିସ୍‌ଭେନ୍ ଥାନା, କୋର୍ଟ ଓ ଜେଲରୁ କଏଦୀ ଓ ଅସାମାଜିକ ବ୍ୟକ୍ତିଙ୍କର ଚମ୍ପଟ ମାରିବାରେ, ଖଣି, ଟ୍ରେନ ଓ ଟ୍ରକରୁ ଖଣିଜଦ୍ରବ୍ୟ ଚୋରିଯିବା, ସରକାରୀ ଶାସନର ଅଯୋଗ୍ୟତାର ପ୍ରାମଣ ଦେଉଛି । ଜଙ୍ଗଲରୁ ଅବାରିତ କାଠଚୋରି ଚାଲିଛି । ସର୍ବୋପରି ଜନସଂଖ୍ୟା ବିସ୍ତାରିତ ଦେଶପ୍ରତି ମହାଦିପଦ ସୃଷ୍ଟିକରିଛି । ସରକାର ଏହାକୁ କଠୋର ହାତରେ ନିୟନ୍ତ୍ରିତ କରିବା ଅତ୍ୟାବଶ୍ୟକ । ଅନିୟନ୍ତ୍ରିତ ଭାବେ ଜନସଂଖ୍ୟା ବିସ୍ଫୋରଣ ସକାଶେ ବହୁ ଲୋକେ ନିଜର ଜୀବନ ଓ ସମ୍ପତ୍ତି ନିରାପଦ ବୋଲି ଭାବୁନାହାଁନ୍ତି । ନିଜର ଜୀବନକୁ ବିପଦାପନ୍ନ ଭାବି ଲୋକମାନେ ଆତଙ୍କିତ ଅବସ୍ଥାରେ ଚଳୁଛନ୍ତି। କାହାର କେତେବେଳେ କଣହେବ, ଏହି ଆଶଙ୍କା ସବୁବେଳେ ଥିବାରୁ ଲୋକେ ନିଜର ଏବଂ ସନ୍ତାନସନ୍ତତିଙ୍କର ଭବିଷ୍ୟତ ପାଇଁ ଚିନ୍ତିତ ହୋଇ ଅର୍ଥ ଓ ସମ୍ପତ୍ତି ସଂଗ୍ରହ କରିବାରେ ନାନା ଦୁର୍ନୀତିରେ ଆଶ୍ରୟ ନେଉଛନ୍ତି। ଯଦି ଦୈନନ୍ଦିନ ଶାସନ ଠିକ୍ ଭାବରେ ଚାଲନ୍ତା, ତାହାହେଲେ ଅନେକ ଦୁର୍ନୀତି ବହୁ ପରିମାଣରେ କମିଯାଆନ୍ତା। ବଡ଼ ଦୁଃଖରକଥା, ଦେଖାଯାଏ ଯେ ଆମର ଆଇନ ନିର୍ମାତା ଏବଂ ଆଇନକୁ କାର୍ଯ୍ୟକାରୀ କରାଇବା ନେତା ଓ କର୍ମଚାରୀମାନେ ଅନେକ ସମୟରେ ଅତି ସହଜରେ ଆଇନ ଭଙ୍ଗକରିବାରେ ଅଭ୍ୟସ୍ତ ହୋଇ ପଡ଼ିଛନ୍ତି।

**ବ୍ୟୟ ସଂକୋଚର କେତୋଟି ଦିଗ :** ଦେଖାଯାଏ ବିନା ଚିନ୍ତା ଓ ଦୂରଦୃଷ୍ଟି ଅଭାବରୁ ଅନେକ ସମୟରେ ଆମେ ଆବେଗର ସହିତ ଅନେକ ଯୋଜନା ହାତକୁ ନେଇଯାଉଛୁ। ହୁଏତ ଏଗୁଡ଼ିକ ଦିଲ୍ଲୀର ନିର୍ଦ୍ଦେଶରେ ହେଉ କିମ୍ବା ଅନ୍ୟଦେଶର କୌଣସି ବ୍ୟବସ୍ଥାର ଅନୁକରଣରେ ହେଉ, ଆମେ ଏସବୁ ଆବେଗର ସହିତ ଗ୍ରହଣ କରିବାକୁ ଆଗଭର ହୋଇ ପଡୁଥିବାର ଦେଖାଯାଏ । ଏ ବାବଦରେ ଆମ ନିଜର ଅର୍ଥ କିମ୍ବା ଋଣ ବା ଦାନ ଆକାରରେ ବାହାରୁ ଆସୁଥିବା ଅର୍ଥ ନଷ୍ଟହୁଏ। ଏ ଦୃଷ୍ଟିରୁ ଦେଖିଲେ, ମୁଁ ଦୃଢ଼ତାର ସହିତ କହିପାରେ ଯେ କେତେଗୁଡ଼ିଏ ସରକାରୀ ବା ଅର୍ଦ୍ଧସରକାରୀ ଅନୁଷ୍ଠାନ ଅତି ସହଜରେ ଓ ବିନାକ୍ଷତିରେ ଲୋପକରି ଦିଆଯାଇପାରେ।

ପ୍ରାଇମେରୀ ସ୍କୁଲରେ ରଙ୍ଗିନ୍‌ଟି.ଭି., ଟେପ ରେକର୍ଡ଼ର ଇତ୍ୟାଦି ଦେବା ଏବଂ ପ୍ରତିଦିନ ଟି.ଭି.ରେ ଏସ୍‌.ଆଇ.ଇ.ଟି. ଦ୍ୱାରା କାର୍ଯ୍ୟକ୍ରମ କରିବା ଅତି ହାସ୍ୟାସ୍ପଦ।

ସରକାରୀ କର୍ମଚାରୀ, ମନ୍ତ୍ରୀ, ଏମ୍‌.ଏଲ୍‌.ଏ.ମାନଙ୍କର ଦରମା ଓ ପେନ୍‌ସନ୍‌ ଭାରରେ, ବିଶେଷତଃ ଓଡ଼ିଶାଭଳି ରାଜ୍ୟ ଅତ୍ୟନ୍ତ ଭାରାକ୍ରାନ୍ତ । ମନେହୁଏ ବର୍ତ୍ତମାନ ଥିବା ଦରମା ଓ ପେନ୍‌ସନ୍‌କୁ ଅଧା କରିଦେଲେ ମଧ୍ୟ କାହାରି କିଛି ହେବନାହିଁ। ଅବଶ୍ୟ ଆମଦେଶର ଯେକୌଣସି ସରକାର ଏହାକୁ ଅନାବଶ୍ୟକ ଓ ଅକରଣୀୟ ବୋଲି କହିପାରନ୍ତି । କିନ୍ତୁ ବର୍ତ୍ତମାନ କଠିନ ପରିସ୍ଥିତିରେ ସରକାରଙ୍କର ଆୟର ଅଧିକାଂଶ କେବଳ ସରକାରୀ କର୍ମଚାରୀ, ମନ୍ତ୍ରୀ, ଏମ.ଏଲ.ଏ.ମାନଙ୍କୁ ଦରମା ଦେବାରେ ଖର୍ଚ୍ଚ ହୋଇଯାଉଛି। କର୍ମଚାରୀ ଓ ଏବେ ସରକାରଙ୍କର ଅତ୍ୟଧିକ ବିଜ୍ଞାପନ ଖର୍ଚ୍ଚ, ମନ୍ତ୍ରୀମାନଙ୍କର ଭତ୍ତା ଏବଂ ବିଦେଶଗସ୍ତ ସୀମିତ ହେବା ଉଚିତ । ଚିକିତ୍ସାପାଇଁ ବାହାର ଦେଶକୁ ଯିବାର ଖର୍ଚ୍ଚ ସରକାର ବହନ କରିବା ଅନୁଚିତ । ବିସ୍ତୃତ ଜାଗାରେ ନିର୍ମିତ ବଡ଼ବଡ଼ ବାସଗୃହରେ ମନ୍ତ୍ରୀ, ଏମ.ଏଲ.ଏ. ଓ ସରକାରୀ କର୍ମଚାରୀମାନେ ରହନ୍ତି । ସମସ୍ତେ ଏଇଦେଶରେ ଚିକିତ୍ସିତ ହେବା ବାଞ୍ଛନୀୟ । ଆମଦେଶରେ ଲୋକ ଗରିବ। ଅନେକ ଲୋକ ବାସହୀନ ଏବଂ ଅନେକ ଏକକୋଠରି ବିଶିଷ୍ଟ ଘରେ ରହନ୍ତି। ସୁତରାଂ ଆମର ବଡ଼ବଡ଼ ଅଫିସର, ମନ୍ତ୍ରୀ, ଏମ୍‌.ଏଲ୍‌.ଏ ରହୁଥିବା ଘରଗୁଡ଼ିକୁ ଦୁଇଭାଗ କରାଯାଇପାରେ। ତାହାହେଲେ ଘର ପାଉନଥିବା ଅନେକ ସରକାରୀ କର୍ମଚାରୀ, ସରକାରୀ ଘର ପାଇପାରିବେ।

ଦେଖାଯାଏ ଯେ ମନ୍ତ୍ରୀ, ଏମ୍‌.ଏଲ୍‌.ଏ. କିମ୍ବା ଅଫିସର ପଦରୁ ବିଦାୟ ନେଲେ ମଧ୍ୟ ବର୍ଷବର୍ଷ ଧରି ଏହି ଲୋକମାନେ ତାଙ୍କର ସରକାରୀ ଗୃହକୁ ମାଡ଼ିବସି ରହିଥାନ୍ତି। ଖାଲି ସେତିକିନୁହେଁ, ଅନେକ ବାହାରଲୋକେ ଅନେକ ସରକାରୀ ଘର ଏବଂ ଜାଗା ମାଡ଼ିବସି ଆନନ୍ଦରେ ଅଛନ୍ତି। କେବଳ ଭୁବନେଶ୍ୱରରେ ଏଗାର ହଜାର ସରକାରୀ ଫ୍ଲାଟ୍‌ ଜବରଦଖଲରେ ଅଛି ବୋଲି ଥରେ ଖବରକାଗଜରେ ପଢ଼ିଥିଲି। ଏହାର ପ୍ରତିବିଧାନ କ'ଣ ସରକାର କରିପାରିବେ ନାହିଁ ?

ସହରାଞ୍ଚଳରେ ଯେତେଲୋକ ଘର କରିଛନ୍ତି, ସେମାନେ କେଉଁଠୁ ଅର୍ଥ ଆଣି ଘର ତିଆରି କରିଛନ୍ତି ? ସେମାନେ କେଉଁଠୁ ଅର୍ଥଆଣି ଘର ତିଆରି କରିଛନ୍ତି ତାହାର ହିସାବ ଦିଅନ୍ତୁ। ହିସାବ ଦେଇ ନପାରିଲେ ଘରଟି ବ୍ୟାଜ୍ୟାପ୍ତ କରାଯାଉ।

ସହରମାନଙ୍କରେ ମ୍ୟୁନିସିପାଲଟି ଟେକ୍ସ ଅସୁଲି ହେଉନାହିଁ। ଦେଖାଯାଉଛି, ଆଇନ ଅନୁସାରେ ମ୍ୟୁନିସିପାଲଟି ଟେକ୍ସ ଅସୁଲିହେଲେ ମ୍ୟୁନିସିପାଲଟି ବହୁ ଅର୍ଥ ଉପାର୍ଜନ କରିପାରିବ।

ସରକାରରୁ ଲିଜ୍‌ ଦିଆଯାଇଥିବା ଜମି ଉପରେ ରାଜସ୍ୱ ବୃଦ୍ଧି କରାଯାଇ ପାରିବ। ସରକାର ନିଜେ କୌଣସି ବ୍ୟବସାୟ କିମ୍ବା ଶିଳ୍ପ ହାତକୁ ନନେଇ ଏଗୁଡ଼ିକୁ ଘରୋଇସଂସ୍ଥା ମାନଙ୍କୁ ଦିଅନ୍ତୁ।

ଦେଖାଯାଉଛି ସରକାରୀ ଓ ଅର୍ଦ୍ଧସରକାରୀ ସଂସ୍ଥାମାନଙ୍କରେ ନାଲିବତି ଜଳୁଛି ଏବଂ କୋଟିକୋଟି ଟଙ୍କା କ୍ଷତିସହିବାକୁ ପଡୁଛି। ଏହାର ବହୁତ କାରଣ ଅଛି, କିନ୍ତୁ ଗୋଟିଏ ମୂଳକାରଣ ହେଲା ଏଥିରେ ପ୍ରଭାବଶାଳୀ ଲୋକେ ଅନାବଶ୍ୟକୀୟ ସ୍ଥଳେ ବହୁତ କର୍ମଚାରୀ ଓ ମଜଦୁର ଭର୍ତ୍ତି କରି ଦେଉଛନ୍ତି ଏବଂ ପରିଚାଳନାରେ ସରକାରୀ ଲୋକେ ଅତ୍ୟଧିକ ଖର୍ଚ୍ଚକରି ନାନା ବିଭ୍ରାଟ କରନ୍ତି।

ପ୍ରାଇମେରୀ ସ୍କୁଲଠାରୁ ଆରମ୍ଭକରି କଲେଜ ପର୍ଯ୍ୟନ୍ତ ସବୁ ଶିକ୍ଷାନୁଷ୍ଠାନକୁ ପ୍ରାଇଭେଟ managementରେ ରଖାଯାଉ। ସରକାର କେବଳ ଟ୍ରେନିଂ, ପରୀକ୍ଷା, ଗବେଷଣା, ସିଲାବସ ଇତ୍ୟାଦିର ଦାୟିତ୍ୱ ନେବେ। ଲୋକେ ପରିଚାଳନାଗତ ଦୋଷତ୍ରୁଟି ଦ୍ୱାରା କୁଫଳ ବା ସୁଫଳ ପାଇ ଶିକ୍ଷାଲାଭ କରନ୍ତୁ ବା ପଞ୍ଚାୟତସମିତି ଓ ଜିଲ୍ଲାପରିଷଦ ଏସବୁ ଶିକ୍ଷାନୁଷ୍ଠାନ ଗୁଡ଼ିକର ଭାର ନିଅନ୍ତୁ । ତାହେଲେ ଅନୁଦାନ ଦେବାଛଡ଼ା ଶିକ୍ଷକମାନଙ୍କ ବଦଳି ଓ ପେନ୍‌ସନ୍ ଇତ୍ୟାଦି ପାଇଁ ସରକାର ହଇରାଣ ହେବେନାହିଁ। ବ୍ରିଟିଶ ଅମଳରେ Local Board ଓ District Board ରାସ୍ତାଘାଟ, ପ୍ରାଇମେରୀ ସ୍କୁଲ ଏବଂ ଡାକ୍ତରଖାନା ସବୁ ଚଳାଉଥିଲେ ତାହା ଏବେ କାହିଁକି ନହୋଇ ପାରିବ ? ସରକାର କେବଳ ଉଦାହରଣ ସ୍ୱରୂପ ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଗୋଟିଏ ଆଦର୍ଶ ହାଇସ୍କୁଲ ଓ କଲେଜ ଚଳାଇ ପାରନ୍ତି।

କମ୍ପାନୀମାନଙ୍କରେ କେବଳ ଗୋଟିଏଗୋଟିଏ ମଜଦୁର ୟୁନିଅନ୍ ରହିବ ଏବଂ ସେଇ ୟୁନିଅନକୁ ସେମାନେ ହିଁ ଚଳାଇବେ। ବାହାର ଲୋକ ୟୁନିଅନର କର୍ମକର୍ତ୍ତା ହୋଇପାରିବେ ନାହିଁ। ଆବଶ୍ୟକସ୍ଥଳେ ୟୁନିଅନ୍ କେବଳ ଓକିଲମାନଙ୍କର ପରାମର୍ଶ ନେଇପାରିବେ।

## ଶିକ୍ଷା-ଦର୍ଶନ

*ପାଶ୍ଚାତ୍ୟ ଦେଶର ଲୋକମାନଙ୍କ ତୁଳନାରେ ଆମ ଭାରତୀୟମାନଙ୍କ କଥା ଏବଂ କର୍ମ ଭିତରେ ବେଶ ପ୍ରଭେଦ ପରିଲକ୍ଷିତ ହୁଏ । ଆମେ ଭାଷଣରେ ଯାହା କହୁ, କାମରେ କରୁ ତାର ଠିକ୍ ଓଲଟା । ଆମେ ଭାଷଣରେ ଦେଉ ପ୍ରବଚନ, କର୍ମରେ କରୁ ହୀନକର୍ମ । ଆମେ କଥା କଥାରେ ଗୀତାରୁ ଶ୍ଳୋକମାନ ଉଦ୍ଧୃତ କରୁ । 'କର୍ମଣ୍ୟେ ବାଧିକାରେସ୍ତୁ .......' କିନ୍ତୁ କାର୍ଯ୍ୟରେ ସବୁକର୍ମ ମୂଳରେ ବଡ଼ବଡ଼ ଫଳ ପାଇବାର ଉଦ୍ଦେଶ୍ୟ ଥାଏ । Hypocracy has become an inspearable part of our culture. ଆମେ କାହିଁକି ଏମିତି ତା' ଉପରେ ଗବେଷଣା ହେବାର ଆବଶ୍ୟକତା ଅଛି । ଆମ କହିବା ଏବଂ କରିବା ଭିତରେ ଯେଉଁ ପ୍ରଭେଦ କଥା କହୁଛୁ, ଶିକ୍ଷା କ୍ଷେତ୍ରରେ ତାହା ମାତ୍ରାଧିକ । ଆମ ଶିକ୍ଷକ ପ୍ରଶିକ୍ଷକମାନେ ପ୍ରଶିକ୍ଷଣ ସମୟରେ ଯାହାସବୁ କହନ୍ତି, କାର୍ଯ୍ୟରେ*

ତାହା କରନ୍ତି ନାହିଁ । ସେମାନଙ୍କ ଠାରୁ ସେ ରୋଗ ଚେଇଁଛି ଆମ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ । ଆମେ ଆମ ଛାତ୍ରଛାତ୍ରୀମାନଙ୍କୁ ଯାହା କହୁ ଆମ ନିଜ ଦୈନନ୍ଦିନ କର୍ମରେ ତାହା କରୁନି । ତେଣୁ ଶିକ୍ଷା ଆମର ହୋଇଛି ନୀତିବାକ୍ୟ / ପ୍ରବଚନ ସର୍ବସ୍ୱ । କିନ୍ତୁ ଇନ୍ଦୁସାର୍ ଥିଲେ ଏକ ବଡ଼ ବ୍ୟତିକ୍ରମ । ସେ ଯାହା କହୁଥିଲେ ତାହା କରୁଥିଲେ । ତାଙ୍କ କଥା ଏବଂ କାମ ଭିତରେ ପ୍ରଭେଦ ନଥିଲା । ସିଏ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଯେମିତି ପଢ଼ାଇବାକୁ କହୁଥିଲେ, ସେମିତି ନିଜେ ପଢ଼ାଉଥିଲେ । ସେ ଥିଉରିରେ ବିଶ୍ୱାସ ନକରି ପ୍ରାକ୍‌ଟିସ୍‌ରେ ବିଶ୍ୱାସ କରୁଥିଲେ ।

ଗାଁଗଣ୍ଡା ଆଦିବାସୀ ଅଞ୍ଚଳର ଓଡ଼ିଆ ମିଡିୟମ୍ ସରକାରୀ ସ୍କୁଲ ଥିଲା ଇନ୍ଦୁସାରଙ୍କ ମୁଖ୍ୟ କର୍ମକ୍ଷେତ୍ର । ସେ ଯାହାସବୁ ଶିକ୍ଷା କ୍ଷେତ୍ରରେ କରିଛନ୍ତି, ତାହା ସେଇମାନଙ୍କ ପାଇଁ । ସେ ଇଂରାଜୀ ମିଡିୟମ୍ ସ୍କୁଲ ବିରୋଧି ଥିଲେ । ଶିକ୍ଷା କ୍ଷେତ୍ରରେ ତାଙ୍କର ମୁଖ୍ୟ ଅବଦାନ ଥିଲା ତିନୋଟି ବିଭାଗରେ - ମୌଳିକଶିକ୍ଷା, ପ୍ରାକ୍-ପ୍ରାଥମିକ ଶିକ୍ଷା ଏବଂ ପ୍ରୌଢ଼ଶିକ୍ଷା । ଆମ ଦେଶରୁ ମୌଳିକଶିକ୍ଷା ଉଠାଇ ଦିଆଗଲା । ଯଦିଚ ଆମ ଦେଶପାଇଁ ତାହାହିଁ ଥିଲା ଠିକ୍‌ଶିକ୍ଷା । ଆମର ସେଇ ଭୁଲ ନିଷ୍ପତ୍ତିପାଇଁ ଶିକ୍ଷାର ଆଜି ଏ ଦୁରବସ୍ଥା । ମୌଳିକଶିକ୍ଷା ସରକାରୀଭାବେ ଉଠାଇ ଦିଆଗଲା ସତ, ମାତ୍ର ଇନ୍ଦୁସାର୍‌ଙ୍କ ପାଇଁ ସବୁଶିକ୍ଷା ଥିଲା ମୌଳିକ ଶିକ୍ଷାମୟ । ସେ ଶିକ୍ଷାକ୍ଷେତ୍ରରେ ଯାହାସବୁ କରିଛନ୍ତି, ସେସବୁ ସେଇ ମୌଳିକଶିକ୍ଷାର ପ୍ରତିଫଳନ । କାରଣ, ତାହାଥିଲା ତାଙ୍କ ଅତିପ୍ରିୟ ଶିକ୍ଷାଦର୍ଶନ । ସ୍ୱର୍ଗତ ଅନ୍ନପୂର୍ଣ୍ଣା ମହାରଣା ଇନ୍ଦୁସାରଙ୍କ ସମ୍ବନ୍ଧରେ ଯାହା ଲେଖିଛନ୍ତି, ତାହା ଅକ୍ଷରେ ଅକ୍ଷରେ ସତ । ସେ ଲେଖିଛନ୍ତି "ଥରେ ତାଙ୍କ ମୁହଁରୁ ମୌଳିକଶିକ୍ଷା ବିଷୟରେ ଗୋଟିଏ ଭାଷଣ ଶୁଣିବାର ସୁଯୋଗ ମୋତେ ମିଳିଥିଲା । ତାହା ଶୁଣି ମୋର ମନେହେଲା ସେ ମୌଳିକଶିକ୍ଷାର ମୂଳ ସିଦ୍ଧାନ୍ତକୁ ଆତ୍ମସାତ୍ କରିଛନ୍ତି ଏବଂ ନିଜର ବ୍ୟକ୍ତିଗତ ଜୀବନରେ ମଧ୍ୟ ଏହାର ପ୍ରୟୋଗ କରିଛନ୍ତି ।"

ମୌଳିକ ଶିକ୍ଷାକୁ ପାଠରୁ ବାଦ୍‌ଦେବା ଠାରୁ ଆମ ଶିକ୍ଷା ହେଇଛି 'ପୋଥିବାଇଗଣ' । ପିଲା ବହିପାଠରୁ ସରଳରେଖା କ'ଣ ଶିଖୁଛନ୍ତି । ମାତ୍ର ସିଧାଧାଡ଼ିରେ ଗଛଲଗାଇ ପାରୁନାହାଁନ୍ତି । କର୍ମଶିକ୍ଷା ପାଇଁ ଆମେ ଆମଶିକ୍ଷା ସିଲାବସ୍‌ରେ ରଖିଛୁ ବିଷୟ S.U.P.W.(Socially Useful Productive Work). କିନ୍ତୁ ବିଷୟଟିରେ କେବଳ ମିଛରେ ଗ୍ରେଡ୍ କି ମାର୍କ ଦିଆଯାଏ । ଇଂଲଣ୍ଡରେ କିନ୍ତୁ ତାଙ୍କର ସେଥିପାଇଁ ବିଷୟ ଅଛି Do It Yourself - ଯେଉଁଥିରେ ସତକୁ ସତ ଦୈନନ୍ଦିନ କାମ ଶିକ୍ଷା ଦିଆଯାଏ ।"

## ପ୍ରାକ୍-ପ୍ରାଥମିକ ଶିକ୍ଷା

ସବୁଶିକ୍ଷାର ମୂଳହେଲା ପ୍ରାକ୍-ପ୍ରାଥମିକ ଶିକ୍ଷା । ଯେଉଁ ଦେଶର ପ୍ରାକ୍-ପ୍ରାଥମିକ ଶିକ୍ଷା ଦୃଢ଼, ସେ ଦେଶର ଶିକ୍ଷା ଦୃଢ଼ । କାରଣ ପ୍ରାକ୍-ପ୍ରାଥମିକ ଶିକ୍ଷା ହେଲା ଶିକ୍ଷାର

*ମୂଳଦୁଆ । ବିଶେଷଭାବେ ଆମ ଆଦିବାସୀ ଗାଁଗଣ୍ଡା ଅଞ୍ଚଳର ସ୍କୁଲମାନଙ୍କରେ ଏହାର ଆବଶ୍ୟକତା ଅଧିକ । କାରଣ, ଆଦିବାସୀ ପିଲାମାନଙ୍କ ଘର ଏବଂ ପରିବେଶ ସ୍କୁଲ ପରିବେଶଠୁଁ ବେଶ୍ ଅଲଗା । ଶିକ୍ଷକ ଶିକ୍ଷୟିତ୍ରୀମାନେ ମୁଖ୍ୟତଃ ଅଣଆଦିବାସୀ ଏବଂ ସ୍କୁଲର ଭାଷା ଓଡ଼ିଆ । କେବଳ ଗୋଟିଏ, ଖୁବ୍ ଯତ୍ନର ସହ ପ୍ରସ୍ତୁତ କରାଯାଇଥିବା ପ୍ରାକ୍-ପ୍ରାଥମିକ ଶିକ୍ଷାଦ୍ୱାରା ହିଁ ସେ ଗ୍ୟାପ୍‌କୁ ଦୂର କରାଯାଇ ପାରିବ । ଆମ ରାଜ୍ୟରେ ସେ ଗ୍ୟାପ୍‌କୁ ଦୂର କରିବାକୁ ଯାଇ ଆହୁରି ଗ୍ୟାପ୍ ବଢ଼ାଇ ଦିଆଯାଇଛି ପ୍ରାକ୍-ପ୍ରାଥମିକ ଶିକ୍ଷାଟିକୁ (ଅଙ୍ଗନବାଡ଼ି) ଅନ୍ୟ ଗୋଟିଏ ବିଭାଗକୁ ସମର୍ପଣ କରିଦେଇ । ଅଙ୍ଗନବାଡ଼ି କର୍ମୀ ଜାଣେନାହିଁ ସ୍କୁଲରେ କ'ଣ ହେଉଛି, ସ୍କୁଲର ଶିକ୍ଷକ ଜାଣେନାହିଁ ଅଙ୍ଗନବାଡ଼ିରେ କି ଶିକ୍ଷା ଦିଆଯାଉଛି । ଇନ୍ଦୁସାର ପ୍ରାକ୍-ପ୍ରାଥମିକଶିକ୍ଷା ସଂପର୍କରେ ଯାହା କରିଛନ୍ତି ଏବଂ ଲେଖି ଯାଇଛନ୍ତି, ତାହା ସେ ସଂପର୍କରେ ଶେଷଲେଖା ବୋଲି କହିଲେ ଚଳିବ । କାରଣ, ସେଥିରେ ଆଉ କିଛି ନୂଆକଥା ଯୋଗ କରିବାର ଅବକାଶ ନାହିଁ । ସରକାର ସେତିକି ଉପଯୋଗ କଲେ, ଶିକ୍ଷା ଆମର କୁଆଡ଼େ କାହିଁ ଯାଇପାରିବ ।*

## ଇନ୍ଦୁସାରଙ୍କ ନିଜଲେଖା -୧

ଇନ୍ଦୁସାରଙ୍କ ପ୍ରାକ୍-ପ୍ରାଥମିକ ଶିକ୍ଷା ଏବଂ ତା' ପଛରେ ଥିବା ତାଙ୍କର ଶିକ୍ଷାଦର୍ଶନ ବୁଝିବାକୁ ହେଲେ ତାଙ୍କର ଏହି ଲେଖାଟିକୁ ଆମକୁ ପଢ଼ିବାକୁ ହେବ । ଲେଖାଟି ନିଆଯାଇଛି ତାଙ୍କ 'ଫୁଲରଙ୍ଗୁଡ଼ି' ବହିର ପ୍ରାକ୍‌କଥନରୁ ।

## "ମାଆ, ବାପା ଓ ଶିକ୍ଷକ-ଶିକ୍ଷୟିତ୍ରୀମାନଙ୍କ ପାଇଁ"

ଆଜିକାଲି କ୍ରେଶ (CRECHE), ବାଲବାଡ଼ି, ଅଙ୍ଗନବାଡ଼ି, ପ୍ରାକ୍‌ବିଦ୍ୟାଳୟ ଶିକ୍ଷା (Pre-school Education) ଆଦି କେତେ ପ୍ରକାର ନାଁ ଆମେ ଶୁଣିବାକୁ ପାଉଛୁ । ଅନେକ ମହିଳା ତାଙ୍କର ଛୋଟଛୋଟ ଛୁଆଙ୍କୁ ଘରେ ଛାଡ଼ିଦେଇ କାମକୁ ଯାଆନ୍ତି । ଛୁଆଙ୍କର ବାପାମାନେ ମଧ୍ୟ କାମକୁ ଯାଆନ୍ତି । ଘରେ କେହି ବୁଢ଼ୀଲୋକ ଥିଲେ, ଛୁଆକୁ ରଖେ । ନହେଲେ କାମକୁ ଯାଉନଥିବା ଟିକିଏ ବଡ଼ପିଲା ଛୁଆକୁ ରଖେ । ଛୁଆକୁ ରଖିବା ପିଲାଟି ସ୍କୁଲ ଯାଇପାରେ ନାହିଁ । ସେଥିପାଇଁ ଅନେକ କମ୍ପାନୀ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏହିଭଳି ଶିଶୁଙ୍କୁ ରଖି ତାଙ୍କର ଯତ୍ନନେବା ପାଇଁ କେନ୍ଦ୍ରମାନ ଖୋଲିଥାନ୍ତି । ଏହିପରି କେନ୍ଦ୍ରକୁ କ୍ରେଶ ବା ଶିଶୁଗୃହ କୁହାଯାଏ । ଏଠାରେ ପିଲାର ଗାଧୁଆ-ପାଧୁଆ, ଖିଆପିଆ, ବିଶ୍ରାମ ଏବଂ ଖେଳାଖେଳିର ବନ୍ଦୋବସ୍ତ ଥାଏ । ମାଆମାନେ କାମରୁ ଫେରି ଛୁଆଙ୍କୁ ଧରି ଘରକୁ ଯାଆନ୍ତି । ଆମ ଓଡ଼ିଶାରେ ଏପରି କେନ୍ଦ୍ର ବହୁତ କମ୍ । ଏଠାରେ ତେଲ, ସାବୁନ, ତଉଲିଆ, ଦୋଳିଖଟ ଓ ନାନା ପ୍ରକାର ଖେଳଣାର ବନ୍ଦୋବସ୍ତ ଥାଏ । ଏହି କେନ୍ଦ୍ରମାନଙ୍କରେ ସାଧାରଣତଃ ନର୍ସ ନ ହେଲେ ଶିକ୍ଷିତା ମହିଳାମାନେ କାର୍ଯ୍ୟରତ ଥାନ୍ତି ।

ଅଙ୍ଗନବାଡ଼ି, ବାଲବାଡି ଓ ପ୍ରାକ୍‌ବିଦ୍ୟାଳୟର କଥା କିନ୍ତୁ ଅଲଗା । ଏହି କେନ୍ଦ୍ରଗୁଡିକରେ ସାଧାରଣତଃ ୩ବର୍ଷରୁ ୫ବର୍ଷ ଏବଂ କେତେକ ସ୍ଥଳରେ ୫ବର୍ଷରୁ ୬ବର୍ଷ ବୟସର ଶିଶୁମାନଙ୍କୁ ନିଆଯାଏ । ଏସବୁ କେନ୍ଦ୍ରରେ ପିଲାମାନଙ୍କ ପାଇଁ କିଛି ଖାଇବାର ବନ୍ଦୋବସ୍ତ ପ୍ରାୟ ଥାଏ । ପିଲାମାନଙ୍କୁ ସଫାସୁତୁରା ରଖିବାର ଶିକ୍ଷା ଦିଆଯାଏ । ଏହି କେନ୍ଦ୍ରଗୁଡିକ ଶିଶୁମାନଙ୍କ ପାଇଁ ଶିକ୍ଷାସ୍ଥଳୀ । କିନ୍ତୁ ଏଠାରେ ସିଲଟ ଓ ପୋଥିପତ୍ର ନଥାଏ । ତଥାପି ପିଲେ ଶିକ୍ଷାଲାଭ କରନ୍ତି । ଏଠାରେ ଶିଶୁମାନଙ୍କୁ ଖେଳ, ଗୀତ, ନାଚ, ଅଭିନୟ, ଚିତ୍ରାଙ୍କନ, ଗଳ୍ପ-କଥନ, ଛବି ଓ ମାଟି ଚକଟି କିଛି ଗଢିବା ଆଦି ଦ୍ୱାରିଆରେ କିଛି ଶିକ୍ଷା ଦିଆଯାଏ । ଏଠାରେ ସାଧାରଣତଃ ବାଲିଗଦା, ଦୋଳି ଓ ଉଠାପଡା ଖେଳ ବା ସି-ସ (sea-saw) ଆଦିର ବ୍ୟବସ୍ଥା ଥାଏ । ଶିକ୍ଷକ ଶିକ୍ଷୟିତ୍ରୀମାନେ ଶିଶୁଙ୍କର ଘରକୁ ମଝିରେ ମଝିରେ ଯାଇ ଶିଶୁର ଯତ୍ନ ଏବଂ ଶିଶୁ ଚଳିବା ପାଇଁ ସୁସ୍ଥ ବାତାବରଣ ସମ୍ବନ୍ଧେ ଅନେକ କଥା ଜାଣିବାପରେ ବାପା ମାଆମାନଙ୍କୁ ସାହାଯ୍ୟ କରନ୍ତି ।

ସାଧାରଣତଃ ଲୋକେ ଏପ୍ରକାର ଶିକ୍ଷାଦାନକୁ ବୁଝିନପାରି ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ରୀତିମତ ଲେଖାପଢା ଓ ଗଣିତ ଶିକ୍ଷା ଦେବାକୁ କହନ୍ତି । କିନ୍ତୁ ଏ ବୟସରେ ପିଲେ ରୀତିମତ ପାଠ ପଢ଼ିଲେ ତାଙ୍କର ଶାରୀରିକ ଓ ମାନସିକ ଅଭିବୃଦ୍ଧି ବାଧାପ୍ରାପ୍ତ ହୁଏ । ଏକଥା ସମସ୍ତେ ବୁଝିବା ଉଚିତ୍ ।

ଶିଶୁକୁ ତିନିବର୍ଷ ହେଲାବେଳକୁ ସେ ଅନେକ କଥା ଜାଣିଥାଏ । ସେ ଗଛପତ୍ର, ଫୁଲଫଳ, ପଶୁପକ୍ଷୀ, ସାଙ୍ଗସାଥୀ, ବନ୍ଧୁବାନ୍ଧବ ଓ ମାଟି, ପାଣି, ପବନ ସହିତ ପରିଚିତ ହୋଇଥାଏ । ତାର ସ୍ନେହ, ଶ୍ରଦ୍ଧା, ରାଗ, କ୍ରୋଧ, ଈର୍ଷା, ଅଭିମାନ, ସହାନୁଭୂତି ଆଦି ମାନବିକ ଗୁଣ ବହୁ ପରିମାଣରେ ବିକଶିତ ହୋଇଥାଏ । ମୋଟାମୋଟି କହିବାକୁ ଗଲେ ସେ ବ୍ୟକ୍ତିତ୍ୱର ବିକାଶ ପଥରେ ପଦାର୍ପଣ କରିଥାଏ । ଅର୍ଥାତ୍ ସେ ଗୋଟିଏ କୁନି ମଣିଷ ହୋଇଯାଇଥାଏ, ଆମ ଅଙ୍ଗନବାଡ଼ି, ବାଲବାଡ଼ି ବା ପ୍ରାକ୍-ବିଦ୍ୟାଳୟକୁ ଆସିଲାବେଳକୁ ।

ଶିକ୍ଷକ-ଶିକ୍ଷୟିତ୍ରୀ ଓ ବାପମାଆମାନେ ଗୋଟିଏ ବଡ଼କଥା ମନେ ରଖିବା ଉଚିତ୍ । ଆମେ ଶିଶୁକୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେବା ଏକାନ୍ତ ଆବଶ୍ୟକ । ତା ହେଲେ ଶିଶୁ ସ୍ୱଚ୍ଛନ୍ଦ ଆତ୍ମପ୍ରକାଶ କରେ ଏବଂ ତାର ବ୍ୟକ୍ତିତ୍ୱର ବିକାଶ ଘଟାଇବାରେ ଆମକୁ ସୁଯୋଗ ଓ ସୁବିଧା ମିଳେ । ଶିଶୁକୁ ଏହା ଖରାପ, ତାହା ମନ୍ଦ, ଏପରି କରନାହିଁ, ସେପରି କରିବନି କହି ଶିକ୍ଷାଦେବା ସ୍ପୃହଣୀୟ ନୁହେଁ । ଏହା ଭଲ, ଆସ ଏହିପରି କରିବା ବା ସେହିପରି କରିବା କହି ଶିକ୍ଷାଦେବା ବିଧେୟ । Tit for tat ବା ପ୍ରତିଶୋଧ ଅର୍ଥାତ୍ ବଦଲା ନେବା, ଅନ୍ୟକୁ ଛୋଟ ମନେ କରିବା, ପରସ୍ପରକୁ ଠକିଦେଇ ଚତୁର ବୋଲାଇବା ଆଦି କାର୍ଯ୍ୟକୁ ପିଲାଙ୍କ ଆଗରେ ବାଃ ବାଃ ଦେବା ବା ଏସବୁ ବିଷୟରେ ଗପ କହିବା ଆଦୌ ଉଚିତ ନୁହେଁ । ସେହିପରି ମାରିବା, ହାଣିବା, ଚୋରି କରିବା ଆଦି ବିଷୟରେ

କହିବା ବା ଛବି ଦେଖାଇବା ମଧ୍ୟ ବାଞ୍ଛନୀୟ ନୁହେଁ । ପିଲାଙ୍କୁ ଗପ, ଗୀତ ଓ କାର୍ଯ୍ୟ ମାଧ୍ୟମରେ ସ୍ନେହ, ସହାନୁଭୂତି, ଏକତା ଓ ସାହାସିକତା ସମ୍ବନ୍ଧେ ଧାରଣା ଦେବା ବିଧେୟ । ଶିଶୁ କିଛି ଅନ୍ୟାୟ ବା ଅତିଷ୍ଟ କାର୍ଯ୍ୟକଲେ ତାକୁ ମାରଧର ନକରି, କ୍ରୋଧ ନ ଦେଖାଇ, ତାର ବ୍ୟକ୍ତିତ୍ୱକୁ appeal କଲେ ଅର୍ଥାତ ତାର ମାନସିକସ୍ତରକୁ ସ୍ପର୍ଶ କଲାଭଳି ବୁଝାଇ ପାରିଲେ, ସେ ଉଚିତ ଓ ଅନୁଚିତ କଥାଗୁଡ଼ିକ ହୃଦୟଙ୍ଗମ କରିପାରେ । ଶିଶୁକୁ ମାରଧର କଲେ ବା ତା'ପ୍ରତି କ୍ରୋଧ ପ୍ରକାଶ କଲେ, ତାର ବ୍ୟକ୍ତିତ୍ୱ ବିଦ୍ରୋହ କରେ । ସେ ନିଜକୁ ପ୍ରକାଶ କରେ ନାହିଁ, ତାର inhibition ବା ନିବୃତ୍ତି ଆସିଥାଏ । ସୁତରାଂ ତା ସହିତ ସ୍ନେହ, ଶ୍ରଦ୍ଧା, ସମ୍ମାନ ଓ ବୁଝାମଣାର ସହ ବ୍ୟବହାର କରିବା ଉଚିତ୍ ।

**ଖେଳକୁଦ, ନାଚଗୀତ କାହିଁକି ? :** ଖେଳିଲେ ପିଲାର ଅଙ୍ଗଚାଳନା ହୁଏ । ଶରୀର ଶ୍ରମ ହୁଏ । ସୁତରାଂ ତାର ଶାରୀରିକ ବିକାଶ ଓ ଅଙ୍ଗସୌଷ୍ଠବ ଘଟେ । ପିଲା ଅନ୍ୟମାନଙ୍କ ସହ ମିଶି ଦଳରେ ଖେଳେ । ସହଯୋଗ, ସହନଶୀଳତା, ନିୟମମାନ ଓ ନେତୃତ୍ୱ ନେବା ଆଦି ଆସ୍ତେଆସ୍ତେ ଶିଖେ । ତା'ର ସାମାଜିକ ବିକାଶ ଘଟେ ଏବଂ ପିଲାଟିର ମନରେ ଥିବା ଦୁଃଖ, କ୍ରୋଧ, ଅଭିମାନ ଆଦି ଆବେଗିକ ଅବସ୍ଥାଗୁଡ଼ିକ କ୍ରମଶଃ ହାଲୁକା ହୋଇଯାଏ । ଗୀତ ନାଚରେ ମଧ୍ୟ ସେହିପରି ବିକାଶ ଘଟେ । ପିଲାଟିର ସଂଗୀତ ଓ ଭାଷା ପ୍ରତି ଅଭିରୁଚି ଜାଗ୍ରତ ହୁଏ । ସେ ତାଳ ବା rhythm ଜାଣିପାରେ । ସୁତରାଂ ତାର ଶୃଙ୍ଖଳାଜ୍ଞାନ ବୃଦ୍ଧିପାଏ । ଗପ ଶୁଣିବାରେ ପିଲାର କଳ୍ପନା ଶକ୍ତିର ବିକାଶ ହୁଏ ଓ ଭାଷାଜ୍ଞାନ ବଢେ । ସେ ନିଜକୁ ନିଜର ଭାଷା ଜରିଆରେ ବ୍ୟକ୍ତ କରିବାକୁ ଶିଖେ । ତାର ଶିଖିବା ଓ ମନେରଖିବା ଶକ୍ତି ବଢେ ।

ବାଲିଗଦାରେ ପିଲେ କେତେ ଭଙ୍ଗାଗଢା କରନ୍ତି । ଦେଉଳ କରନ୍ତି, ବଗିଚା କରନ୍ତି ଓ ବୁଲିକରି ନାନା ପ୍ରକାର ରନ୍ଧାରନ୍ଧି କରନ୍ତି । ଦୋକାନ କରି କେତେ ଜିନିଷ ବିକନ୍ତି, କିଣନ୍ତି । ବାଲିଗଦାରେ ଖେଳିଲେ, କାଗଜରେ ରଙ୍ଗ ବୋଳିଲେ ବା ଅଗଣାରେ ଗାରେଇଲେ ବି ମାଟି ଚକଟି କିଛି ଗୋଟେ ତିଆରି କଲେ ଶିଶୁମାନଙ୍କର କଳ୍ପନା ଓ ସୃଜନଶକ୍ତିର ବିକାଶ ଘଟେ । ଆଙ୍ଗୁଠି ଗୁଡିକର ଚଳନା ହୁଏ । ଭବିଷ୍ୟତରେ ଶିଶୁ ନିଜ ହାତରେ କାମ କରିବା ଓ ଲେଖିବାରେ ଆଗେଇ ଯାଏ । କିନ୍ତୁ ଅସଲ କଥା ହେଲା, ଶିଶୁ ନାଚଗୀତ, ଖେଳକୁଦ ଓ ହାତକାମ ଯାହା କରୁ, ଖୁସିରେ କରୁ, ଆନନ୍ଦ ପାଉ । ବାଧ୍ୟକରି ନଚେଇବା, ଖେଳାଇବା ଓ ମାଟି ଚକଟେଇବା ଅନାବଶ୍ୟକ । ଅଙ୍ଗନବାଡ଼ି, ବାଲବାଡ଼ି ବା Pre-school ଶିଶୁମାନଙ୍କ ପ୍ରତି ଆନନ୍ଦଦାୟକ ସ୍ଥଳୀ ହେବା ଆବଶ୍ୟକ । ତା ହେଲେ ସେମାନେ ମନକୁ ମନ କେନ୍ଦ୍ରକୁ ଆସିବେ । ଡାକିବାକୁ ପଡ଼ିବ ନାହିଁ ।

ଦେଖାଯାଉଛି ଯେ ଏହି କେନ୍ଦ୍ରରୁ ଯାଇ ପ୍ରାଥମିକ ସ୍କୁଲଗୁଡିକରେ ଆନୁଷ୍ଠାନିକ ଶିକ୍ଷାରେ ଏହି ଶିଶୁମାନେ ଉତ୍ସାହ କ ଭାବେ ଅଗ୍ରଗତି କରିପାରୁଛନ୍ତି । ଏହାର କାରଣ

ହେଲା, ସେମାନେ ଆଗ୍ରହର ସହ ଓ ନିର୍ଭୟରେ ନିଜକୁ ପ୍ରକାଶ କରିବାରେ ଓ ଆନନ୍ଦରେ ଶିକ୍ଷାଲାଭ କରିବା ଜାଣିଥାନ୍ତି । ସୁତରାଂ ଆନୁଷ୍ଠାନିକ ଶିକ୍ଷାପ୍ରତି ତାଙ୍କର ମାନସିକ ପ୍ରସ୍ତୁତି ଆସିଯାଇଥାଏ । ପ୍ରାଥମିକ ବିଦ୍ୟାଳୟରେ ସେମାନେ ଲେଖାପଢ଼ାରେ ଆଗେଇ ଯାନ୍ତି । ଏଥିପାଇଁ ଏହି ଶିଶୁ-ଶିକ୍ଷାର କାର୍ଯ୍ୟକ୍ରମକୁ school readiness programme ବୋଲି କହନ୍ତି ।

ବାପା-ମାଆମାନେ ଶିଶୁପୁତ୍ର କନ୍ୟାଙ୍କ ସହ ଖେଳନ୍ତୁ, ନାଚନ୍ତୁ, ତାଳି ମାରନ୍ତୁ ଓ ଗୀତ ଗାଆନ୍ତୁ । ବିଶେଷତଃ ପିଲାଙ୍କୁ ଶୁଆଇଦେବା ବେଳେ ସେମାନଙ୍କୁ ଗୀତ ଓ ଗପ ଶୁଣାନ୍ତୁ । ଛୋଟଛୋଟ ଘରକାମରେ ସେମାନଙ୍କର ସାହାଯ୍ୟ ନିଅନ୍ତୁ । ସେମାନଙ୍କର ପ୍ରଶଂସା କରନ୍ତୁ । ଦେଖିବେ, ପିଲାଏ କେତେ ପାରିବାର ଓ ଗୁଣର ହେବେ ।

**ଏପରି ଗୀତବହିଟିର ଆବଶ୍ୟକତା କ'ଣ ? :** ଘଟଣାଟି ଖାଲି ଦୁଃଖଦ ନୁହେଁ, ମର୍ମନ୍ତୁଦ ହେଲେ ମଧ୍ୟ ଆମେ ତାହାକୁ ଆନନ୍ଦର ସହ ଉପଭୋଗ କରୁ । ଆପଣମାନେ ଲକ୍ଷ୍ୟ କରିଥିବେ, କୌଣସି ବିବାହ ବ୍ରତ ବା ସାମାଜିକ ଉତ୍ସବମାନଙ୍କରେ ଛୋଟଛୋଟ ଛୁଆମାନଙ୍କର ମଧ୍ୟ ଅଲଗା ଆସର ଜମେ । ଅନ୍ୟପିଲାମାନେ ତାଳିମାରି ଉପଭୋଗ କରନ୍ତି । ସେଇ ସଙ୍ଗୀତଗୁଡ଼ିକ ହେଲା, Ba Ba Blacksheep, Twinkle twinkle little star, Pussy cat ଇତ୍ୟାଦି । ନହେଲେ କୌଣସି ହିନ୍ଦି ଗୀତ ବା ସିନେମା ଗୀତ । ଓଡ଼ିଆ ଗୀତ କେବେହେଲେ ମଧ୍ୟବିତ୍ତ ପିରବାରର ପିଲାଏଁ ବୋଲିବାର ଆମର କର୍ଣ୍ଣଗୋଚର ହୁଏ ନାହିଁ । ସୁତରାଂ ଏତଦ୍ୱାରା ଆମ ମାତୃଭାଷାର କେବଳ ଅବକ୍ଷୟ ନୁହେଁ, ବିଲୋପ ସାଧନ ହେଉଅଛି ।

ସୁତରାଂ ଆମ ଭାଷାରେ ପିଲାଙ୍କପାଇଁ ଥିବା ପୁରୁଣାଗୀତ ଯଥା ଉଦୁଉଦୁମା, ଇଟିକିଲି ମିଟିକିଲି, ଘୁମୁ ଘୁମୁ ଘୁମୁ ଘୁମୁରେ ପାରା, ଚକଳ ଘାଇଁ ଇତ୍ୟାଦି ପୁରୁଣା ଗୀତ ସାଙ୍ଗରେ କିଛି ନୂଆଗୀତ ପିଲାମାନଙ୍କୁ ଅତି କମ୍ ବୟସରୁ ଶୁଣାଇବାକୁ ହେବ । ଏପରି ଗୀତଗୁଡ଼ିକର ଇଂଲିଶ୍ ମିଡ଼ିୟମ୍ ସ୍କୁଲରେ ପ୍ରଚଳନ କରିବା ମଧ୍ୟ ଅତି ଆବଶ୍ୟକ । ତା ହେଲେ ଭାଷା ଅନେକ ପରିମାଣରେ ବଞ୍ଚି ଯାଇପାରିବ ।

ମା' ବାପା ଓ ଶିକ୍ଷକ ଶିକ୍ଷୟିତ୍ରୀମାନେ ମଧ୍ୟ ପିଲାମାନଙ୍କ ସାଙ୍ଗରେ ମିଶି ଏଇ ଗୀତଗୁଡ଼ିକ ଗାଇପାରିଲେ ଅତି ଉତ୍ତମ ହେବ । ଏଇ ଗୁରୁଜନମାନେ ପଞ୍ଚତନ୍ତ୍ର, ମିତ୍ରଲାଭ, ଟଲଷ୍ଟୟଙ୍କ ଲେଖା, ଏସପ୍ ଆଦିଙ୍କ ଗପରୁ ଗପ ଗୁଡ଼ିଏ ବାଛି ଛୋଟଛୋଟ ଛୁଆମାନଙ୍କୁ ଶୁଣାଇଲେ, ଛୁଆମାନେ ନାନାକଥା ଶିଖିବା ସଙ୍ଗେସଙ୍ଗେ ଭାଷାପ୍ରତି ତାଙ୍କର ଆଗ୍ରହ ଜନ୍ମିବ ଓ ମାତୃଭାଷାରେ ନିଜକୁ ବ୍ୟକ୍ତ କରିବାପାଇଁ ସେମାନେ ଶିକ୍ଷାଲାଭ କରିପାରିବେ ।

ଏହି ବହିଟିରେ rhymes ବା ପଦ୍ୟଗୁଡ଼ିକ ତିନିବର୍ଷରୁ ସାତବର୍ଷ ପିଲାଙ୍କ ପାଇଁ ଲେଖାଯାଇଥିଲେ ମଧ୍ୟ ଛଅବର୍ଷରୁ ଉର୍ଦ୍ଧ୍ୱ ପିଲାଙ୍କପାଇଁ ମାତ୍ର ଅଳ୍ପ କେତୋଟି ପଦ

ଲେଖାଯାଇଛି । ଏଗୁଡ଼ିକ ଯଦିଓ ବୟସକୁ ଚାହିଁ ପର୍ଯ୍ୟାୟକ୍ରମେ ଲେଖାଯାଇଛି, ଶିକ୍ଷକ ଶିକ୍ଷୟିତ୍ରୀ ପିଲାଙ୍କ ବୟସ, ପରିବେଶ ଓ ଆଗ୍ରହ ଦେଖି ଆଗପଛ ବ୍ୟତିକ୍ରମ କରି ପିଲାଙ୍କୁ ଗୀତଗୁଡ଼ିକ ବୋଲାଇ ପାରନ୍ତି । ବହିର ଶେଷ ଆଡ଼କୁ ଥିବା କେତେକ ଗୀତ ପ୍ରାଥମିକସ୍ତରର ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ।

ଆକୃତି, ବଡ଼ସାନ, ବର୍ଣ୍ଣ, ସ୍ୱାଦ, ପରିବେଶ, ଦିଗ, ଚାଲି, ବୋଲି ଓ ନୀତିଶିକ୍ଷା ଆଦିକୁ ଆଧାର କରି ଗୀତଗୁଡ଼ିକ ଲେଖାଯାଇଛି । ତାଛଡ଼ା କେତେକ ପଦ୍ୟ କୌତୁହଳ ଓ ଆନନ୍ଦ ଦେବାପାଇଁ, କେତେକ ରଚନା, ଭାଷା ଓ ବର୍ଣ୍ଣନା ଦିଗରୁ application ବା ପସନ୍ଦ କରିବାରେ ରୁଚି ଜାଗ୍ରତ କରିବା ପାଇଁ ଲେଖାଯାଇଛି । ଏଥିରେ ବହୁତ ପଦ୍ୟ perfect ବା ଆଦର୍ଶ ବା artistic ଅର୍ଥାତ କଳାତ୍ମକ ହେବ ଏପରି ନୁହେଁ । ବୟସ ଅନୁପାତରେ ପିଲାମାନେ ଧାଡ଼ିକରି ବା ଅର୍ଦ୍ଧଗୋଲାକାରରେ ଠିଆହୋଇ, ହାତଗୋଡ଼ ହଲାଇ ବା ଗୋଲାକାରରେ ଗତିକରି ଠିକ୍ ତାଳରେ ଅଭିନୟକଲେ ହେଲା ।

ଶିକ୍ଷକ ଶିକ୍ଷୟିତ୍ରୀ ଓ ପିଲାମାନେ ନିଶ୍ଚୟ ଗୀତଗୁଡ଼ିକ ମୁଖସ୍ଥ କରିବେ । ଆବଶ୍ୟକ ମଣିଲେ ଶିକ୍ଷକ ଶିକ୍ଷୟିତ୍ରୀ ସ୍ଥଳ ବିଶେଷରେ ପଦ୍ୟଗୁଡ଼ିକର ଭାଷା ଓ ବର୍ଣ୍ଣନାରେ ପରିବର୍ତ୍ତନ କରିପାରନ୍ତି । କେତେଗୁଡ଼ିଏ ଅର୍ଥହୀନ ପଦ୍ୟ (nonsense rhymes) ଯେପରିକି 'ଉଦୁଉଦୁମା' 'ଇଟିକିଲି ମିଟିକିଲି' 'ଚଡ଼ର ଚଡ଼ର' ସରର ସାଇଁ ଆଦି ପଦ୍ୟଗୁଡ଼ିକ ଦିଆଯାଇଛି କେବଳ ଶିଶୁମାନଙ୍କୁ ଆନନ୍ଦ ଦେବାପାଇଁ । ଯମକ ଅନୁପ୍ରାସ ଏବଂ onomato-poeic ଶବ୍ଦ ଯଥା "ପାଁ ପାଁ' 'ଧଡ଼ଧାଡ଼୍' 'ସରର୍ ସାଇଁ, 'କାଆ କାଆ' 'କୁଉ କୁଉ' ଶବ୍ଦମାନ ଥିବାରୁ ପିଲାଙ୍କୁ ଭାରି ମଜାଲାଗେ । ପିଲାଏ ବଡ଼ପାଟିରେ ବୋଲିବେ ତାଳି ମାରିବେ ଓ ଖେଳି ପାରିବେ । କେତେଗୁଡ଼ିଏ ଗୀତରେ ଛୋଟଛୋଟ ଗପଟିମାନ ଅଛି ଯଥା - 'ମେଘ ବରଷିଲା ଟୁପୁରୁ ଟୁପୁରୁ', କାଉ ଉଡ଼ିଗଲା ଡାଳକୁ ଡାଳ, 'ବାପାଙ୍କୁ ଧନ୍ୟବାଦ', 'ହାତୀ ଉପରେ କିଏ ବସିଛି' ଆଦି । ଶିକ୍ଷକ ଆଗେ ଏହି ଗପଗୁଡ଼ିକୁ କହି (ବିଶେଷତଃ ଚିତ୍ର ଢରିଆରେ) ପରେ ପଦ୍ୟଟିମାନ ବୋଲାଇଲେ ଆହୁରି ଭଲ । କେତେକ ପଦ୍ୟରେ ବର୍ଷା, ଶୀତ ଓ ଗ୍ରୀଷ୍ମ ଋତୁର ଆଭାସ ଦିଆଯାଇଛି, କେବଳ ଶିଶୁଙ୍କର ପାଗ ପରିବର୍ତ୍ତନର ଅନୁଭୂତି ପ୍ରତି ସଚେତନତା ସୃଷ୍ଟି କରିବା ପାଇଁ । ମାସ ଓ ଋତୁର ନାଁ ଓ ବିଶଦ ବର୍ଣ୍ଣନା ଶିଶୁଙ୍କୁ ପରବର୍ତ୍ତୀ କାଳରେ ଦିଆଯାଇ ପାରିବ । ତଥାପି ଶିକ୍ଷକ ଉପଯୁକ୍ତ ମଣିଲେ ମାସ ଓ ଋତୁ ସମ୍ବନ୍ଧରେ କହିପାରନ୍ତି ।

ଅସଲ କଥା ହେଲା, ଶିକ୍ଷକ-ଶିକ୍ଷୟିତ୍ରୀମାନେ ଶିଶୁମାନଙ୍କ ସଙ୍ଗରେ ନିଜେ ତାଳି ମାରିବେ, ଗାଇବେ, ନାଚିବେ । ବେଙ୍ଗପରି ଡେଇଁବେ, ହାତୀପରି ଚାଲିବେ, କୁକୁର ପରି ଭୁକିବେ ଓ କୋଇଲି ପରି ରାବିବେ । ଏତକ ଖାଲି ବାଧ୍ୟବାଧ୍ୟକତାରେ ନକରି ଶିକ୍ଷକ-ଶିକ୍ଷୟତ୍ରୀମାନେ ଏସବୁ ଖୁସିରେ କରି ଆନନ୍ଦଲାଭ କରିବେ । ତା ହେଲେ

ଯାଇ ପିଲାମାନେ ବେଶି ଖୁସିରେ ଓ ସରସତାର ସହ ପଦ୍ୟଗୁଡ଼ିକ ବୋଲି, ନାଚି, ତାଳିମାରି ଆନନ୍ଦର ସହ ନିଜକୁ ପ୍ରକାଶ କରି ଜୀବନକୁ ଉପଭୋଗ କରିବେ । ସେମାନଙ୍କର ଶାରୀରିକ, ବୌଦ୍ଧିକ ଓ ସାମାଜିକ ବିକାଶ ସଙ୍ଗେସଙ୍ଗେ ମାନସିକ ଆବେଗର ଲାଘବ ଘଟିବ ଏବଂ ଏହି ମୁହୂର୍ତ୍ତଗୁଡିକ ତାଙ୍କ ପରବର୍ତ୍ତୀ ଜୀବନରେ କେବଳ ଯେ ମଧୁର ସ୍ମୃତିରୂପେ ରହିଯିବ ତାହା ନୁହେଁ, ସେମାନଙ୍କ ପରିବର୍ତ୍ତୀ ଜୀବନକୁ ସରସ ଓ ଶୃଙ୍ଖଳିତ କରିବାରେ ଶିଶୁ ଜୀବନର ଏହି ଅଭିଜ୍ଞତା ସ୍ଥାୟୀ ପ୍ରଭାବ ବିସ୍ତାର କରିବ ।

ଶିକ୍ଷକ ଶିକ୍ଷୟିତ୍ରୀ ଓ ବାପା ମାଆମାନେ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ଏହି ପଦ୍ୟଗୁଡ଼ିକରେ କିଛି ଅସଙ୍ଗତି ଥିବାର ଦେଖିଲେ ବା ଏହିପରି ପଦ୍ୟଗୁଡ଼ିକର ଗୁଣାତ୍ମକ ମାନର ଉନ୍ନତି ପାଇଁ କିଛି ପରାମର୍ଶ ଦେବାର ଅନୁଭବ କଲେ, ଦୟାକରି ମୋ ସହିତ ପତ୍ରାଳାପ କରିବାକୁ ଅନୁରୋଧ । ବାପା ମାଆ ଓ ଶିକ୍ଷକ-ଶିକ୍ଷୟିତ୍ରୀମାନେ କୌଣସି ଆଞ୍ଚଳିକ ବା କଥିତ ଭାଷାରେ କିଛି ଗୀତ ଜାଣିଥିଲେ ବା ରଚନାକରି ପାରିଲେ ମୋ ପାଖକୁ ଅନୁଗ୍ରହ କରି ପଠାଇବେ ।

ଭୁବନେଶ୍ୱର ସ୍ୱେଚ୍ଛସେବୀ ଅନୁଷ୍ଠାନ ପିପୁଲସ୍ ଡେଭେଲପ୍‌ମେଣ୍ଟ କମ୍ୟୁନିକେସନ (ପି.ଡି.ସି) ଏ ବହିଟିର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ । ଏ ବହିଟିର ମୁଦ୍ରଣ କାର୍ଯ୍ୟରେ ସାହାଯ୍ୟ କରିଥିବାରୁ ଗାଳ୍ପିକ ଓ ନାଟ୍ୟକାର ଆନନ୍ଦ ଚନ୍ଦ୍ର ପହିଙ୍କୁ ମୋର ଧନ୍ୟବାଦ ।

## ଗଳ୍ପ କଥନ

*ପ୍ରାକ୍ ପ୍ରାଥମିକ ଶିକ୍ଷାର ଏକ ବଡ଼ଅଙ୍ଗ ହେଲା ଗଳ୍ପକଥନ । ଇନ୍ଦୁସାର୍ ଏ ସଂପର୍କରେ ଯାହାକହି ଯାଇଛନ୍ତି, ତାକୁ ବଢ଼େଇ କରି ଆଉ କିଛି କହିବା ସମ୍ଭବ ନୁହଁ ।*

## ଇନ୍ଦୁସାର୍‌ଙ୍କ ନିଜଲେଖା -୨

*ସେ ଗଳ୍ପକଥନ ସଂପର୍କରେ କ'ଣ କହିଚନ୍ତି ଜାଣିବାପାଇଁ ତାଙ୍କର ଏହି ତଳ ଲେଖାଟି ପଢ଼ିବା । ଲେଖାଟି ନିଆଯାଇଛି "ଆସରେ ପିଲାଏ ଶୁଣିବା ଗପ" ବହିରୁ ।*

## ପିଲାଙ୍କୁ ଗପ କହିବା କାହିଁକି ଓ କିପରି ?

ଆମ ପିଲାଦିନେ ମାଆ, ଜେଜେମାଆ ଓ ଶିକ୍ଷକଙ୍କଠାରୁ ମନଧ୍ୟାନ ଦେଇ କେତେ ଗପ ଶୁଣିଛୁ । ପିଲାଙ୍କୁ ଗପ ଶୁଣିବାକୁ ମଜାଲାଗେ । ସେମାନେ ବହୁତ ଆନନ୍ଦ ପାଆନ୍ତି । ଗପ କହିଲେ ପିଲାଏ ପାଖ ଛାଡ଼ିବେ ନାହିଁ, ଗପ ଶୁଣିବାକୁ ପିଲାଏ ବାଇ ।

ପିଲାଏ ଏକ ଲୟରେ ଗପ ଶୁଣିବା ଦ୍ୱାରା ତାଙ୍କର ମନଯୋଗିତା ବୃଦ୍ଧିପାଏ । ଶୁଣିବାର ଅଭ୍ୟାସ ବଢ଼େ । ଶ୍ରବଣ ଇନ୍ଦ୍ରିୟ ଦକ୍ଷତା ଲାଭ କରେ । ପିଲାଙ୍କର କଳ୍ପନା

ଶକ୍ତିର ବିକାଶ ଘଟେ । ସେ ନଦୀ, ପାହାଡ଼, ପର୍ବତ, ଜଂଗଲ, ମେଘ ଓ ନାନାପ୍ରକାର ଜୀବଜନ୍ତୁର କଥା ଶୁଣିଲାବେଳେ ସେଗୁଡ଼ିକ ତା ମନରେ ଆଙ୍କି ହୋଇଯାଏ । କୌଣସି ଅଚିହ୍ନା ଦୃଶ୍ୟ, ପ୍ରାଣୀ ବା ବସ୍ତୁର ବର୍ଣ୍ଣନା ଶୁଣି ମଧ ସେ ତା ମନରେ କିଛି ଗୋଟିଏ କଳ୍ପନା କରିନିଏ ଯେପରିକି ରାଜା, ପରୀ, ଦେବତା, ଅସୁର, ଜଂଗଲ, ବାଘ, ଭାଲୁ, ଦିମୁଣ୍ଡିଆ ପକ୍ଷୀ, ଦଶମୁଣ୍ଡିଆ ରାବଣ ଆଦି । ଗପ ଶୁଣିବା ଦ୍ୱାରା ତାର ଭାଷା ଜ୍ଞାନ ବଢ଼େ । ଉତ୍ତମ ଓ ସାବଲୀଳ ଭାଷା ପ୍ରତି ଅଭିରୁଚି ଜାଗ୍ରତ ହୁଏ । ଗପଟିଏ କହିବାକୁ ଯାଇ ସେ କ୍ରମାନୁଯାୟୀ ଉପଯୁକ୍ତ ଭାଷାରେ ନିଜକୁ ବ୍ୟକ୍ତ କରିବାକୁ ଶିଖେ । କଳ୍ପନାଶକ୍ତିର ବିକାଶ ଶିଶୁର ସୃଜନଶକ୍ତିର ବିକାଶରେ ସାହାଯ୍ୟ କରେ । ପରବର୍ତ୍ତୀକାଳରେ ସେ ଲେଖକ, କବି, ଚିତ୍ରକର, ଅଭିନେତା ହେବାର ପ୍ରଭାବ ଅର୍ଜନ କରିପାରେ । ତାର ବ୍ୟକ୍ତିତ୍ୱର ବହୁମୁଖୀ ବିକାଶ ଘଟେ ।

ପିଲାଏ ପଶୁପକ୍ଷୀ, ବୃକ୍ଷଲତା, ଫୁଲଫଳ, ନଦୀ, ପର୍ବତ ଓ କଣ୍ଢେଇ ଆଦିକୁ ନେଇ କୁହାଯିବା ଗପକୁ ବେଶି ଭଲପାଆନ୍ତି । ଗଛ, ଫୁଲ, ଠେକୁଆ, ବିଲୁଆ, କୁଆ, କୋଇଲି କଥାବାର୍ତ୍ତା କରିବା ଏବଂ ସୁଖ ଦୁଃଖରେ ଗୋଟିଏ ସମାଜରେ ସଂଘର୍ଷ ବା ସଂହତିର ସହ ପଶୁ, ପକ୍ଷୀ ଓ ମଣିଷ ଚଳିବାକୁ ପିଲାମାନେ ସ୍ୱାଭାବିକ ଭାବେ ବିଶ୍ୱାସ କରିଯାଆନ୍ତି । ଏହିସବୁ ଦୃଷ୍ଟିରୁ ପଞ୍ଚତନ୍ତ୍ର ଗପ, ଏ ଗପ ଓ ଟଲଷ୍ଟୟଙ୍କ ଲିଖିତ ଗପଗୁଡ଼ିକ ପୃଥିବୀର ସବୁ ଶ୍ରେଣୀର ପିଲାଙ୍କ ପାଇଁ ଚିରକାଳ ଉପାଦେୟ ହୋଇ ରହିଥିବ ।

କିନ୍ତୁ ଗପରେ ମାରିବା, ପିଟିବା, ଠକିବା, ଡରେଇବା, ଘୃଣା, ଯେସାକୁ ତେସା, ହିଂସା, ଇର୍ଷା ଆଦିର ଚିତ୍ରଣ ନ ରହିବା ଉଚିତ । ଏହି ଅସାମାଜିକ ଗୁଣମାନ ଶିଶୁମନରେ କୁପ୍ରଭାବ ପକାଇପାରେ । କେବେ contrast ପ୍ରତିପାଦନ ପାଇଁ ଏହି କୁଅବସ୍ଥା ଏବଂ ଏହାର ସୁଧାର ଅତି ଚତୁରତା ଓ ସତର୍କତାର ସହ ବେଳେବେଳେ ଦିଆଯାଇପାରେ । କିନ୍ତୁ ଆମର ସବୁବେଳେ ଗୋଟିଏ positive approach ପ୍ରତି ଲକ୍ଷ୍ୟ ରହିବା ଉଚିତ । କଣ କଲେ ଆମର ମଂଗଳ ହେବ ବା ଭଲହେବ ସେହି କଥା ଗପରୁ ପିଲା ହୃଦୟଙ୍ଗମ କରିବେ । ପିଲାଙ୍କୁ ଯଦି ଅକାର୍ଯ୍ୟର ତାଲିକା ଗୋଟିଏ ଘୋଷାଇବା ବା ଏହା କରନାହିଁ ତା କରନାହିଁ ବୋଲି କହିବା ତାହାହେଲେ ପିଲାଏ ସେହିକଥା କେଉଁବାଟରେ ହେଲେ କରିବେ । ସୁତରାଂ negative approachରୁ ଆମେ ଯେତେଦୂର ପାରିବା ଦୂରେଇ ରଖିବା । କିନ୍ତୁ ଠେକୁଆ ସିଂହକୁ ମରାଇ ଦେଇ ପାରିଲା । ଏହାଦ୍ୱାରା ତାର ବୁଦ୍ଧି ଓ ସାହସ ପ୍ରକାଶ ପାଇଲା ଏବଂ ସେ ପଶୁ ସମାଜର କଲ୍ୟାଣ କଲା । ଏହିପରି ଭଲକଥା ଗୁଡ଼ିଏ ପିଲାଏ ଗପ ମାଧମରେ ଶିଖିପାରିବେ ।

ଗଳ୍ପଗୁଡ଼ିକ ଛୋଟ ହେବା ଦରକାର ଏବଂ ସେଥିରେ ଚରିତ୍ରମାନଙ୍କ ସଂଖ୍ୟା କମ୍ ହେବା ଦରକାର । ଶିକ୍ଷକ, ଶିକ୍ଷୟିତ୍ରୀ ଛନ୍ଦିମନ୍ଦି ନହୋଇ କ୍ରମାନୁସାରେ ସରଳ ଭାଷାରେ ଗଳ୍ପଟି କହିବେ ।

୧. **ଗପଟିଏ କହିବା କେମିତି ? :** ଗପଟିଏ ସାଧାରଣତଃ ଆମେ କଥାରେ କହୁ । ପିଲାମାନଙ୍କୁ କହିଲାବେଳେ ବଡ଼ପାଟିରେ ଏବଂ ସ୍ୱରକୁ ଉଠାଇ ପକାଇ କହିଲେ ପିଲାମାନେ ଆକୃଷ୍ଟ ହେବେ । ପଶୁପକ୍ଷୀମାନଙ୍କର ରାବିବା, ବୋବାଇବା ଓ ଚାଲିବାର ଅଭିନୟ ଆବଶ୍ୟକ ସ୍ଥଳେ କରିବାକୁ ହେବ । ଗଳ୍ପ କଥନକାରୀ ପଶୁପକ୍ଷୀଙ୍କ ଚାଲି, ବୋଲି ଏବଂ ମଣିଷର ସୁଖ ଦୁଃଖ ସମୟରେ ଭାବଭଂଗୀର ଅଭିନୟ କଲେ ଗଳ୍ପଟି ଅଧିକ ହୃଦୟଗ୍ରାହୀ ହେବ । ପିଲାମାନେ ଯଥା ସମୟରେ ପ୍ରାଣୀଙ୍କର ସ୍ୱର ଅନୁକରଣ କରି ଆନନ୍ଦଲାଭ କରିବେ । ଗଳ୍ପ-କଥନ ଶିକ୍ଷୟିତ୍ରୀ ଓ ଶିକ୍ଷକ ଅଭିନୟକୁ ଟିକିଏ ଅତିରଞ୍ଜିତ କରିବାକୁ ଚେଷ୍ଟା କରିବେ ।

୨. **ଚିତ୍ର ସାହାଯ୍ୟରେ ଗଳ୍ପ କଥନ :** ଗୁଡ଼ିଆ ହୋଇଥବା ଚିତ୍ରଗୁଡ଼ିକ ଗୋଟିଏ ଗୋଟିଏ ଚିତ୍ର ଖୋଲି ଗଳ୍ପ କୁହାଯିବା ପ୍ରଣାଳୀ ଅନେକ ଜାଣନ୍ତି । କିନ୍ତୁ ଫ୍ଲାସ୍ କାର୍ଡ଼ ସାହାଯ୍ୟରେ ଗଳ୍ପ କହିବା ଆହୁରି ସହଜ । ଚିତ୍ରପଟ ହେଉ ବା ଫ୍ଲାସ୍‌କାର୍ଡ଼ ହେଉ, ଅତିବେଶିରେ ୭-୮ଟି ଚିତ୍ର ଯଥେଷ୍ଟ । ଖଦୀଗ୍ରାଫ୍ ଛବି ସାହାଯ୍ୟରେ ଗଳ୍ପ କହିଲେ ଆହୁରି ମଜା ଲାଗିବ । ଏଥିରେ ପରଦାରେ ଚିତ୍ରଗୁଡ଼ିକ ନାଟକୀୟ ଢଙ୍ଗରେ ଗୋଟିଏ ପରେ ଗୋଟିଏ ବାହାରି ତାଙ୍କ କଥା କହି ଚାଲି ଯାଉଥିବେ । ଏହିପ୍ରକାର ଛବି ଅତି ଅଳ୍ପଖର୍ଚ୍ଚରେ ଶିକ୍ଷୟିତ୍ରୀମାନେ ପ୍ରସ୍ତୁତ କରିପାରିବେ ।

୩. **ଗୀତ ମାଧ୍ୟମରେ ଗଳ୍ପକଥନ :** ଛୋଟିଆ ଗୀତଟିରେ ଗପଟିଏ କୁହାଯାଇପାରିବ । ଦୁଇତିନି ପାଦ ଗୀତ ହେଲେ ହେଲା । ପିଲାଏଁ ଗୀତଟି ବୋଲି ଗପଟି ମନେରଖିବେ । ଶିକ୍ଷକ ଗୀତଟି ପିଲାଙ୍କୁ ଶିଖାଇବେ ।

ଉଦାହରଣ - ("ଆସରେ ପିଲେ ଗାଇବା ଗୀତ" ବହିର "ଥିଲା ଏକ ଠେକୁଆ" ମେଘ ବରଷିଲା ଟୁପୁରୁ ଟୁପୁରୁ" "ଗୋଟିଏ ବୁଢ଼ା ଗୋଟିଏ ବୁଢ଼ୀ" ଆଦି ଗୀତ)

୪. **ଅଭିନୟ ବା ନାଟକ ସାହାଯ୍ୟରେ :** ଗପଟିଏ ନାଟକ ଆକାରରେ ପିଲାମାନେ ମିଳିମିଶି ଅଭିନୟ କରିବେ ।

ପିଲାଏ ପଶୁପକ୍ଷୀ, ଗଛଲତା, ଫୁଲଫଳ, ଭାଇଭଉଣୀ ଆଦି ଚରିତ୍ରରେ ଅଭିନୟ କରିବେ । ଆଙ୍ଗୁଠି, କଣ୍ଢେଇ, ବାଡ଼ି କଣ୍ଢେଇ ଓ ହାତ କଣ୍ଢେଇ ସାହାଯ୍ୟରେ ଗପଟିକୁ ମଧ୍ୟ ନାଟକ ରୂପରେ ପରିଣତ କରାଯାଇପାରିବ । ପିଲାଏ ଭିନ୍ନଭିନ୍ନ କଣ୍ଢେଇଧରି ସେହି ଚରିତ୍ରର ଅଭିନୟ କରିବେ । ତଦ୍ୱାରା ସେମାନେ ନିଜକୁ ନିର୍ଦ୍ଦିଷ୍ଟ ଚରିତ୍ରର ସ୍ଥାନରେ ରଖି ନିଜ ଭାଷାରେ ତାର କଥାଗୁଡ଼ିକ ବ୍ୟକ୍ତ କରିବେ । ପିଲାଙ୍କର କଳ୍ପନା ଶକ୍ତି, ଭାଷାଜ୍ଞାନ ଓ ସର୍ବୋପରି ବ୍ୟକ୍ତିତ୍ୱର ବିକାଶ ଘଟିବ ।

କଥାହେଲା, ଗପଟିକୁ କେଉଁ ମାଧ୍ୟମରେ କୁହାଗଲେ ସରସ ହେବ ତାହା ଶିକ୍ଷକ ଶିକ୍ଷୟିତ୍ରୀ ନିର୍ଦ୍ଧାରଣ କରି ତଦନୁଯାୟୀ ପ୍ରସ୍ତୁତ ହେବେ । ଆହୁରି ଅସଲ କଥା

ହେଲା, ଶିକ୍ଷକ କଥା କହିଲାବେଳେ ନିଜେ ମଜିଯିବେ । ପିଲାଙ୍କ ସଂଗେ ପିଲା ହୋଇ ଆନନ୍ଦଲାଭ କରିବେ ଏବଂ ନିଜେ ବିଶ୍ୱାସ ରଖିବେ ଯେ ଗଳ୍ପଟିଏ ଶୁଣାଇ ଓ କୁହାଇ ସେ ଶିଶୁର ବିକାଶ ଦିଗରେ ସାହାଯ୍ୟ କରୁଛନ୍ତି ।

## ଇନ୍ଦୁସାର୍‌ଙ୍କ ନିଜଲେଖା – ୩

ଇନ୍ଦୁସାର୍‌ଙ୍କ ଶିକ୍ଷା ସମ୍ବନ୍ଧୀୟ ଶେଷଲେଖାଟି ସରକାରଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଲେଖାଟି ଥିଲା ଏହିପ୍ରକାରର –

## ସରକାରଙ୍କୁ ପ୍ରସ୍ତାବ

## ପିଲାଏଁ ପାଠ ପଢ଼ିବେ କାହିଁକି ଓ କେମିତି

Education Starts from where we are. Where are we ?

**ଆମେ କେଉଁଠି ଅଛୁ ? :** ସ୍କୁଲ ଥିଲେ ଘର ନାହିଁ, ଘର ଥିଲେ ପିଲେ ନାହାଁନ୍ତି । ପିଲେ ଥିଲେ ମାଷ୍ଟ୍ରେ ନାହାଁନ୍ତି । ଏହିପରି ଅଧେ ଅଛି, ଅଧେ ନାହିଁରେ ଆମେ ଚାଲିଛୁ । ଠିକ୍ ସମୟରେ ବହି ଛପା ହୋଇପାରୁ ନାହିଁ, ପୁଣି ବହି ସବୁ ସ୍କୁଲରେ ପହଞ୍ଚୁ ପହଞ୍ଚୁ ଛଅ ଆଠ ମାସ ଲାଗିଯାଉଛି ।

**ପିଲାମାନେ ସ୍କୁଲକୁ ଯାଉନାହାଁନ୍ତି ଏବଂ ଅଧାରୁ ପାଠ ଛାଡୁଛନ୍ତି କାହିଁକି ?**

**ପିଲେ ପାଠ ନ ପଢ଼ିବାର ପ୍ରଥମ କାରଣ :** ନିଶାପାନକୁ ସରକାର ବାଧ୍ୟତାମୂଳକ କଲାପରି ଜଣାଯାଏ । ସରକାର ଭାବିଲେ ବାପାମାନେ ମଦ୍ୟପାନ କଲେ ପଇସା ମିଳିବ ଏବଂ ସେଇ ପଇସାରେ ପିଲେ ପାଠ ପଢ଼ିବେ । କିନ୍ତୁ ଫଳ ହେଲା ଓଲଟା । ଦେଖାଗଲା, ଗରିବ ଶ୍ରେଣୀର ଲୋକେ ଦେଶୀମଦ ପ୍ରତି ବେଶି ଆସକ୍ତ ହେଲେ । ଘରେ ସ୍ତ୍ରୀ ପିଲାଙ୍କୁ ପିଟାପିଟି କଲେ । ଘରେ ଥିବା ବାସନକୁସନ ଦି'ଖଣ୍ଡ ବିକିଦେଲେ । ତା' ପିଲେ ପାଠ ପଢ଼ିବେ କେମିତି ? ସେମାନେ ପରଘରେ ବେଠି ଖଟିଲେ, ଗାଈଗୋରୁ ଜଗିଲେ ଓ ଗଣ୍ଡେ ଖାଇବାକୁ ପାଇଲେ, ନହେଲେ ଭୋକ ଉପାସରେ କଷ୍ଟ ପାଇଲେ ।

ବ୍ରିଟିଶ ଅମଳରେ ଆମେ ନିଶାସେବନ ବିରୁଦ୍ଧରେ କେତେ ପିକେଟିଂ ଓ ଅସହଯୋଗ ଆନ୍ଦୋଳନ କରୁଥିଲୁ । ଏବେ ସେହି ଅବକାରୀ ପ୍ରଚଳନ କଲୁ ସ୍ୱାଧୀନ ଭାରତରେ କେତେଟା ଟଙ୍କା ପାଇଁ । ଏବେ ମଧ୍ୟ ମଦ୍ୟପାନ ବିରୁଦ୍ଧରେ ଓଡ଼ିଶାର ଚାରିଆଡ଼େ ବିଶେଷକରି ମହିଳାମାନେ ପ୍ରବଳ ଆନ୍ଦୋଳନ କରୁଛନ୍ତି । କିନ୍ତୁ ଆମ ସରକାର ସେସବୁ ଆନ୍ଦୋଳନକୁ କର୍ଣ୍ଣପାତ କରୁନାହାଁନ୍ତି, କି ବିଡ଼ମ୍ବନା !

ବ୍ରିଟିଶ ଅମଳରେ ବୋଧହୁଏ, ୧୯୩୬ ମସିହାରେ କଲେକ୍ଟରଙ୍କ ଗୋଟିଏ ସର୍କୁଲାରରେ ପୁରୀ ସଦର ଅଞ୍ଚଳରେ ହରିଜନ ଭାଇମାନେ ଖଜୁରି ତାଡ଼ି ପିଇବା ବନ୍ଦ

କରିଦେଲେ । ସେଇଦିନଠାରୁ ସେମାନେ ଯଥେଷ୍ଟ ଭଲରେ ଚଳୁଛନ୍ତି । ସରକାର ଆମକୁ ପଚାରନ୍ତୁ, ଆମେ ଅର୍ଥାଗମର ବହୁ ଉପାୟ ବତାଇଦେବୁ । ସରକାର ଦୃଢ଼ହସ୍ତରେ ନିଶାପାନ ଦମନ କରନ୍ତୁ ।

**ପିଲେ ପାଠ ନ ପଢ଼ିବାର ଦ୍ୱିତୀୟ କାରଣ :** ଦୀନା ରାଉତ, ଘରେ ଭାତ ନାହିଁ କୁଟୁମ୍ବ ବହୁତ । ଥରେ ମୁଁ ଝାରପଡ଼ାରୁ ରିକ୍ସାରେ ଘରକୁ ଆସୁଥିଲି । ବାଟରେ ରିକ୍ସାବାଲା ସଂଗେ ଦୁଃଖ ସୁଖ ହେଲି । ତା'ର ଚାରୋଟି ପୁଅ, ଗୋଟିଏ ଝିଅ । ଆସୁଆସୁ ବାଟରେ ସେ ଗୋଟିଏ ସ୍କୁଟର ମରାମତି ଦୋକାନ ଆଗରେ ଅଟକିଲା । ଗୋଟିଏ ନଅଦଶ ବର୍ଷର ବାଳକ ସେଇ ଦୋକାନରୁ ଆସି ରିକ୍ସାବାଲା ସଂଗେ କ'ଣ କଥାବାର୍ତ୍ତା ହେଲା । ବୁଝିଲି ଯେ ପିଲାଟି ରିକ୍ସାବାଲାର ପୁଅ, ସେ ଦୋକାନରେ କାମକରେ । ବକତେ ଖାଇବାକୁ ପାଏ ଓ ଦିନକୁ ମଜୁରି ପାଏ ଅଢ଼େଇ ଟଙ୍କା । ଅବଶ୍ୟ ଉଦାହରଣଟି ପ୍ରାୟ ଆଠ ନଅ ବର୍ଷ ତଳର ।

ସରକାର ଜନସଂଖ୍ୟା ନିୟନ୍ତ୍ରଣ ପାଇଁ କିଛି କଲେନାହିଁ, ତାରି ଫଳ ଏ ଦେଶ ଭୋଗୁଛି । ମୋ ମତରେ ଯେଉଁ ଲୋକର ଦୁଇଟି ସନ୍ତାନରୁ ଅଧିକ ଥିବ ତାର ଭୋଟ ଅଧିକାର, ଚାକିରି କରିବାର ଅଧିକାର, ବି.ପି.ଏଲ୍. ସୁବିଧା, ଇନ୍ଦିରାଆବାସ ଆଦି ପାଇବାରୁ ବଞ୍ଚିତ କରାଯାଉ ।

**ପିଲେ ପାଠ ନ ପଢ଼ିବାର ତୃତୀୟ କାରଣ :** ଥରେ ଗୋଟିଏ ରିକ୍ସାରେ ବସି ମୁଁ ପାଖ ଗାଁ ହାଟରୁ ସତ୍ୟଭାମାପୁର କସ୍ତୁରବା ଗାନ୍ଧୀ ଜାତୀୟ ସେବାକେନ୍ଦ୍ରକୁ ଯାଉଥିଲି । ବାଟରେ ରିକ୍ସାବାଲା ସାଂଗେ ଦୁଃଖ ସୁଖ ହେଲି । ତାର ଦୁଇଟି ପୁଅ ଓ ଗୋଟିଏ ଝିଅ । ସେ ବଡ଼ ପୁଅ ପାଇଁ ବହୁତ ବ୍ୟସ୍ତ । ସେ କହିଲା ଯେ ୧୦ହଜାର ଟଙ୍କା ସେ କେଉଁଠୁ ପାଇବ ଯେ, ସେତକ ହାତଗୁଞ୍ଜା ଦେଲେ ତାର ପୁଅକୁ ପିଅନ ଚାକିରି ମିଳିଯିବ । ଏହିକଥାକୁ ସେ ବିକଳ ହୋଇ ବାରମ୍ବାର କହିଲା । ପଚାରି ବୁଝିଲି ଯେ, ତାର ପୁଅଟି ମେଟ୍ରିକ୍ ପାସ୍ କରିଛି । ସ୍କୁଲକୁ ଯାଉନାହିଁ, ରିକ୍ସା ଟାଣୁନାହିଁ, ବାପ ବେକରେ ଓହଳିଛି । ଆରପୁଅଟି ଟ୍ରକ୍‌ରେ ଖଲାସି କାମ କରୁଛି । କିଛି ପାଠ ପଢ଼ିନି । ଦିନକୁ ପାଉଛି ୪୦/୫୦ଟଙ୍କା ।

ଥରେ ଭୁବନେଶ୍ୱର ସହରରେ ଗୋଟିଏ ଉଚ୍ଚ-ପ୍ରାଥମିକ ବିଦ୍ୟାଳୟରେ ଗୁରୁଜୀ ଓ ଛାତ୍ରମାନେ ମିଶି ଘର ଓଳାଇବା, ବଗିଚା କରିବା କାମ ଆରମ୍ଭ କରିଦେଲେ । ସାଇର ବହୁ ଭଦ୍ରଲୋକ ଗାଡ଼ି ମଟରରେ ଆସି ଜମା ହୋଇଗଲେ ସ୍କୁଲରେ । ପ୍ରଧାନ ଗୁରୁଜୀଙ୍କୁ ନାନା ଅସଭ୍ୟ ଭାଷାରେ ଗାଳିଦେଇ କହିଲେ ଯେ ସେମାନେ ଘରେ ପିଲାଙ୍କୁ ପାଣି ଗ୍ଲାସେ ଧରେଇ ଦେଇନାହାଁନ୍ତି । ସ୍କୁଲରେ ସେମାନଙ୍କୁ ଘର ଝାଡୁ କରିବା ଓ ସ୍କୁଲ ହତାରେ କାମ କରିବାରେ ଲଗାଯିବା ସେମାନଙ୍କର ଅସହ୍ୟ । ଯାହାହେଉ, ପଢ଼ିଶାର

ଜଣେ ଦି'ଜଣ ଭଦ୍ରଲୋକ ଅଭିଭାବକମାନଙ୍କୁ ବୁଝାସୁଝା କରି ବହୁତ କଷ୍ଟରେ ବିଦାକଲେ । କିନ୍ତୁ ଅଭିଭାବକମାନେ ଗୁରୁଜୀଙ୍କ ନାଁରେ ଉପରକୁ ଲେଖିଲେ ଓ ପ୍ରଧାନ ଗୁରୁଜୀଙ୍କୁ ଏକ୍ସପ୍ଲାନେସନ୍ ଦେବାକୁ ପଡ଼ିଲା ।

ଏକଦା ମୁଁ +୨ ସ୍ତରରେ ୱାର୍କ ଏକ୍ସପେରିଏନ୍ସ ପାଇଁ ସିଲାବସ୍ ତିଆରି କରିବା କମିଟିରେ ଜଣେ ସଭ୍ୟ ଥିଲି । ସମୁଦାୟ ସଭ୍ୟଙ୍କ ସଂଖ୍ୟା ଥିଲା ବୋଧହୁଏ ୬-୭ଜଣ । ସେଥିରେ ଜଣେ ବଡ଼ ସରକାରୀ ମହିଳା କଲେଜର ମହିଳା ପ୍ରିନ୍ସପାଲ୍ ମଧ୍ୟ ସଭ୍ୟା ଥିଲେ । ମୁଁ କହିଲି ଛାତ୍ରଛାତ୍ରୀମାନେ ପ୍ରଥମେ ଘର କାମରେ ବାପା, ମାଆଙ୍କୁ ସାହାଯ୍ୟ କରନ୍ତୁ ଏବଂ କଲେଜରେ ସଫେଇ, ବାଡ଼ବୁଜା, ବଗିଚାକାମ ଏବଂ ଛୋଟଛୋଟ ଘର ମରାମତି କରନ୍ତୁ । ଏସବୁ କିପରି ସଂଗଠିତ କରି କରିବାକୁ ହେବ ବୁଝାଇଦେଲି ଏବଂ କହିଲି ଯେ ଶିକ୍ଷକ, ଶିକ୍ଷୟିତ୍ରୀମାନେ ଆଗଭର ହୋଇ ଛାଞ୍ଚୁଣିମୁଠା ଆଉ କୋଡ଼ି, କୋଦାଳ-ଧରିଲେ ଯାଇ ଛାତ୍ରୀମାନେ ଧରିବେ । ଏକଥା ଶୁଣି ପ୍ରିନ୍ସପାଲ ମହୋଦୟା କହିଲେ ଯେ, ତାହା ଆଦୌ ସମ୍ଭବ ନୁହେଁ । ସେ କହିଲେ ଯେ, ତାଙ୍କର ଲେକ୍‌ଚର (ମହିଳା)ମାନେ କହନ୍ତି ଯେ ସେମାନେ ସବୁ ଗେଜେଟେଡ୍ ଅଫିସର । ସେମାନେ ହାଜିରାଖାତାରେ ଦସ୍ତଖତ କରନ୍ତି ନାହିଁ । କେତେବେଳେ ଆସନ୍ତି, କେତେବେଳେ ଯାଆନ୍ତି ସେ (ପ୍ରିନ୍ସପାଲ) ଜାଣିପାରନ୍ତି ନାହିଁ । ସେମାନେ ପୁଣି ଛାଞ୍ଚୁଣିମୁଠା ଧରିବେ ? ଅସମ୍ଭବ ।

ମୁଁ କହିଲି, ତାହାଲେ ଏ ଦେଶରେ କିଛି ହେବନାହିଁ ଏବଂ ସେହିଦିନଠାରୁ ମୁଁ ଆଉ ସେ ମିଟିଂରେ ଯୋଗଦେଲିନାହିଁ । ଆପଣ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ, ମୋତେ ଜଣେ ଭଦ୍ରଲୋକ କହିଲେ କୋରାପୁଟ ଜିଲ୍ଲାରେ ଏପରି କେତେ ଗାଁ ଅଛି, ଯେଉଁଠି ଗାଁଲୋକେ ମାଷ୍ଟ୍ରଙ୍କୁ ଲାଞ୍ଚ ଦିଅନ୍ତି, ଗାଁ ସ୍କୁଲକୁ ନ ଯିବା ପାଇଁ । ମାଷ୍ଟ୍ରେ ରହନ୍ତି ଜୟପୁର ସହରରେ । ହାଟପାଳିକୁ ଗାଁହାଟକୁ ଯାଇ ବୋଝେ ବୋଝେ ପନିପରିବା ଗାଁ ଲୋକଙ୍କଠୁ ଆଣି ଘରକୁ ଫେରନ୍ତି । ସାତଦିନ ତାଙ୍କର ପରିବା ଖର୍ଚ୍ଚ ଚଳିଯାଏ । କଥାହେଲା, ଏଇ ଗାଁର ଲୋକେ ହେଲେ ପ୍ରଥମ ଶ୍ରେଣୀର ଚାଷୀ । ବର୍ଷକ ଯାକ ଶସ୍ୟ ଓ ପନିପରିବା ଉତ୍ପାଦନରେ ଲାଗିଯାଆନ୍ତି । ପିଲାମାନେ ତାଙ୍କୁ ଚାଷକାମରେ ବହୁତ ସାହାଯ୍ୟ କରନ୍ତି । ପାଠ ପଢ଼ିଲେ ସେମାନେ ଆଉ କ'ଣ କାମ କରିବେ ? କଥାଟି ମୁଁ ଶୁଣିଥିଲି ପ୍ରାୟ ୧୦-୧୨ବର୍ଷ ତଳେ । ଏବେ ହୁଏତ ସେ ଅଞ୍ଚଳରେ ପିଲେ ସ୍କୁଲକୁ ଯିବେଣି ।

ଏବେ ଆମେ ଦେଖିଲୁ ଯେ ନାନା କାରଣରୁ ଆମ ଦେଶରେ ପିଲାମାନଙ୍କୁ ବାଳଶ୍ରମିକ ହେବାକୁ ପଡ଼ିବ । କିନ୍ତୁ ଆମେ ସେମାନଙ୍କର ଶ୍ରମକୁ ସୁପରିଚାଳିତ କରିବା ଆବଶ୍ୟକ । ସେମାନେ ବିପଦଜ୍ଜନକ କାମରେ ନିୟୋଜିତ ହେବା ଉଚିତ୍ ନୁହେଁ । ସେମାନେ କେତେ ନିର୍ଦ୍ଦିଷ୍ଟ ଘଣ୍ଟା ପାଇଁ କାମ କରିବେ କିନ୍ତୁ ସେମାନଙ୍କର ଖେଳିବା ଓ ପଢ଼ିବାପାଇଁ ବନ୍ଦୋବସ୍ତ କରିବା ଦରକାର ।

**ପିଲେ ପାଠ ନ ପଢ଼ିବାର ଚତୁର୍ଥ କାରଣ :** ପିଲାଙ୍କୁ ପାଠ ପଢ଼ାଇବା ଏବେ ମହର୍ଗ ହୋଇଗଲା । ସାଧାରଣ ଗରିବ ମୂଲିଆଶ୍ରେଣୀ ଲୋକ ଏତେ ପଇସା ଖର୍ଚ୍ଚକରି ପିଲାଙ୍କୁ ପାଠ ପଢ଼ାଇବା ଦୁରୂହ ହେଲାଣି । ପ୍ରାଇମେରୀ ସ୍କୁଲଗୁଡ଼ିକରେ ଆଜିକାଲି ଇଂରାଜୀ ମାଧମ ସ୍କୁଲକୁ ଅନୁକରଣ କରି ସ୍କୁଲଡ୍ରେସ୍, କାନ୍ଧରେ ଓହଳା ବେଗ୍, ଜାମା ପେଣ୍ଟ ଆଦି ଚାଲୁ ହେଲାଣି । ସ୍କୁଲ ଗୁଡ଼ିକରେ କଣ୍ଟିଜେନ୍ସି ଓ ଡେଭଲପମେଣ୍ଟ ପାଇଁ କିଛିକିଛି ଆଦାୟ କରାହେଲାଣି । ଗରିବଶ୍ରେଣୀର ଲୋକେ ଏପରି ଖର୍ଚ୍ଚ କରିବାକୁ ଅସମର୍ଥ ହେଉଛନ୍ତି । ତେଣୁ ତାଙ୍କ ପିଲାଏ ସ୍କୁଲକୁ ଯାଇପାରୁ ନାହାଁନ୍ତି ।

**ପିଲେ ପାଠ ନ ପଢ଼ିବାର ପଞ୍ଚମ କାରଣ :** ବର୍ତ୍ତମାନ ପ୍ରଥମ ଶ୍ରେଣୀରୁ ପିଲାଙ୍କୁ ୩ଖଣ୍ଡ ବହି ପଢ଼ିବାକୁ ପଡୁଛି । ଯଥା - ଭାଷା, ଗଣିତ ଓ ସାମାଜିକ ଶିକ୍ଷା । ପିଲାଏ ସ୍କୁଲରେ ପାଦ ଦେଉଦେଉ ୩ଖଣ୍ଡ ପଢ଼ି ପଢ଼ିବେ କିପରି ଓ କାହିଁକି ? ଆପଣ ଯଦି ପାଠ ପଢ଼ିଥିବେ, ତାହାଲେ ପୁଅ ଝିଅ ବା ନାତି ନାତୁଣୀଙ୍କୁ ନିଜେ ବା ପାଖରେ ଟଙ୍କାଥିଲେ ଟିଉସନ୍‌ମାଷ୍ଟ ରଖି ପଢ଼ାଇ ପାରନ୍ତି । ଗାଁର ସାଧାରଣଲୋକେ ବିଶେଷକରି ଆଦିବାସୀ ଯେଉଁମାନଙ୍କର ମାତୃଭାଷା ସ୍ୱତନ୍ତ୍ର, ତାଙ୍କ ପିଲେ ଏଇସବୁ ବହି ଦେଖି ଲୁଚିବେ । ବାଧହୋଇ ପାଠ ଛାଡ଼ିବେ ।

ମୁଁ କିଛି ପିଲାଙ୍କ ପାଠପଢ଼ା ସମ୍ବନ୍ଧରେ ପରାମର୍ଶ ଦେବା ପୂର୍ବରୁ ମୋର ପରିଚୟ ଦେବାକୁ ଋହୁଁଅଛି । ମୁଁ ପ୍ରି-ପ୍ରାଇମେରୀ ସ୍କୁଲ, ମିଡଲ୍‌ସ୍କୁଲ ଓ ଟ୍ରେନିଂସ୍କୁଲ ଗୁଡ଼ିକରେ ବହୁଦିନଧରି ପାଠ ପଢ଼ାଇଛି ଏବଂ ଏସବୁ ସ୍କୁଲ ଗୁଡ଼ିକରେ ପରିଦର୍ଶକ ଭାବେ ମଧ କାର୍ଯ୍ୟ କରିଛି । ପିଲେ ଅଧାରୁ କାହିଁକି ପାଠପଢ଼ା ଛାଡ଼ିଦିଅନ୍ତି, ଏ ବିଷୟରେ ସର୍ଭେକରି ସରକାରଙ୍କୁ ପରାମର୍ଶ ସହ ରିପୋର୍ଟ ଦେଇଛି । କିନ୍ତୁ ସେ ରିପୋର୍ଟ କ'ଣ କେହି ପଢ଼ିଲା ନା ଦେଖିଲା ?

**ମୋର ଅଭିଜ୍ଞତାରୁ କିଛି ପରାମର୍ଶ -**

୧. ପ୍ରଥମ ଶ୍ରେଣୀରେ ଖଣ୍ଡିଏ ବହି, ଯଥା - ଅକ୍ଷର ଓ ଭାଷାଶିକ୍ଷା । ସାମାଜିକ ଶିକ୍ଷାପାଇଁ ଖଣ୍ଡିଏ ସଚିତ୍ର ଋର୍ଟ ଯଥେଷ୍ଟ । ବହି ଦରକାର ନାହିଁ । ଖେଳ, ଗୋଲି, କାଠି ଓ ମଞ୍ଜି ଇତ୍ୟାଦି ଜରିଆରେ ଗଣିତ ଶିକ୍ଷା, ବହିର ଆବଶ୍ୟକତା ନାହିଁ ।

୨. ଦ୍ୱିତୀୟଶ୍ରେଣୀରେ ସେଇ ଏକାକଥା । ସାମାଜିକ ଜ୍ଞାନ ପାଇଁ ଦୁଇଖଣ୍ଡି ଋର୍ଟ । ଗଣିତ ପାଇଁ କଳାପଟା ଓ ସିଲଟର ବ୍ୟବହାର ।

୩. ତୃତୀୟଶ୍ରେଣୀରେ ଖଣ୍ଡିଏ ଭାଷା ଓ ଖଣ୍ଡିଏ ସାଧାରଣ ଜ୍ଞାନ ବହି, ଖାତାରେ ପିଲାରେ ଗଣିତ କଷିବେ ।

୪. ଚତୁର୍ଥଶ୍ରେଣୀରୁ ସପ୍ତମଶ୍ରେଣୀ ପର୍ଯ୍ୟନ୍ତ ଭାଷା, ଗଣିତ, ସାଧାରଣଜ୍ଞାନ ବା ସାମାଜିକଜ୍ଞାନ ଓ ଗଣିତ ପାଇଁ ବହି ପଢ଼ାଯାଇପାରେ ।

୫. ଇଂରାଜୀ ଶିକ୍ଷା ଦ୍ୱିତୀୟ ଶ୍ରେଣୀରୁ ନ ହୋଇ ଚତୁର୍ଥ ବା ଷଷ୍ଠ ଶ୍ରେଣୀରୁ ଆରମ୍ଭ ହେଲେ ଠିକ୍ ହେବ । ନିଜ ଭାଷା ଭଲକରି ଆୟତ୍ତ କରିପାରିଥିଲେ ଗୋଟିଏ ବିଦେଶୀ ଭାଷାକୁ ଶିଖିବାକୁ ସହଜ ହେବ । ଶ୍ୟାମାଚରଣ ତ୍ରିପାଠୀ ଡି.ପି.ଆଇ. ଥିଲାବେଳେ ମୁଁ ଫୁଲବାଣୀ ମାଇନର ସ୍କୁଲରେ ଗୋଟିଏ ଡେମୋନଷ୍ଟ୍ରେସନ୍ କ୍ଲାସ ନେଇ ପ୍ରମାଣ କରିଦେଲି ଯେ ଉଚ୍ଚପ୍ରାଥମିକ ସ୍କୁଲରୁ ଆସୁଥିବା ଛାତ୍ରମାନେ ନିମ୍ନପ୍ରାଥମିକ ସ୍କୁଲରୁ ଆସୁଥିବା ଛାତ୍ରମାନଙ୍କ ଠାରୁ ଷଷ୍ଠ ଓ ସପ୍ତମ ଶ୍ରେଣୀରେ ଇଂରାଜୀରେ ଭଲ କରୁଛନ୍ତି । ଏହା ବୋଧହୁଏ ୧୯୪୩ ମସିହାର କଥା । ତାପରେ ଇଂରାଜୀ ଶିକ୍ଷା ଷଷ୍ଠଶ୍ରେଣୀରୁ ପ୍ରଚଳିତ ହେଲା । ଇଂରାଜୀ ମାଧ୍ୟମ ସ୍କୁଲଗୁଡ଼ିକର ଆଦର ଦେଖି ଆମେ ରବେଇ ଖବେଇ ହୋଇ ଦ୍ୱିତୀୟ ଶ୍ରେଣୀରୁ ଇଂରାଜୀ ପଢ଼େଇବା ହେଲା ଅବିବେକିତା । ଇଂରାଜୀ ପଢ଼ାଇବେ କିଏ ? ହାଇସ୍କୁଲ ପରୀକ୍ଷାରେ ୨୦ନମ୍ବର ଗ୍ରେସ୍‌ରେ ପାଇଥିବା ମାଷ୍ଟ୍ରେ କ'ଣ ବା ଇଂରାଜୀ ପଢ଼ାଇବେ । ଟ୍ରେନିଂସ୍କୁଲ ପ୍ରାକ୍ଟିକାଲ ପରୀକ୍ଷାରେ ଗୁରୁ ଛାତ୍ରମାନେ ଇଂରାଜୀ ପଢ଼ାଇବା ଦେଖି ମୁଁ ହସିହସି ଗଡ଼ିଯାଇଛି । ଗାଁଗଣ୍ଡାରେ ଯେପରି ଇଂରାଜୀ ମାଧ୍ୟମ ସ୍କୁଲ ଖୋଲିଲାଣି, ସେଗୁଡ଼ିକର ଦକ୍ଷତା ଅଚିରେ ଧ୍ୱଂସ ପାଇବ । ଆମେ ଅବଶ୍ୟ ଇଂରାଜୀ ଶିଖିବା ଦରକାର, କିନ୍ତୁ ଗୋଟିଏ ଅଲଗା ଭାଷା ହିସାବରେ ଶିଖିବା ଉଚିତ୍ । ଆମ ମାତୃଭାଷା ବଦଳରେ ନୁହେଁ ।

୬. ତେବେ ଆଦିବାସୀ ଅଞ୍ଚଳରେ ପ୍ରି-ପ୍ରାଇମେରୀ ସ୍କୁଲ ଖୋଲିବା ନିହାତି ଆବଶ୍ୟକ । ତାହେଲେ ପିଲାଙ୍କର school readiness ପ୍ରୋଗ୍ରାମ ଭଲ କାମ ଦେବ । ସେମାନେ ସ୍କୁଲକୁ ଯିବାକୁ ମନ ବଳାଇବେ ।

**ହାଇସ୍କୁଲ ସ୍ତରର ଶିକ୍ଷା :** ଏହି ସ୍ତରରେ ଶିକ୍ଷାକୁ ସହଜ, ସରଳ ଓ ଜୀବନାଭିମୁଖୀ କରିବା ଉଚିତ । ଏହି ସ୍ତରରେ ପିଲାଏ ଗୋଟିଏ strong commonsense ବା ବଳିଷ୍ଠ ସାଧାରଣ ଜ୍ଞାନର ଅଧିକାରୀ ହେବା ଆବଶ୍ୟକ । ଯାହା ଶିକ୍ଷା ଦିଆଯିବ, ତାହା ଯେପରି ଛାତ୍ରଛାତ୍ରୀଙ୍କର ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନରେ କାମରେ ଲାଗିବ ତାହାକୁ ଆଖିଆଗରେ ରଖି ଗଣିତ ଓ ବିଜ୍ଞାନ ପଢ଼ାଇବା ଉଚିତ । ଗୁଡ଼େ ଅନାବଶ୍ୟକ ଗଣିତ, ବିଜ୍ଞାନ, ଇତିହାସ ଓ ଭୂଗୋଳ ଇତ୍ୟାଦି ଘୋଷାଇବା କେବଳ ସମୟ ଓ ଶକ୍ତିର ଅପଚୟ ମାତ୍ର । ଭାଷା ସାହାଯ୍ୟରେ ଲୋକ ଜ୍ଞାନ ଆହରଣ କରନ୍ତି ଓ ନିଜକୁ ବ୍ୟକ୍ତ କରନ୍ତି । ତେଣୁ ଭାଷା ହିଁ ଜୀବନର ପ୍ରଧାନ ସଂପଦ ।

ଥରେ ମୁଁ ଗୋଟିଏ ବିଶ୍ୱବିଦ୍ୟାଳୟର ଏବଂ ଆଉଥରେ ଗୋଟିଏ ବଡ଼ କଲେଜର ଛାତ୍ରମାନଙ୍କ ଏନ୍.ଏସ୍.ଏସ୍. କ୍ୟାମ୍ପରେ ଯୋଗଦେଇଥିଲି । ଦେଖିଲି, ସେମାନେ

ଏନ୍.ଏସ୍.ଏସ୍. କଣ ଜାଣନ୍ତି ନାହିଁ । ଗାଁ ସ୍କୁଲଘରେ ରହି ଗାଁ ଘରିପଟେ ଯଥେଚ୍ଛା ପୁରୀଷୋତ୍ସର୍ଗ କରି ଭାରତୀୟ ସଂସ୍କୃତିର ରକ୍ଷା କରୁଛନ୍ତି ।

ସେମାନଙ୍କୁ ପଚାରିଲି, ମଳରୁ କି କି ରୋଗ ବ୍ୟାପେ ? ଉତ୍ତର ମିଳିଲା - କାଛୁ, ଯାଦୁ ଓ small - pox । ଅବଶ୍ୟ କେତେଜଣ ହଇଜା ବୋଲି କହିଲେ । ଛାତ୍ରମାନେ ଯଥେଷ୍ଟ ଶିକ୍ଷା ପାଇନଥିବାରୁ trench ବା pit ବା ବରପାଲି ଲାଟ୍ରିନ୍ କ୍ୟାମ୍ପରେ ବ୍ୟବହାର କରିବାକୁ ଚେଷ୍ଟା କଲେନାହିଁ । ଏହି ଛାତ୍ରମାନେ ଆମର ବଡ଼ବଡ଼ ଅଫିସର, ମନ୍ତ୍ରୀ, ରାଜନୀତିକ ନେତା ଓ ଶିକ୍ଷକ ହେବେ । ଏଥିରେ ଦେଶ ସୁଧୁରିବ କିପରି ? ସୁତରାଂ ହାଇସ୍କୁଲ ସିଲାବସ୍‌ରେ ନିମ୍ନଲିଖିତ ବିଷୟମାନ ନିର୍ଣ୍ଣୟ କରିବା ଉଚିତ ହେବ ।

ହାଇସ୍କୁଲ ସିଲାବସ୍

a) Environment, Soil Conservation, Ecology, food, nutrition, Personal & Community hygiene, how diseases travel, Govt. Schemes & programmes to control and eradicate malaria filaria, T.B., Polio, Leprosy, Aids, Hepatitis 'B' etc.

b) I.C.D.S in nutshell and P.H.C. etc. : Use of urinals and Latrines should be a must in schools of all categories and for teachers and anganwari workers at their homes.

c) Decentralisation of democracy - Panchayats, Panchayat Samitis, Zilaparishads, N.A.C.s., J.R.Y. ସ୍ୱରୋଜଗାର ଯୋଜନା, ଗ୍ରାମ ସଡ଼କ ଯୋଜନା Old age penson, Help to poor, pregnant and nursing women, Indira Abas Yojana, Pani Panchayat, Food for work, Special Previllages for Adivasis, Harijans and other Backward class people, Literacy campaign etc.

ଦେଖାଯାଏ, ପ୍ରାୟ ପ୍ରତିବର୍ଷ ଏକଲକ୍ଷ ଛାତ୍ରଛାତ୍ରୀ ହାଇସ୍କୁଲ ଶିକ୍ଷାପରେ ଘରୋଇ ଜୀବନକୁ ଫେରିଯାଆନ୍ତି । ସୁତରାଂ ସେମାନେ ଉପରୋକ୍ତ ବିଷୟରେ ଆଗରୁ ସ୍ୱଚ୍ଛ ଧାରଣା ପାଇଥିଲେ ସରକାରଙ୍କର ଲୋକହିତକର ଯୋଜନାଗୁଡ଼ିକ ପ୍ରଚାର ଓ କାର୍ଯ୍ୟକାରୀ କରିବାରେ ସହାୟକ ହେବେ ।

**S.C.E.R.T. & D.P.E.P.** : ଏହି ସଂସ୍ଥାମାନେ ଯାହା କରୁଛନ୍ତି, ତାହା କେବଳ ସଦିଚ୍ଛାମୂଳକ ବା Pious wishes ଛଡ଼ା ଆଉ କିଛି ନୁହେଁ । S.C.E.R.T.ର ସ୍କୁଲଗୁଡ଼ିକ ସହ ପ୍ରତ୍ୟକ୍ଷ ସମ୍ବନ୍ଧ ନାହିଁ । Monitoring & Feed backର ନାଁ ନାହିଁ । କେବଳ ତାଲିମ ଦେବା ଓ ପାଠୋପକରଣ ଯୋଗାଇଦେଇ ଲାଭ କ'ଣ ? D.P.E.P. ମଧ

ସେଇଆ ଏବଂ ସୀମିତ ସମୟ ପାଇଁ । କାର୍ଯ୍ୟକ୍ରମ ଶେଷହେଲେ ଯଥା ପୂର୍ବଂ ତଥା ପରଂ । ଶିକ୍ଷାନୀତି ଓ ଶିକ୍ଷାପଦ୍ଧତିକୁ ବାସ୍ତବ କ୍ଷେତ୍ରରେ କାର୍ଯ୍ୟ କରିବାକୁ ହେଲେ ଶିକ୍ଷା ବିଭାଗର ଅଧିକାରୀମାନଙ୍କୁ ବିଶେଷ ତାଲିମ୍ ଦେବାକୁ ହେବ । ସେମାନେ କେବଳ ଶିକ୍ଷାନୁଷ୍ଠାନ ଗୁଡ଼ିକୁ ପରିଦର୍ଶନ କରିବେ ନାହିଁ । ଶିକ୍ଷାଦାନରେ ଦିଗ୍‌ଦର୍ଶନ ଦେବେ । ଶିକ୍ଷକ ତାଲିମ୍ ବ୍ୟବସ୍ଥା କଲାବେଳେ ଶିକ୍ଷକମାନଙ୍କର ଉପଲବ୍ଧ ପାଠ ଓ ଜ୍ଞାନ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ଦେଖାଯାଏ, ଶିକ୍ଷାର ପ୍ରତ୍ୟେକସ୍ତରରେ ଅନେକ ଶିକ୍ଷକ ଯାହା ଶିକ୍ଷା ଦେବେ, ସେ ବିଷୟରେ କିଛି ଜାଣନ୍ତି ନାହିଁ, ଖବରକାଗଜରୁ ପଢ଼ିଲି ଜଣେ ପ୍ରାଥମିକ ସ୍କୁଲଶିକ୍ଷକ ୨୧୮କୁ ୨ରେ ହରି ଭାଗଫଳ ୧୯ ବୋଲି କୁଆଡ଼େ ଲେଖିଥିଲେ । ଦୁଇଜଣ ଶିକ୍ଷକ ତାଙ୍କ ନାଁ ଓଡ଼ିଆରେ ଲେଖିଲାବେଳେ ଭୁଲ୍ କରିବାର ମୁଁ ଦେଖିଛି । ଅନେକଦିନ ତଳେ ଓଡ଼ିଶାରେ ୧୩ଟି ଜିଲ୍ଲା ଥିଲାବେଳେ ସରକାରୀ ବାଳିକା ହାଇସ୍କୁଲର ଶିକ୍ଷୟିତ୍ରୀ ଅନୁଗୁଳକୁ ଗୋଟିଏ ଜିଲ୍ଲାକରି ଓଡ଼ିଶାରେ ୧୪ଟି ଜିଲ୍ଲାବୋଲି ବାଳିକାମାନଙ୍କୁ ପଢ଼ାଇ ଅପମାନିତ ହୋଇଥିଲେ । ଥରେ ଅନେକବର୍ଷ ତଳେ ଉଚ୍ଚପ୍ରାଥମିକ ବିଦ୍ୟାଳୟର କେତେକ ପ୍ରଧାନଶିକ୍ଷକ ଏବଂ ସ୍କୁଲ ଏସ୍.ଆଇ.ମାନଙ୍କୁ ପଞ୍ଚମଶ୍ରେଣୀର ଗଣିତରେ ପରୀକ୍ଷା କରାଗଲା । ଦେଖାଗଲା, ଶିକ୍ଷକମାନଙ୍କର ହାରାହାରି ମାର୍କ ରହିଲା ୩୧ ଏବଂ ଏସ୍.ଆଇ. ମାନଙ୍କର ୪୨ । ଜଣେ ଶିକ୍ଷୟିତ୍ରୀ ଥରେ ରେଡିଓରେ କୁଆ କୋଇଲି ବସାରେ ଅଣ୍ଡାଦିଏ ବୋଲି କହିଥିଲେ । ଏହିପରି ବହୁ ଉଦାହରଣ ଦିଆଯାଇ ପାରିବ ।

ଶିକ୍ଷକ ତାଲିମ - ଏହା ଗୋଟିଏ ଅତି ଗୁରୁତର ବିଷୟ ।

କ) Training School - ତାଲିମକାଳ ଦୁଇବର୍ଷରୁ ଏକବର୍ଷକୁ କମାଇଦେଲେ ଚଳିବ । ମାତ୍ର ଏହା ପୂରା ଏକବର୍ଷ, ଅର୍ଥାତ୍ ୧୨ମାସ ହେବା ଆବଶ୍ୟକ । ଏଥିରେ ଗୁରୁ-ଛାତ୍ର ଓ ଛାତ୍ରୀମାନେ ପ୍ରଥମ ୬ମାସରେ ପ୍ରଥମ ଶ୍ରେଣୀରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟପୁସ୍ତକ ଗୁଡ଼ିକ ତନ୍ନତନ୍ନ କରି ପଢ଼ିବେ । ସେଥିରେ ତାଙ୍କର ଲବ୍ଧଜ୍ଞାନର Concur-rent evaluation ଚାଲିଥିବ । ସେମାନେ ୩ମାସ Psycology Management ଇତ୍ୟାଦି ଏବଂ ଦରକାର ପଡ଼ିଲେ କିଛି ଅଧିକା ସମୟ ଇଂରାଜୀ ପଢ଼ିବେ । ଶେଷ ତିନିମାସ Practical Lesson ଦେବେ । ପଢ଼ା ସମୟରେ ବରାବର Concurrent evaluation ରହିବ । ଟ୍ରେନିଂ ସ୍କୁଲ ଗୁଡ଼ିକରେ ଉଚ୍ଚ ଯୋଗ୍ୟତା ସଂପନ୍ନ ଶିକ୍ଷକମାନଙ୍କୁ ଦରକାର ପଡ଼ିଲେ କିଛି ଅଧିକା ସୁବିଧା ସୁଯୋଗ ଦେଇ ନିଯୁକ୍ତିଦେଲେ ଭଲ ହେବ ।

Training College ତାଲିମକାଳ ପୂରା ୧୨ମାସ । ଛାତ୍ରମାନେ ପ୍ରଥମ ଶ୍ରେଣୀରୁ ୧୦ମଶ୍ରେଣୀ ପର୍ଯ୍ୟନ୍ତ ସିଲାବସ୍ ସହ ପାଠ୍ୟପୁସ୍ତକ ଗୁଡ଼ିକ ସହିତ ପରିଚିତ ହେବେ । ଯେଉଁ ବିଷୟରେ ସେମାନେ ଦୁର୍ବଳ ଥିବେ ବା ଅଧିକ ଜାଣିବାକୁ ଚାହୁଁଥିବେ, ତାଙ୍କୁ ସେ ସୁଯୋଗ ଦିଆଯିବ । ଦ୍ୱିତୀୟ ୬ମାସରେ ସେମାନେ ଶିକ୍ଷା, ମନସ୍ତତ୍ତ୍ୱ, ସ୍କୁଲ ପରିଚାଳନା

ଆଦି ପାଠ ପଢ଼ିବେ ଏବଂ Practical Lesson ଦେବେ । ଏମାନଙ୍କର ମଧ୍ୟ ତାଲିମ୍‌କାଳରେ Concurrent evaluation ରହିବ ।

**ସ୍କୁଲ ପରିଦର୍ଶନ :** ସ୍କୁଲ Supervision କେବଳ ରେକର୍ଡ଼ ଦେଖିବା କିମ୍ବା ଭୁଲ୍ ବାଛିବା ନୁହେଁ । Supervision ଅର୍ଥ ମଧ୍ୟ actual participation in the field work, S.I., D.I. ଏବଂ C.I.ମାନେ ପିଲାଙ୍କୁ ପରୀକ୍ଷା କରିବା ଛଡ଼ା ଆଦର୍ଶ ଶିକ୍ଷାଦାନରେ ଜଡ଼ିତ ହେବେ । ସେମାନେ ଶିକ୍ଷକମାନଙ୍କ ପାଇଁ on the job ଏବଂ Inservice Trainingର ପରିଚାଳନା କରିବେ । ପରିଦର୍ଶନକାରୀମାନେ ହାକିମ ନହୋଇ ଗୁରୁ ଏବଂ ପଦପ୍ରଦର୍ଶକର ସ୍ଥାନ ଗ୍ରହଣ କରିବା ଉଚିତ୍ । ସ୍କୁଲଗୁଡ଼ିକୁ ଲୋକେ ସରକାରୀ ଅନୁଦାନରେ ପରିଚାଳନା କରନ୍ତୁ । କିନ୍ତୁ ପାଠପଢ଼ା ପାଇଁ ପରିଦର୍ଶକମାନେ ସଂପୂର୍ଣ୍ଣ ଦାୟୀ ରହିବା ଉଚିତ । ଆମେ ଶିକ୍ଷକମାନଙ୍କଠାରୁ ବହୁତ ଆଶା କରୁଛୁ । ସେମାନେ ଜାତିର ଚରିତ୍ର ଗଢ଼ିଦେବେ ବୋଲି କହୁଛୁ । କିନ୍ତୁ ଏହା ଅଜବ ଭ୍ରାନ୍ତଧାରଣା । ସେମାନେ ଏଇ ଜନସାଧାରଣଙ୍କ ମଧ୍ୟରୁ ଆସିଛନ୍ତି ଏବଂ ସହସ୍ର ସହସ୍ର ସଂଖ୍ୟାରେ ଚାକିରିରେ ପ୍ରବେଶ କରୁଛନ୍ତି । ସୁତରାଂ ସେମାନଙ୍କର ଅନ୍ୟ ସରକାରୀ ଚାକିରିଆଙ୍କ ପରି ଦୁର୍ବଳତା ରହିବା ସ୍ୱାଭାବିକ । ସେମାନେ ସବୁଦିନ ସ୍କୁଲକୁ ଆସନ୍ତୁ, ଯାହା ପଢ଼ାଇବେ ଆଗରୁ ପ୍ରସ୍ତୁତ ହୋଇଥାଆନ୍ତୁ ଏବଂ ସନ୍ଦେହସ୍ଥଳେ ଜାଣିବା ଲୋକଙ୍କୁ ପଚାରି ବୁଝନ୍ତୁ ।

ଆମେ ଅଳ୍ପ କହିବା ଏବଂ ସେତକ କରିବା । ଗୁଡ଼େ ବହୁତ ବଡ଼ବଡ଼ କଥା କହି କିଛି ନ କରିବା ହିଁ ବିପତ୍ତି । ଏବେ ଆମେ ଜାଣିଲୁ ଯେ, ହାଇସ୍କୁଲ ପର୍ଯ୍ୟନ୍ତ ପାଠକୁ ଆମେ ସହଜ ସରଳ ଏବଂ ଜୀବନାଭିମୁଖୀ କରିବା ଆବଶ୍ୟକ । କେବଳ +୨ ସ୍ତରରେ ଛାତ୍ରଛାତ୍ରୀମାନେ specialisation କରିବେ । ସେହି ସ୍ତରରେ ସେମାନେ ଗଣିତ, ବିଜ୍ଞାନ, ଭାଷା, ଅର୍ଥନୀତି, ଇତିହାସ, ଭୂଗୋଳ, କମ୍ପ୍ୟୁଟର ଇତ୍ୟାଦିରେ ବିଶେଷ ଶିକ୍ଷାଲାଭ କରି ଉତ୍ତୋରତ୍ତର ଶିକ୍ଷାଲାଭରେ ଅଗ୍ରଗତି କରନ୍ତୁ । ଏହି ସ୍ତରରେ ମୋଟ୍ ତିନୋଟି ବିଷୟରେ ଶିକ୍ଷାଦାନର ବ୍ୟବସ୍ଥା ହେବା ଆବଶ୍ୟକ ।

**ମୌଳିକଶିକ୍ଷାର ଝଲକ :** ମୋର ପୂରା ବିଶ୍ୱାସ ଯେ, ମୌଳିକଶିକ୍ଷା ହିଁ ଏ ଦେଶକୁ ଗଢ଼ିପାରିବ । ଏ ଶିକ୍ଷା ହେଲା ଜୀବନପାଇଁ । ସୁତରାଂ ଜୀବନ ମାଧ୍ୟମରେ ଶିକ୍ଷାଦାନ । ପାଠଶାଳାଟି ଗୋଟିଏ ସମାଜ । ସୁତରାଂ ପାଠଶାଳାରେ ପିଲେ ଗୋଟିଏ community life ବା ସାମୂହିକ ଜୀବନଯାପନ କରିବେ । ମନ୍ତ୍ରୀମଣ୍ଡଳ ଗଢ଼ି ସ୍କୁଲ ପରିଚାଳନାରେ ଏବଂ ନିଜର ଶିକ୍ଷାକ୍ଷେତ୍ରରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବେ । ପାଇଖାନା ଓ କମ୍ପୋଷ୍ଟର ବ୍ୟବହାର କରିବା ସଂଗେସଂଗେ ତା ଜରିଆରେ ରୋଗବୈରାଗ ଓ ଗଛର ଖାଦ୍ୟ ବିଷୟରେ ଜାଣିବେ । ବଗିଚାକରି ମଞ୍ଜି ଗଜା ବା ଚାରା ହେବାଠାରୁ ଫସଲର ସକଳ ଯତ୍ନ, ଫସଲଟିରେ ଥିବା ଖାଦ୍ୟଗୁଣ ବା ଫସଲର ବିକ୍ରି ପର୍ଯ୍ୟନ୍ତ ସକଳ ଖବର ରଖିବେ ।

ବ୍ରିଟିଶ ଶାସନର ଶେଷକାଳରେ ଏବଂ ସ୍ୱାଧୀନତାପ୍ରାପ୍ତିର ପରେପରେ ମୌଳିକଶିକ୍ଷା କେତେକ ପ୍ରଦେଶର ଅତି ସୀମିତ ଅଞ୍ଚଳରେ ପ୍ରାଥମିକ ସ୍ତରରେ କରାଯାଇଥିଲା ଏବଂ ଓଡ଼ିଶାରେ ଆମେ କେତେଜଣ ଏହି ଶିକ୍ଷାର କାର୍ଯ୍ୟ କୁଶଳତାକୁ ବହୁ ପରିମାଣରେ ପ୍ରମାଣିତ କରିପାରିଥିଲୁ । କିନ୍ତୁ, ଏହି ଶିକ୍ଷାପଦ୍ଧତି ବର୍ଜନ କରିବାକୁ ପଡ଼ିଲା, କାରଣ ଏହା କଂଗ୍ରେସ, ନବବାବୁ ଓ ଗାନ୍ଧିଜୀଙ୍କ ନାଁରେ ଚାଲିଥିଲା ବୋଲି ପ୍ରଚାର ହେଲା । ଶିକ୍ଷିତ ଲୋକ ଏବଂ ବାବୁଭାୟାମାନେ ଏହି ପାଠକୁ ବୁଝିବାକୁ ଚେଷ୍ଟାକଲେ ନାହିଁ । ଏହି ଶିକ୍ଷା ବିରୁଦ୍ଧରେ ପ୍ରଚାର କଲେ । ସୁତରାଂ ବର୍ତ୍ତମାନ ସ୍ଥିତିରେ ମୌଳିକଶିକ୍ଷାର ପ୍ରବର୍ତ୍ତନ କରିବା ଅସମ୍ଭବ ଏବଂ ଅକରଣୀୟ । N.C.E.R.T.ର ବଡ଼ପଣ୍ଡାମାନେ ଏହି ପଦ୍ଧତିକୁ ବୁଝିବାକୁ ଚେଷ୍ଟାକରନ୍ତୁ ଏବଂ ଏହାର ପ୍ରଚଳନ କେତେକାଂଶରେ କରାଇବାକୁ ଉପଯୁକ୍ତ ବୋଲି ହୃଦୟଙ୍ଗମ କଲେ ଏ ଦିଗରେ ଆଗେଇ ଯାଆନ୍ତୁ ।

ବର୍ତ୍ତମାନ ପାଇଁ ଆମସ୍କୁଲ ଗୁଡ଼ିକରେ ଶିକ୍ଷକ ଓ ଛାତ୍ରମାନେ ମିଶି ସ୍କୁଲଘର ଓ ହତା ସଫାରଖିବା, ପାଇଖାନା, ମୂତ୍ରଖାନା ବ୍ୟବହାର କରିବା, ବିଶୁଦ୍ଧ ପାଣିପିଇବା, ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ଗୁରୁଜୀ, ଗୁରୁମା' ଏବଂ ସହପାଠୀଙ୍କୁ ଅମୁକ ଭାଇ, ଅମୁକ ଭଉଣୀ ସମ୍ବୋଧନ କରିବା ଶିଖନ୍ତୁ । ସେମାନେ ସ୍କୁଲହତାରେ ଗଛପତ୍ର ଏବଂ ଫୁଲଫଳ ଲଗାଇବା ଆଦି ଶିଖନ୍ତୁ । ବ୍ରିଟିଶ ଶାସନକାଳରେ ଗୋଟିଏ ଗୋଟିଏ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ଓ ପିଲେ ବର୍ଷକୁ ୫୦୦ଟଙ୍କାର ପରିବା ବିକିବାର ମୁଁ ଅନୁଗୁଳ ଓ କନ୍ଧମାଳ ଅଞ୍ଚଳରେ ଦେଖିଛି । ସେତିକି ପରିବା ବର୍ତ୍ତମାନ ମୂଲ୍ୟରେ ପ୍ରାୟ ୬୦,୦୦୦ଟଙ୍କା ହେବ । କାରଣ, ଆଳୁ ଓ ଟମାଟୋ ବିଶା ଥିଲା ତିନିପଇସା । ଏକଥା ଭାବି ମନକଷ୍ଟ କରିବା ଅନାବଶ୍ୟକ। ବର୍ତ୍ତମାନ ହାଇସ୍କୁଲ ଗୁଡ଼ିକରେ Vocational Educationର କଳ୍ପନା କରିବାର ମଧ୍ୟ ଆଦୌ ଉଚିତ୍ ନୁହେଁ । ପ୍ରଥମତଃ ଶିକ୍ଷକ, ଶିକ୍ଷୟିତ୍ରୀ ଓ ଛାତ୍ରଛାତ୍ରୀଙ୍କର ଶରୀର ଶ୍ରମ ପ୍ରତି ଆଗ୍ରହ ଜାତ କରାଇପାରିଲେ କେତେ ବଡ଼କଥା । କେତେକ କହନ୍ତି "When you don't want to take a decision, appoint a Committee or a Commission." ଆମଦେଶରେ ଶିକ୍ଷାନୀତି ଓ ପରିଚାଳନାକୁ ଦେଖିଲେ ଏହାର ସତ୍ୟତା ପ୍ରମାଣିତ ହେଉଛି । କେତେ କମିଟି ଓ କମିଶନ ଗଲେଣି, କିନ୍ତୁ Macaulay ସାହେବଙ୍କର ୧୮୩୬ ମସିହାର ସେଇ ପୁରାତନ ପାଠ୍ୟକ୍ରମ ଓ ଶିକ୍ଷାପଦ୍ଧତି ଚାଲୁରହିଛି । ସ୍କୁଲଗୁଡ଼ିକୁ Tape Recorder, Colour T.V. ଏବଂ ବିଜ୍ଞାପନ ଉପକରଣମାନ ଯୋଗାଇଦେଇ ଦେଖାଯାଉଛି ଯେ, ସେଗୁଡ଼ିକ କେଉଁଠାରେ ଆତ୍ମଗୋପନ କଲେ ଜଣାଯାଉନି । ଯାହାହେଉ Macaulayଙ୍କ ଶିକ୍ଷାନୀତି ଓ ଶିକ୍ଷାପଦ୍ଧତି ଆମକୁ ଏତେବାଟ ଆଣିପାରିଛି । ସେଇ Macaulayଙ୍କୁ ଆଜି ସ୍ମରଣ କରିବା କଥା ।

ଚିଠି ଆକାରରେ ଲେଖାଟି ବୋଧହୁଏ ଇନ୍ଦୁସାର୍ ଲେଖିଥିଲେ ସେତେବେଳର ସରକାରଙ୍କୁ ତାଙ୍କ ଜୀବନର ଶେଷପର୍ଯ୍ୟାୟରେ । ସରକାର ନିଶ୍ଚିତ ଭାବେ ତାଙ୍କର ସେ ଲେଖାଟିକୁ ଡଷ୍ଟବିନ୍‌ରେ ପକାଇ ଦେଇଥିବେ । ତାଙ୍କର ସେ ଲେଖାଟି ଆଉ କେଉଁଠି ପାଇବା ଏବେ ସମ୍ଭବ ନୁହଁ । ମୁଁ ନିଜକୁ ଭାଗ୍ୟବାନ୍ ମନେକରେ ଯେ, ତାଙ୍କର ସେ ଲେଖାଟି ମୋ ପାଖରେ ଥିଲା । ମୁଁ ସେ ଲେଖାଟି ଯେତେଥର ପଢ଼େଁ ସେତିକି ମୋତେ ନୂଆନୂଆ ଲାଗେ । ଇନ୍ଦୁସାର୍‌ଙ୍କ ବ୍ୟତୀତ କେହି ଅନ୍ୟଜଣେ ଏ ପ୍ରକାରର ଲେଖା ଆଗରୁ ଲେଖିଥିଲେ କି ପରେ ଲେଖିପାରିବେ ସେଥିରେ ମୋର ସନ୍ଦେହ ଅଛି । ଏହାଠାରୁ ଶିକ୍ଷା ସମ୍ବନ୍ଧରେ ଅଧିକ Practical Suggestion ଦିଆଯାଇ ନପାରେ । ତାଙ୍କର ସେ ଲେଖାଟିର ଲକ୍ଷଲକ୍ଷ କପିକରି ଆମ ରାଜ୍ୟରେ ବଣ୍ଟାଯିବା ଦରକାର । ଶିକ୍ଷା ସହିତ ସଂପୃକ୍ତ ସବୁ ବ୍ୟକ୍ତି ଲେଖାଟିକୁ ପଢ଼ି ହୃଦୟଙ୍ଗମ କରିବା ଆବଶ୍ୟକ । ସରକାର ତାଙ୍କ suggestion ଗୁଡ଼ିକୁ ଅକ୍ଷରେ ଅକ୍ଷରେ ପାଳନ କରିବା ଦରକାର । ଶିକ୍ଷାପାଇଁ ଆଜିକାଲି ଅପର୍ଯ୍ୟାପ୍ତ ଟଙ୍କା । ଶିକ୍ଷା ନାମରେ ଲଗି ହରିଲୁଟ୍ । ଶିକ୍ଷା କିନ୍ତୁ ରସାତଳଗାମୀ । ଆଜିର ଏ ବିପର୍ଯ୍ୟସ୍ତ ଶିକ୍ଷାକୁ ଉଦ୍ଧାର କରିବାର କେବଳ ଗୋଟିଏ ବାଟ - ସେଇ ଇନ୍ଦୁବାବୁଙ୍କର suggestion କୁ ଅକ୍ଷରେ ଅକ୍ଷରେ ପାଳନ କରିବା । ଲେଖାଟି ଇନ୍ଦୁସାର୍‌ଙ୍କ ଶିକ୍ଷାଦର୍ଶନର ନିର୍ଯାସ ।



# ଇନ୍ଦୁଭୂଷଣ ମିଶ୍ରଙ୍କ ରଚନାରୁ କିଛି

## ଇନ୍ଦୁସାର୍‌ଙ୍କ ଲେଖା ସମ୍ବନ୍ଧରେ

*ପିଲାବେଳୁ ପ୍ରକାଶ ପାଇଥିଲା ଇନ୍ଦୁସାର୍‌ଙ୍କ ସୃଜନଶୀଳତା । ସେ ଭଲ ଗୀତଗାଇ ପାରୁଥିଲେ, ଅଭିନୟ କରି ପାରୁଥିଲେ । କେରିକେଚର / ବ୍ୟଙ୍ଗକରି ପାରୁଥିଲେ । ନାଚି ମଧ ପାରୁଥିଲେ । ସେ ସବୁ କରିପାରୁ ଥିଲେ, ଯେମିତି duck takes to water. ସେଇଥିପାଇଁ ସେ ଅତି ସଫଳ ଶିକ୍ଷକ ହୋଇପାରିଥିଲେ । ସଫଳ ଶିକ୍ଷକଟେ ହେବାପାଇଁ ବିଶେଷଭାବେ ପ୍ରାକ୍-ପ୍ରାଥମିକ ଏବଂ ପ୍ରାଥମିକ ଶିକ୍ଷାସ୍ତରରେ ଜଣେ ନାଚି, ଗାଇ, ବଜାଇ, ଅଭିନୟ କରିପାରୁଥିବାର, ଏପରିକି ବେଳେବେଳେ ଜୋକରଟେ ହେବାର ଆବଶ୍ୟକତା ଥାଏ । ଇନ୍ଦୁସାର୍ ତାଙ୍କ ଜୀବନକାଳରେ ଯାହାସବୁ ରଚନା କରି ଯାଇଛନ୍ତି, ସବୁକିଛି ତାଙ୍କ ଶିକ୍ଷାଦାନ ସହ ଓତଃପ୍ରୋତ ଭାବେ ଜଡ଼ିତ । ଶିକ୍ଷାରେ ଲାଗୁନଥିବା ସାହିତ୍ୟ ତାଙ୍କପାଇଁ ଥିଲା luxury, necessity ନୁହଁ । ତାଙ୍କ ଶିକ୍ଷା ଥିଲା ଗରିବ ଛାତ୍ରଛାତ୍ରୀ ଏବଂ ଗରିବ ଦେଶପାଇଁ ଉଦ୍ଦିଷ୍ଟ । ଅଳ୍ପଖର୍ଚ୍ଚରେ କିମିତି ବେଶିପାଠ ପଢ଼ାଯାଇ ପାରିବ, ଶିକ୍ଷାକ୍ଷେତ୍ରରେ ମଧ କେଉଁ ଶିକ୍ଷା ଆଗହେବ, କେଉଁଟି ପଛେ ହେଲେ ଚଳିବ, ଦରକାର ଅନୁସାରେ ସେସବୁକୁ ସେ prioritise କରିଥିଲେ । ସେ ଜାଣିଥିଲେ ଆମ ପରିପ୍ରେକ୍ଷୀରେ ପ୍ରାକପ୍ରାଥମିକ ଶିକ୍ଷା, ପ୍ରାଥମିକ ଶିକ୍ଷା ଏବଂ ପ୍ରୌଢ଼ଶିକ୍ଷାର ଆବଶ୍ୟକ ଅଧିକ ଏବଂ ମୌଳିକଶିକ୍ଷା ଥିବ ସବୁ ଶିକ୍ଷାରେ ପାଠ ସହ କାମ । ଏ ପ୍ରକାରର ମାନସିକତା ଥିବା ଜଣେ ବ୍ୟକ୍ତିଙ୍କ ଦ୍ୱାରା ସମ୍ଭ୍ରାନ୍ତ ସାହିତ୍ୟ ସୃଷ୍ଟି କରିବା against his grain, ଯଦିଚ ସମ୍ଭ୍ରାନ୍ତ ସାହିତ୍ୟ ସୃଷ୍ଟି କରିବାର ଦକ୍ଷତା ତାଙ୍କର ଥିଲା । ଅବଶ୍ୟ ଆଜିକାଲି ସାହିତ୍ୟର ସଂଜ୍ଞା ବଦଳିଲାଣି । ସାହିତ୍ୟ ଆଜି ସମ୍ଭ୍ରାନ୍ତ ସାହିତ୍ୟରେ ସୀମିତ ହୋଇ ରହିନାହିଁ । ଇନ୍ଦୁସାର୍‌ଙ୍କ ରଚନା ଗୁଡ଼ିକ ମଧ ସାହିତ୍ୟ ।*

*ଆବଶ୍ୟକତାକୁ ଦେଖି ସେ ଲେଖିଛନ୍ତି । ଯେଉଁମାନେ ସାର୍ ଲେଖୁଥିବା ରଚନାକୁ ସଂଗେସଂଗେ ପାଠପଢ଼ାରେ ଲଗାଇବେ ସେମାନଙ୍କ ପାଇଁ ସେ ଲେଖୁଥିଲେ । ବହିଟିର କଭର୍ କମିତିକା ହେବ, ସୁଦୃଶ୍ୟ ହେବକି ନାହିଁ, ବହିଟିର କାଗଜ କିପ୍ରକାର ହେବ,*

*ସେସବୁ ପ୍ରତି ତାଙ୍କ ନଜର ନଥାଏ । ତାଙ୍କ ଅନୁସାରେ ବହିଟି ଯେଉଁ ପ୍ରକାରେ ହେଉଛି ହେଉ, ଅଳ୍ପ ସମୟରେ ହେଲେ ସଂଗେସଂଗେ ପିଲାଙ୍କ କାମରେ ଲାଗୁ ।*

*ତାଙ୍କ ରଚନାର ଲିଷ୍ଟ ବେଶ୍ ଲମ୍ବା ଏବଂ କେବଳ ବହିରେ ସୀମିତ ନୁହଁ । ସେ ବହି କରିଛନ୍ତି, କ୍ୟାସେଟ୍ କରିଛନ୍ତି, ଫିଲ୍ମ ମଧ୍ୟ କରିଛନ୍ତି । ସେଥିମଧ୍ୟରୁ ଅଧିକାଂଶ ପ୍ରୌଢ଼ ଏବଂ ନବସ୍ୱାକ୍ଷରମାନଙ୍କ ପାଇଁ ଉଦ୍ଦିଷ୍ଟ । ତାଙ୍କ ଲେଖାର ଲିଷ୍ଟଟେ ତଳେ ଦିଆଗଲା ।*

## ଇନ୍ଦୁସାରଙ୍କ ଦ୍ୱାରା ଲିଖିତ ପୁସ୍ତକ

***ପଢ଼ିଲେ ସିନା ଜାଣିବ, ଜାଣିଲେ ଜିଣିବ, ପାଠ ବତାଏ ବାଟ, ଅଙ୍ଗନ ଆଲୋକ, ଯମ ପରାଜୟ, ନାରାୟଣଙ୍କ ଇଚ୍ଛା, ବରୁଣ ପୂଜା, ସଦେଇର ସ୍ୱପ୍ନ, ଘର ସଂସାର, ଶୁଣ ମୋର ହିତବାଣୀ, ସୁଖୀ ପରିବାର, ଆମରି କଥା, ଶୁଣ ସୁଜନେ, ଅପାମାନଙ୍କ ପାଇଁ, ନୀରୋଗ ରହନ୍ତୁ ସରବେ, ଗଙ୍ଗା ଯମୁନା, ଗାନ୍ଧୀ ପରିକ୍ରମା, ଆଶ୍ଚର୍ଯ୍ୟ ପରିକ୍ରମା, ପିଲାଙ୍କ ଗୀତ ଘଣ୍ଟୁଡ଼ି, ଆସରେ ପିଲେ ଶୁଣିବା ଗପ, ଶିଶୁ ଗୀତିକା, ଆସରେ ପିଲେ ଗାଇବା ଗୀତ, ଆମ ଦିହପା ।***

## ପିଲାଙ୍କ 'ଗୀତଘଣ୍ଟୁଡ଼ି'ରୁ କିଛି କବିତା

ଇନ୍ଦୁସାରଙ୍କ ସବୁଠାରୁ ଲୋକପ୍ରିୟ ଏବଂ ବହୁଳଭାବେ ବ୍ୟବହୃତ ବହିଟି ହେଲା 'ଗୀତ ଘଣ୍ଟୁଡ଼ି', ସେଥିରୁ କିଛି କବିତା ଉଦାହରଣ ହିସାବରେ ତଳେ ଦିଆଗଲା । ସେଥିମଧ୍ୟରୁ ଅନେକ କବିତା ସେ ସଂଗ୍ରହ କରିଛନ୍ତି । କିଛି ଇଂରାଜୀ ରାଇମ୍‌ରୁ ଅନୁବାଦ କରିଛନ୍ତି । କିଛି ସେ ନିଜେ ଲେଖିଛନ୍ତି ଏବଂ କିଛି ତାଙ୍କର ଅନୁସୃଜନ ।

### ବେଙ୍ଗଡିଆଁ

ବେଙ୍ଗୁଲି ମାଉସୀ ଆସିଲା ଦେଖ,
କେମିତି ଡେଉଁଚି ଫକ୍‌ଫକ୍ ।( ୨ ଥର)

ଚୁକିଦିଏ ସେ ସେ ପାଇଲେ ପୋକ,
ଉଇ ପିମ୍ପୁଡ଼ି ଚୁକୁ ଚାକ୍ ।( ୨ ଥର)

ବେଙ୍ଗୁଲି ମାଉସୀ ଆସିଲା ଦେଖ,
କେମିତି ଡେଉଁଚି ଫକ୍‌ଫକ୍ ।( ୨ ଥର)

## ପବନ ଦୋଳି

ଦୋଳିରେ ଦୋଳି, ପବନ ଦୋଳି
ଉପରକୁ ଯାଉ, ତଳକୁ ଖସୁ
ପଛକୁ ଯାଉ ତୁ ଆଗକୁ ଆସୁ
ଆକାଶରେ ଯାଇ ମିଶୁ ।

କୁନା ଠେଲିଦେଲେ, ମୁଁ ଠେଲିଦେବି,
ଲାଗିବ କେଡ଼େ ମଜା,
ବସିଥିବେ ଆମ ଅଜା ।

## ଚାଲ୍ ଗାଡ଼ି ଚାଲ୍

ଛୁକ୍ ଛୁକ୍, ଛୁକ୍, ଚାଲେ ରେଲ ଗାଡ଼ି
ମଟର ଘର୍‌ର ଘର୍‌ର
ଶଗଡ଼ କରଇ କେଁ କଟର
ସାଇକେଲ୍ ସର୍‌ର ସର୍‌ର ।

## ବାଲିରେ ବାଲି

ବାଲିରେ ବାଲି,
ବାଲିରେ ଆମେ କରିବୁ ଚୁଲି,
ଚୁଲିରେ ରାନ୍ଧିବୁ
ଭାତ, ତରକାରୀ ଡାଲି ।
କିଏ ସେ ଖାଇବ ଆସ
ଚକା ପକେଇ ବସ ।

## କୁନି ବାଛୁରୀ

କୁନି ବାଛୁରୀ ସେ କୁନି ବାଛୁରୀ
ମାଆଠାରୁ କ୍ଷୀର ଖାଉଚି,
ଖୁପୁରୁ ଖୁପୁରୁ ଡେଉଁଚି ।

ଆସରେ ପିଲେ ଖୁପୁରୁ ଖୁପୁରୁ, ଡେଇଁବା ତାଆରି ପରି,
ଡେଇଁବା ତାହାରି ପରି,
ତାକୁ ଯିବା ଆମେ ବଳି ।

ସାଇକେଲ୍ ଯାଏ ଗଡ଼ି
ଉଦୁମା ଉଦୁମା ଧୁସୁରୁ ଧୁମା
ସର୍କସ କରୁଚି ଭାଲୁକୁ ଅନା ।

ଭାଲୁ ଚଳାଉଛି ସାଇକେଲ୍ ଗାଡ଼ି,
ମଜାରେ ବସିଛି ହାତକୁ ଛାଡ଼ି ।
ସାଇକେଲ୍ ଯାଏ ଗଡ଼ି ।

କୁତୁରୁ କୁତୁ କୁତୁ କୁତୁ
କୁତୁରୁ କୁତୁ କୁତୁ କୁତୁ,
କୁନା ଯାଇଥିଲା ଆଈ ଘରକୁ ।

ଆଈ ଗାଁରେ କଇଁଗଡ଼ିଆ,
କଇଁ ଫୁଟିଥିଲା କେଡ଼େ ନାଲିଆ ।

କଇଁଗଛମୂଳେ ଶେଉଳ ମାଛ
ଧରିନେଲା କୁନା ବୁଡ଼ାଇ ହାତ ।

ଆଈବୁଢ଼ୀ ଦେଲା ସୋରିଷ ବାଟି
ବେସର କରିଲା ମାଛକୁ କାଟି,

ଖାଇଲା ଯେ କୁନା ମାଛ ବେସର,
ସରର୍ ସାରର୍ ସରର୍ ସାରର୍ ସରର୍ ସାରର୍ ।

ରଂଗ ବୋଳିଦେବା ହାତରେ

ହଳଦୀ ବୋଳିବା ହାତରେ ଆମର
କାଗଜରେ ଦେବା ଥାପି,
ହାତର ପାପୁଲି ପାଞ୍ଚଟି ଆଙ୍ଗୁଠି
କାଗଜରେ ଯିବ ଲାଖି ।

ଦୁଇହାତ ଯାକ ଛାପିବାରେ ମଜା
କିମିତି ବଢ଼ିଆ ଲାଗେ,
ଦୁଇଟି ହାତରେ କେତୋଟି ଆଙ୍ଗୁଠି
କିଏ ସେ କହିବ ଆଗେ ?

(ଶିକ୍ଷକ ପିଲାଙ୍କ ହାତରେ ଅଳତା, ଢାଉ, ହଳଦୀ ବା ସ୍ୟାହି ଲଗାଇ କାଗଜ ଉପରେ ହାତଗୁଡ଼ିକୁ ଥାପି ଥାପି ଦେବେ ।)

ରଙ୍ଗ ବୋଳିଦେବା ପାଦରେ

ଅଳତାକୁ ବୋଳି ପାଦର ତଳେ
କାଗଜ ଉପରେ ଚାଲିବା ଧୀରେ ।

ଆମ ପାଦଚିହ୍ନ କେଡ଼େ ସୁନ୍ଦର
ତାଳିମାର ପିଲେ ଥରକୁ ଥର ।

(ଶିକ୍ଷକ ପିଲାଙ୍କ ପାଦରେ ଅଳତା, ଢାଉ, ହଳଦୀ ବା ସ୍ୟାହି ବୋଳି ଉଦ୍ଧି କାଗଜ ଉପରେ ଚଲାଇବେ ।)

କେଉଁ ବାଜା କେମିତି ବାଜେ

ଘଣ୍ଟୁ ବାଜେ ଚଡ଼ାଙ୍ଗ୍ ଚଡ଼ାଙ୍ଗ୍
ମହୁରୀ ବାଜେ ପେଁ ପେଁ,
ଢୋଲ ବାଜେ ଢାଉଁ ଢାଉଁ
କେନ୍ଦରା କେଁ କେଁ ।

ହାରମାନିଆ କୁଁ କୁଁ,
ସିତାରା ଟୁଙ୍ଗ୍ ଟୁଙ୍ଗ୍,
ଡୁବି ତାବଲା ତାକିଟା ତାକିଟା
ମାଦଳ ଧେତାଙ୍ଗ ଟୁଙ୍ଗ୍ ।

କିଏ କେମିତି ବୋବାଏ
କୁଆ କରେ କାଆ କାଆ,
କୋଇଲି କୁଉ କୁଉ ।
କୁକୁଡ଼ା କରେ କକ୍‌ରେ କଅ
ପାରା ଘୁମୁରେ ଘୁରର୍ ।

ବିଲେଇ କରେ ମ୍ୟାଉଁ ମ୍ୟାଉଁ,
କୁକୁର ଭୋ ଭୋ,
ଛେଳି ବୋବାଏ ମେଁ ମେଁ
ବିଲୁଆ ହୁକେ ହୋ ।

କିଏ କେତେ ଉଚ୍ଚା
ମୋ'ଠୁ ଉଚ୍ଚା ଆମ ପାଚେରି,
ତା'ଠୁ ଉଚ୍ଚା ତାଳ ଗଛଟା
ତା'ଠୁ ଉଚ୍ଚା ପାହାଡ଼ ଦେଖ,
ତହିଁରେ ଗଛ ଲଟା ।

ହାତକୁ କେମିତି ଲାଗେ
ପଥର ଗୋଡ଼ି ଇଟା,
ହାତକୁ ଲାଗେ ଟାଣ,
ତୁଳା, ଫୁଲ, ପତର
ନରମ ଲାଗେ ଜାଣ ।

ଇମିତି ଆଉରି କ'ଣ ଅଛି
ନରମ ଅବା ଟାଣ ?
ଜାଣିଥିଲେ କୁହରେ ପିଲେ
ସେଗୁଡ଼ିକର ନାମ ।

**କେଉଁଟା ମୋଟା କେଉଁଟି ସରୁ**

କଣିକା ସରୁ ବାଉଁଶ ମୋଟା
ନଡ଼ିଆ ଗଛ ଆଉରି ମୋଟା
ତାଠୁ ମୋଟା ତେନ୍ତୁଳି ଗଛ
ତେନ୍ତୁଳି ଲାଗେ ଖଟା ।

**ରାତି ପାହିଲା**

ପାହିଲା ରାତି, କୁଆ ରାବିଲା,
ଆଇଲା ଖରା, ସକାଳ ହେଲା
କହିଲା କୁଆ, ଉଠ୍ କୁନା ଉଠ୍
କହିଲା ଖରା, ଫୁଟ୍ ଫୁଲ ଫୁଟ୍ ।

**ସାତବାର**

ବାରକୁ ବାର ଯେ ସାତଟି ବାର
କହୁଅଛି ଶୁଣ ଏହି ପ୍ରକାର ।
ସୋମ, ମଙ୍ଗଳ ଯେ ତା'ପରେ ବୁଧ
ଗୁରୁ, ଶୁକ୍ର ପରେ ଶନିକି ହେଜ ।
ରବିବାର ଦିନ ଛୁଟି,
ରାତିକୁ ଖାଇବା ଗରମ ରୁଟି ।
ସାତବାର ନାମ ଯିଏ କହିବ
ସୁନାପିଲା ବୋଲି ତାକୁ ଜାଣିବ ।

## ଆସରେ ପିଲେ ମାରିବା ତାଳି

(ଶିକ୍ଷକ ତଳଲିଖିତ ଧାଡ଼ିଗୁଡ଼ିକ ଉଚ୍ଚସ୍ୱରରେ କହିବେ । କହିସାରି ଏକ ଦୁଇ କହିବେ । ଏକ କହିଲାବେଳେ ଗୋଟିଏ ତାଳି ଏବଂ ଦୁଇ କହିଲାବେଳେ ଗୋଟିଏ ତାଳି ମାରିବେ । ପିଲାଏ କେବଳ ଏକ ଦୁଇ କହି ଶିକ୍ଷକଙ୍କ ସାଂଗରେ ତାଳିଦେବେ । ଶିଖିଗଲା ପରେ ଶିକ୍ଷକ ବା ଜଣେ ଛାତ୍ର ବା ଛାତ୍ରୀ ଏହିପରି ଲେଖାଥିବା ଧାଡ଼ି ଡାକିବ । ପିଲାଏ ଏକ ଦୁଇ ମନେମନେ ଭାବି ପୂର୍ବବତ୍ ଦୁଇଟି ମାରିବେ ।)

| | ତାଳି | ତାଳି |
|---|---|---|
| ପାଣିରେ ବୁଡ଼ | ୧ | ୨ |
| ଗଛରେ ଚଢ଼ | ୧ | ୨ |
| ଆକାଶେ ଉଡ଼ | ୧ | ୨ |
| ସଅଳ ଉଠ | ୧ | ୨ |
| ମୁହଁଟି ଧୁଅ | ୧ | ୨ |
| ଦାନ୍ତକୁ ଘଷ | ୧ | ୨ |
| ଅଳପ ହସ | ୧ | ୨ |
| ଟିକିଏ ଖାଅ | ୧ | ୨ |
| ଗୀତଟି ଗାଅ | ୧ | ୨ |
| ପଢ଼ରେ ପାଠ | ୧ | ୨ |
| ତେବେ ଯେ ହେବ | ୧ | ୨ |
| ଅସଲ ଭଟ | ୧ | ୨ |

(ଏତକ ଅଭ୍ୟାସ ହୋଇ ସାରିଲା ପରେ "ପାଣିରେ ବୁଡ଼" "ଗଛରେ ଚଢ଼" ଆଦି କହି ସାରିଲା ପରେ ପିଲାଏ ଦୁଇଟି ତାଳି ନ ମାରି "ଟୁଙ୍ଗ୍ ଟୁଙ୍ଗ୍" କହିବେ । ଶିକ୍ଷକ-ଶିକ୍ଷୟିତ୍ରୀ ବାକ୍ୟଗୁଡ଼ିକ ଉଚ୍ଚ ବା ନୀଚ ସ୍ୱରରେ "ଟୁଙ୍ଗ୍ ଟୁଙ୍ଗ" ବୋଲି କହିବେ । ପରେ ଜଣେ ଛାତ୍ର ଏହି ଖେଳ ଦେଖାଇବେ । ଏହାଦ୍ୱାରା ପିଲାଏ ତାଳ ଦେଇ ଶିଖିବେ । ତାଳ ରଖିବା ଦୈନନ୍ଦିନ ଜୀବନରେ ଶୃଙ୍ଖଳା ରଖିବାରେ ରୁଚି ଜାଗ୍ରତ କରାଏ ।)

ଆଙ୍କି ଦେଇଯାଅ ପାଦର ଧାଡ଼ି
ତଳେ ପାଦରଖି ଚଅକ୍ ଧର
ଚଅକ୍‌ରେ ଆଙ୍କ ପାଦ ଦୁମର ।
ଆଉ ପାଦଟିକୁ ଆଗକୁ ରଖ,
ଚଅକ୍ ବୁଲାଇ ପାଦକୁ ଆଙ୍କ ।

ଇମିତି ଆଗକୁ ଆଗକୁ ଚାଲି,
ଆଙ୍କି ଦେଇଯାଅ ପାଦର ଧାଡ଼ି ।

(ପିଲାଏ ଚଅକ୍, କ୍ରେଅନ୍ ବା ସ୍କେଚ୍‌ପେନ୍ ବ୍ୟବହାର କରିପାରନ୍ତି, କିମ୍ବା ଦାନ୍ତକାଠି ଛେଚି ଗେରୁ, ହଳଦୀ, ଅଳତା ବା ସ୍ୟାହିରେ ବୁଡ଼ାଇ ପାଦକୁ ଆଙ୍କି ପାରିବେ ।)

**ହ, ହ, ଡି, ଡି**

ଯାଇଥିଲି ଦିନେ ଗହୀର ବିଲ,
ଦାଦା କରୁଥିଲେ ବିଲରେ ହଳ,
ହ, ହ, ଡି, ଡି, କରୁଥିଲେ ପାଟି
ମାଟି ତାଡୁଥିଲା ଲଙ୍ଗଳ ଫାଳ ।

**କଣ୍ଢେଇମାନେ**

ଜାଣିଛ କି ମାଆ କାଲି ରାତିରେ
କଣ୍ଢେଇମାନେ କଅଣ କଲେ ?

ଶୋଇଲା ଘରେ କେତେ ନାଚିଲେ
ବଡ଼ ପାଟିକରି କେତେ ଡାକିଲେ ।

ଧଡ଼ପଡ଼ ହୋଇ ଉଠିଲି ମୁହିଁ
ଦେଖିଲା ବେଳକୁ ନାହାଁନ୍ତି କେହି ।

ବାରଣ୍ଡାକୁ ଯେବେ ଦେଲି ମୁଁ ଚାହିଁ
ଶୋଇ ଯାଇଛନ୍ତି ସବୁ କଣ୍ଢେଇ ।
ଘୁଙ୍ଗୁଡ଼ି ମାରନ୍ତି ନିଦରେ ଶୋଇ ।
(ପିଲାଟି ସପନ ଦେଖୁଛି)

**ପୁଷି ବିଲେଇ**

ଚୁଟୁକୁ ମୁଟୁକୁ ପୁଷି ବିଲେଇ,
ମାଛ ଖଣ୍ଡି ଧରି ଗଲା ପଳେଇ ।

ଫୁଲଗଛ ମୂଳେ ଗଲା ସେ ଲୁଚି,
ଖାଉଥିଲା ମାଛ ଆଖିକୁ ବୁଜି ।

ଗଲି ଯେତେବେଳେ ତାହାର ପାଶ,
ଉହିଁଦେଇ ପୁଣି ମାନିଲା ଦୋଷ ।

**କଣ୍ଢେଇ ହାତୀ**

ରାତିଅଧରେ ପଶିଲା ଥରେ
ବାମପଟ ତୁମ ଉତ୍ତର ହୋଇବ,
ଡାହାଣ ହେବ ଦକ୍ଷିଣ,
ଯେଉଁ ଦିଗଆଡୁ ଉଅଁଇ ସୂରୁଯ
ପୂରୁବଟି ସେହି ଜାଣ ।

**ଏଇତ ମୋର ମଥା**

ଏଇତ ମୋର ମଥା
ଖରା ବରଷା ବାଉ ସହେରେ
ଧରଇ ଯେବେ ଛତା,
(ମୁଁ) ଧରଇ ଯେବେ ଛତା...( ୧ )

ଏଇତ ମୋର ଆଖି,
ଖୋଲିଲେ ଆଖି ଦେଖେ ମୁଁ ସବୁ
ରହେନା କିଛି ବାକି ।
(ମୋର) ରହେନା କିଛି ବାକି...( ୨ )

ଏଇତ ମୋର ନାକ,
ଯିବାଆସିବା କରେ ପବନ
ଏଇଠି ଜୀବନଯାକ ।
(ମୋର) ଏଇଠି ଜୀବନ ଯାକ...(୩)

ଏଇତ ମୋର ପାଟି,
ଯାହା ମୁଁ ଖାଏ, ଚୋବାଏ ଦାନ୍ତ
ଦିଅଇ ସବୁ ବାଟି....(୪)

ଜିଭ ଏଇ ମୋହରି,
କୁହଇ କଥା ମିଠାମିଠା
ସୁଆଦ ପାରେ ବାରି...(୫)

କାନ ଦିଓଟି ପୁଣି,
ପତରଟିଏ ପଡ଼ିଲେ ତଳେ
ପାରଇ ମୁହିଁ ଶୁଣି...(୬)

ଏଇ ତ ମୋର ହାତ,
ବାଁ ହାତରେ ଉଡ଼ାଏ ମାଛି
ଡାହାଣେ ଖାଇ ଭାତ....(୭)

ଏଇତ ମୋର ବାହା,
ଦେହକୁ ମୋର ଦିଅଇ ବଳ
ସବୁ କାମକୁ ସାହା ।
(ମୋର) ସବୁ କାମକୁ ସାହା....(୮)

ଏଇତ ମୋର ପେଟ,
ଯାହା ମୁଁ ଖାଏ, ଯାହା ମୁଁ ପିଏ
ସବୁ ଏଇଠି ଭେଟ
(ମୋର) ସବୁ ଏଇଠି ଭେଟ....(୯)

ପାଦ ଦୁଇଟି ଏଇ,
ଦୁନିଆସାରା ଚଲଇ ମୁହିଁ
ପାଦରେ ଭରା ଦେଇ....(୧୦)

### ତିନୋଟି ତାଳି

(ଶିକ୍ଷକ କହିବେ, ପିଲାମାନେ ଏକ, ଦୁଇ, ତିନି କରି ୩ଟି ତାଳି ମାରିବ ।)

| | | | |
|---|---|---|---|
| ତାଳି | ୧ | ୨ | ୩ |
| ଜାଣିଚ ମୁଁ କିଏ ? | ୧ | ୨ | ୩ |
| ତୁମରି ପାଖେ ଥାଏ, | ୧ | ୨ | ୩ |
| କରେ ଟିକ୍‌ଟିକ୍ | ୧ | ୨ | ୩ |
| ସମୟ କହେ ଠିକ୍, | ୧ | ୨ | ୩ |
| କିଏରେ ତୁମେ, ଭାଇ ? | ୧ | ୨ | ୩ |
| ମୁଁ ଗୋଟେ ଟିକି ଚଢ଼େଇ | ୧ | ୨ | ୩ |
| ଖାଅ ତୁମେ କିସ ? | ୧ | ୨ | ୩ |
| ଟିକି ଟିକି ପୋକ | ୧ | ୨ | ୩ |
| କଣ ତୁମେ କର ? | ୧ | ୨ | ୩ |
| ଉଡ଼େ ମୁଁ ଆକାଶର | ୧ | ୨ | ୩ |
| କେମିତି ତୁମେ ଉଡ଼ ? | ୧ | ୨ | ୩ |
| ଫଡ଼ର ଫଡ଼ର ଫଡ଼ର | ୧ | ୨ | ୩ |
| ଫୁରର୍ ଫୁରର୍ ଫୁରର୍ | ୧ | ୨ | ୩ |

(ଏଥରକ ଶିକ୍ଷକ ଉଚ୍ଚ ଓ ନୀଚ ସ୍ୱରରେ କହିଲେ, ପିଲାଏଁ ତାଙ୍କୁ ଅନୁକରଣ କରି ଉଚ୍ଚ ଓ ନୀଚ ସ୍ୱରରେ "ଚିଁ ଚିଁ ଚି"" କହିବେ ।)

### ଚାରିଟି ତାଳି

| | | | | |
|---|---|---|---|---|
| ତାଳି | ୧ | ୨ | ୩ | ୪ |
| ଜହ୍ନିଫୁଲ ଠୋ ଠା | ୧ | ୨ | ୩ | ୪ |
| କାକୁଡ଼ି ଫୁଲ ଠୋ ଠା | ୧ | ୨ | ୩ | ୪ |
| ଗୁଣ୍ଡୁଚି ମୂଷା କହିଯାଇଛି | ୧ | ୨ | ୩ | ୪ |
| ଚାଉଳ ମୁଠିଏ ଥୋଇ ଥା । | ୧ | ୨ | ୩ | ୪ |
| ଇଟିକିଲି ମିଟିକିଲି | ୧ | ୨ | ୩ | ୪ |
| ଫୁଟିଗଲା କାଇଁଚ | ୧ | ୨ | ୩ | ୪ |
| ତୁମର ଆମର ନାଲି ପଇଁଚ | ୧ | ୨ | ୩ | ୪ |

ନାଲି ପେଁ ପେଁ ବାଜଇ ହୀରା   ୧   ୨   ୩   ୪
ଗୋଟିକ ପରେ ଗୋଟିଏ ଟୀରା   ୧   ୨   ୩   ୪

(ଏଥର ଶିକ୍ଷକ ବା ଗୋଟିଏ ଆଗୁଆ ଛାତ୍ରର ଡାକକୁ ଅନୁକରଣ କରି ଉଚ୍ଚ ବା ନୀଚ ସ୍ୱରରେ ପିଲେ କହିବେ, "ଡିଙ୍ଗ୍ ଡଙ୍ଗ୍ ଡିଙ୍ଗ୍ ଡଙ୍ଗ୍" ।)

**କାହାରଙ୍ଗ କେମିତି**

ଚୂନ ଧଉଳା ଘରଟି ଧଳା
ଧଳା ଗାଈର କ୍ଷୀର,
ଧୋବ ଫରଫର ଧୋତି ଚଦର
ଟଗର ମଲ୍ଲି ଫୁଲ ।
କୁଆକଳା, କୋଇଲି କଳା,
କଳା କଜଳପାତି,
ଜାମୁକୋଳିଟି ପାଚିଲେ କଳା
କଳା ଅନ୍ଧାର ରାତି ।
ସିନ୍ଦୂର ଲାଲ, ମନ୍ଦାର ଲାଲ
ଲାଲ ଗୋଲାପ ହସେ,
ବେଳ ବୁଡ଼କୁ ସୂରୁଯ ଲାଲ
ଦେଖ କେମିତି ଦିଶେ ।
ପାଚିଲା କଦଳୀ ଅମୃତଭଣ୍ଡା
ଦିଶଇ ହଳଦିଆ,
ବଟା ହଳଦୀ ସୁନାରୀ ଫୁଲ
ହଳଦିଆ ଜାଣିଥା ।
ଶାଗୁଆ ଦିଶେ ଗଛ ପତର
ସବୁଜ ବଣଭୂଇଁ
କଞ୍ଚା କଦଳୀ, ଆମ୍ବ କଞ୍ଚା
ଶାଗୁଆ ଦିଶୁଥାଇ ।
ଖୋଲା ଆକାଶ ନେଳିଆ ଦିଶେ
ଦୂର ପର୍ବତ ନୀଳ,
ନେଳିଆ ଦିଶେ ଆମର ବାଡ଼ିର
ଅପରାଜିତା ଫୁଲ ।

**ପାଟିକି କେମିତି ଲାଗେ**

ଚିନି ଗୁଡ଼ ମିଠା, ପୁଣି ଖିରୀ ପିଠା,
ରସଗୋଲା ରାଜଭୋଗ,
ଚକୋଲେଟ୍ ଯେବେ ଖାଇବ ବେଶି,
ଦାନ୍ତକୁ ଧରିବ ରୋଗ ।

କଞ୍ଚାଲଙ୍କା ରାଗ ଆଉ ଅଦା ସୁଣ୍ଠି,
ଗୋଲମରିଚ ଯେ ପୁଣି,
ଏଥିରୁ ଗୁଡ଼ିଏ ଫେଡ଼େଇ ଦେଲେ,
ଆଖିରୁ ବହଇ ପାଣି ।

ଆମ୍ବ, ଆମ୍ବେଡ଼ା, କରମଙ୍ଗା ଖଟା
ଖଟା ତେନ୍ତୁଳି ଆମ୍ବୁଲ
ତୁମ ଆଗେ କେହି ଋଟିଲେ ଧରି
ପାଟିରୁ ବୁହଇ ଲାଳ ।

ନିମ୍ବ ପିତା, ପୁଣି କଲରା ପିତା,
ଖାଇବା ପିତା ଶାଗ,
ରୋଗ ବଇରାଗ, ଦେହକୁ ନହେବ,
ସଦା ମନେ ରଖିଥିବ ।

ଦେହକୁ କରଇ ଗୁଣ,
ଯେତେ ଯାହା ଖାଅ, ନ ଲାଗେ ଭଲ,
ପଡ଼ି ନଥିଲେ ଯେ ଲୁଣ ।

**ଆଗ ପଛ ଉପର ତଳ**

ଆମେ ଆଗ ପଛ, ଉପର ତଳ
ଖେଳ ଖେଳୁଛୁ ( ୨ )

ଆମେ ଆଗକୁ ଆଗକୁ ଯାଉଛୁ ।( ୨ )
ଆମେ ପଛକୁ ପଛକୁ ଆସୁଛୁ ।( ୨ )
ଆମେ ଆଗକୁ ଆଗକୁ
ପଛକୁ ପଛକୁ ଖେଳ ଖେଳୁଛୁ
ଆମେ ଆଗ ପଛ ଉପର ତଳ.... ।

ଆମେ ଉପରକୁ ଉପରକୁ ଯାଉଛୁ ।( ୨ )
ଆମେ ତଳକୁ ତଳକୁ ଆସୁଛୁ ।( ୨ )
ଆମେ ଉପରକୁ ଉପରକୁ,
ତଳକୁ ତଳକୁ ଖେଳ ଖେଳୁଛୁ ।
ଆମେ ଆଗ ପଛ ଉପର ତଳ.... ।

ଆମେ ଡାହାଣକୁ ଡାହାଣକୁ ଯାଉଛୁ,
ଆମେ ବାଆଁକୁ ବାଆଁକୁ ଆସୁଛୁ,
ଆମେ ଡାହାଣକୁ ଡାହାଣକୁ
ବାଆଁକୁ ବାଆଁକୁ ଖେଳ ଖେଳୁଛୁ ।
ଆମେ ଆଗ ପଛ ଉପର ତଳ.... ।

ଆଗକୁ ଆଗକୁ ଯାଆରେ ମାଡ଼ି
ଆସରେ ପିଲେ ଗୋଟିଏ ପାଦ
ଆଗକୁ ଯିବା ଆଗକୁ ଯିବା ।
ଆସରେ ପିଲେ ଗୋଟିଏ ପାଦ
ପଛକୁ ଯିବା ପଛକୁ ଯିବା ।

ଆସରେ ପିଲେ ଦୁଇଟି ପାଦ
ଆଗକୁ ଯିବା ଆଗକୁ ଯିବା
ଆସରେ ଦୁଇଟି ପାଦ
ପଛକୁ ଯିବା ପଛକୁ ଯିବା ।

ଆସରେ ପିଲେ ଗୋଟିଏ ପାଦ
ବାଁକୁ ଯିବା ବାଁକୁ ଯିବା ।
ଆସରେ ପିଲେ ଗୋଟିଏ ପାଦ
ଡାଁକୁ ଯିବା ଡାଁକୁ ଯିବା ।
ଆସରେ ପିଲେ ଦୁଇଟି ପାଦ
ବାଁକୁ ଯିବା ବାଁକୁ ଯିବା ।
ଆସରେ ପିଲେ ଦୁଇଟି ପାଦ
ଡାଁକୁ ଯିବା ଡାଁକୁ ଯିବା ।
ପଛକୁ ପଛ ହୁଅରେ ଠିଆ
ଆଗକୁ ଆଗ ମାଡ଼ି ତୁ ଯା ।

(ଶିକ୍ଷକ ପିଲାଙ୍କୁ ଏହିପରି ଡ୍ରିଲ୍ କରାଇବେ ଏବଂ ଧାଡ଼ିରେ ମାର୍ଚ୍ଚିଂ କରାଇବେ ।)

**କାମ କଲେ ହେବ ଜଗତଜିତା**

ବାପା ଚାଲିଗଲେ ବିଲକୁ ଏବେ
ମାଆଙ୍କୁ ହେଇଚି ଜର,
କୁନି ତୁ ଯାଆରେ ଆଣିବୁ ପାଣି
ଓଳେଇ ଦେଉଛି ଘର ।
ଲକ୍ଷ୍ମୀପଣ କରି, ମାଆଙ୍କୁ ଦଉଚି
ଦେ ତୁ ବାସନ ମାଜି,
ପରିବା କାଟି ତୁ, ମସଲା ବାଟିଲେ
ରୋଷେଇ କରିବି ଆଜି ।
କହିଲା କୁନା, ହଁ ଲୋ ମିତା,
ବଳେଇ ନଯିବ ଏଇ କାମଟା,
କାମକଲେ ହେବା ଜଗତଜିତା ।

**ଚକାଚକା ଭଉଁରୀ**

ଚକାଚକା ଭଉଁରୀ
ଚକାଚକା ଭଉଁରୀ
ଲାଗିଲାଗି ହୁଅ ଠିଆ
ହୋଇ ଗୋଟେ ଧାଡ଼ି ।

ନାଚ ପିଲେ ଧିନାଧିନ୍
ପକେଇ ଗୋଡ଼ ପାହୁଲ,
ହାତକୁ ହାତ ଧରି ହୁଅ
ଚକପରି ଗୋଲ ।

ତାଳିମାରି ତାଳିମାରି
ହସି ଦିଅ ହସ,
ତଳେ ମାଟି, ଉପରେ ଦେଖ
ନେଳିଆ ଆକାଶ ।

(ନେଳିଆ ଆକାଶ କହିସାରିଲା ପରେ - ପିଲାଏ ଦୁଇ ଜଙ୍ଘ ବା ଦୁଇ ବାହାରେ ହାତ ପିଟିବେ ଏବଂ ହାତ ଓ ମୁହଁ ଉପରକୁ କରି ହାଃ ହାଃ ହାଃ ହାଃ ହାଃ ହାଃ ହାଃ ହାଃ ବୋଲି କହିବେ ।)

**ବରଷକ ବାରମାସ**

ମାସକୁ ମାସ ବାରମାସ,
ମିଶିକରି ହୁଏ ଏକ ବରଷ ।
ବଇଶାଖ ପୁଣି ଜ୍ୟେଷ୍ଠ ଗଲେ,
ଆଷାଢ଼ ଶ୍ରାବଣ ଆସନ୍ତି ଭଲେ ।
ଭାଦ୍ରବ ଗଲେ ଆସେ ଆଶ୍ୱିନ,
କାର୍ତ୍ତିକ ମାରଗଶିରକୁ ଜାଣ ।
ପଉଷ ପରେ ମାଘର ଭେଟ,
ତାପରେ ଫଗୁଣ ପୁଣି ଚଇତ ।
ବାରମାସର ନାମ ଏହି
ଗୋଟିଗୋଟି କରି ଦେବାରେ କହି ।

**ବରଷା କହେ**

(ସଂଗୃହୀତ)

ବରଷା କହେ ମାଟିରେ
ତୁ ବତୁରି ବତୁରି ଯା,

ମାଟି କହେ ଗଛାରେ
ତୁ ଉଠୁରି ଉଠୁରି ଯା ।
ଗଛା କହେ ପତ୍ରରେ
ତୁ ପତୁରି ପତୁରି ଯା,
ପତ୍ରକହେ ଗଛରେ
ତୁ ଉଠିଉଠି ଯା ।
ଗଛ କହେ ଫୁଲରେ
ତୁ ଫୁଟିଫୁଟି ଯା,
ଫୁଲ କହେ ଫଳରେ
ତୁ କଷି ଧରି ଯା
ମା' କହେ ଫଳରେ
ତୁ ବଢ଼ିବଢ଼ି ଯା,
ବଢ଼ିଲେ ତୁ ଖାଇବେ ପିଲେ,
କରି ଏଡ଼େ ଅାଁ ।

କୁଆ ଉଡ଼ିଗଲା ଝଳକୁ ଝଳ
କୁଆ ଉଡ଼ିଉଡ଼ି ଝଳକୁ ଝଳ
ଯାଇ ପହଞ୍ଚିଲା କମାରଶାଳ ।
ଦେଖିଲା କମାର ତାତିଲା ଲୁହା
ଢଣ୍ଢାଣ ପିଟେ ତୁହାକୁ ତୁହା ।
ତହୁଁ ଉଡ଼ିଗଲା ବଢ଼େଇ ଘରେ
ବଢ଼େଇ ଲାଗିଚି କାଠକାମରେ ।
କରତଇ କାଠ ସରର୍ ସର,
ନିହଣ ମୁଗୁର ଠକ୍ ଠକ୍‌ର ।
ଏବେ କୁଆଗଲା କୁମ୍ଭାର ଘର,
ଚକ ବୁଲୁଥିଲା ଘରର୍ ଘର୍ ।
କୁମ୍ଭାର ଗଢ଼ିଲା ହାଣ୍ଡି ମାଠିଆ
ଏହାଦେଖି କାବା ହୋଇଲା କୁଆ ।

ଏବେ କୁଆଗଲା ଗୁଡ଼ିଆ ଘର,
ଦୂରୁ ଶୁଭୁଥିଲା, ସରର୍ ସାଇଁ ସରର୍ ସରର୍ ।
ଦେଖିଲା ବେଳକୁ ସେବତୀ ଖୁଡ଼ୀ,
ଭାଜୁଛି ଗରମ ମୁଢ଼ି,
କୁଆ ଖୁଡ଼ୀ ପାଶେ ଗଲା ହାବୁଡ଼ି ।
କହିଲା କୁଆ, ହଇଲୋ ଖୁଡ଼ୀ
ମୁଢ଼ି ଗଣ୍ଡିଏ ଦେ
ଆଞ୍ଜୁଳେ ମୁଢ଼ି ଥୋଇଲା ଖୁଡ଼ି
କହିଲା କୁଆ ତୁ ନେ
ମୁଢ଼ିତକ ଖାଇ, ଖୁଡ଼ୀକୁ ସେଇ
କେତେ ଧନ୍ୟବାଦ ଦେଇ,
କାଆ କାଆ କରି, ଆମ ବିଲବାଡ଼ି
ଆସିଲା ଖେଳିବା ପାଇଁ ।

ଦାନ୍ତ

ପାଟିର ଭିତରେ ରହିଛି ଦାନ୍ତ,
ଚକଟି ଦିଏ ଯା' ଖୁଆଏ ହାତ ।
ଜିଭ ଠେଲିଦିଏ ତଣ୍ଟିର ବାଟେ
ଯାହା ଖାଉ ଆମେ ପଡ଼ଇ ପେଟେ
ଭାବି ଦେଖ ଥରେ ଦାନ୍ତ ନଥିଲେ,
ଖାଉଥାନ୍ତେ ଆମେ କି କଲବଲେ ।
ଦୁଇଓଳି ଦାନ୍ତ ଘସିବା ଯେବେ,
ଦାନ୍ତ ସନ୍ଧି ସଫା ରହିବ ତେବେ ।
ମିଠା ଦରବରୁ କମ୍ ଖାଇବା
ଖାଇସାରି ନିଶ୍ଚେ କୁଳି କରିବା ।
ଅଁଳା, ପିଜୁଳି, ଆତ, କଦଳୀ
ଆମ୍ବ, ଲେମ୍ବୁପୁଣି ଯେତେକ କୋଳି ।
ଏଇସବୁ ଫଳ ଯିଏ ଖାଇବ,
ଦାନ୍ତ କ'ଣ ତା'ର କେବେ ପଡ଼ିବ ?

## କିଏ କେଉଁଠି ଖେଳେ

ମାଛ ଖେଳଇ ନଦୀ ଜଳେ
ଚଢ଼େଇ ଖେଳେ ଗଛ ଡାଳେ,
ଖେଳଇ ପୁଷି ଅଗଣାରେ
ମୂଷା ଖେଳଇ ଅନ୍ଧାର ଘରେ,
ଖଳାବାଡ଼ିରେ ବାଛୁରୀ ଖେଳେ
କୁକୁର ଖେଳେ ଦାଣ୍ଡ ଆଡ଼େ,
ଜହ୍ନର ଛାଇ ପାଣିରେ ଖେଳେ
ମୋ ଛାଇ ମୋ ସାଂଗେ ଦଉଡ଼େ ।

## ଜହ୍ନମାମୁଁ

ଆ' ଜହ୍ନମାମୁଁ ସରଗଶଶି
ଆକାଶେ କୁଆଡ଼େ ଯାଉଚୁ ଭାସି ?
ଓହ୍ଲାଇ ଆ'ତୁ ଆମରି ଗାଁ
ଗାଁ ପଡ଼ିଆରେ ମାରିବା ଡିଆଁ,
ଫୁଟବଲ୍ ତୋତେ ଆମେ କରିବୁ
ଦିନକଯାକ କେତେ ଖେଳିବୁ,
ତୋ' ଦେହଟା ତୋଫା ପୁଣି ଗୋଅଲ
ମାରୁଥିବୁ ବିକ୍ ଥରକୁ ଥର ।
ଖେଳିଖେଳି ଆମେ ସଞ୍ଜବେଳକୁ
ହେଡ କରିଦେଲେ ଆକାଶେ ଯିବୁ ।

## ଆମ କୁନା ଯିବ ମାମୁଁଘର

ଆମ କୁନା ଯିବ ମାମୁଁଘର
କୁଲେଇ କୁଣେଇ ସଜକର ।
ପ୍ର. - ମାମୁଁଘରେ କିଏ ଅଛି ?
ଉ. ଅଜା ଅଛି
ଠୁକୁଠୁକୁ ବାଡ଼ି ଗ୍ଭଲି ତା'ର

ଚାଲୁଥାଏ ଅଜା ଟରଟର
ବସିଥାଏ ଅଜା ଦାଣ୍ଡଘର,
ଦଉଡ଼ି ବଳଇ ସରସର ।
ଆମ କୁନା ଯିବ ମାମୁଁଘର ।
ପ୍ର. - ମାମୁଘରେ ଆଉ କିଏ ଅଛି ?
ଉ. - ଆଈ ଅଛି ।
ଗାଈ ଦୋହୁଁଥାଏ ଚରଚର
ଦହି ମୋହୁଁଥାଏ ସରସର ।
ଗାଈ ଦୋହୁଥାଏ ଚର୍‌ର୍ ଚର୍‌ର୍,
ଦହି ମୋହୁଁଥାଏ ସର୍‌ର୍ ସର୍‌ର୍
ଆମ କୁନା ଯିବ ମାମୁଁଘର ।
ପ୍ର. - ମାମୁଘରେ ଆଉ କିଏ ଅଛି ?
ଉ. - ମାମୁଁ ଅଛି ।
ସକାଳୁ ଉଠଇ ଟରଟର
ହଳ କରିବାକୁ ଆଗଭର
ହଳ କରିବାକୁ ଆଗଭର ।
ଆମ କୁନା ଯିବ ମାମୁଁଘର ।
ପ୍ର. - ମାମୁଁଘରେ ଆଉ କିଏ ଅଛିଁ ?
ଉ. - ମାଇଁ ଅଛି ।
ପିଠଉ ବଟାକୁ ଧଡ଼ପଡ଼,
ଖଡ଼ିକାଟା କରେ ଖଡ଼ଖଡ଼ ।
ଚିତଉ କରେ ସେ ବଡ଼ବଡ଼,
ଚକୁଳି କରେ ସେ ମଡ଼ମଡ଼ ।
ଆମ କୁନା ଯିବ ମାମୁଁଘର.... ।

**ଆଖି**

ଆଖି ଆଖି ଆଖି
ଆଖି ଭଲ ଥିଲେ ପାରିବା ଦେଖି ।
କରିବା ନାଟ, ଦେଖିବା ବାଟ

ପଢ଼ିବା ପାଠ, ପାରିବା ଲେଖି
ଆଖି ଭଲ ଥିଲେ ପାରିବା ଦେଖି ।
ଯାହାକୁ ଧରଇ ଅନ୍ଧାରକଣା,
ସଞ୍ଜହେଲେ ସେ ଯେ ହୁଅଇ ବଣା,
ଅଣ୍ଡାଳି ଅଣ୍ଡାଳି ବାଟ ଚାଲଇ,
ଆଖି ଥାଉଥାଉ ଅନ୍ଧ ବୋଲାଇ ।
ତା ଦୁଃଖରେ ଆମେ ହୋଇବା ଦୁଃଖୀ,
ଆଖି ଭଲ ଥିଲେ ପାରିବା ଦେଖି ।
ପିଲାଦିନୁ ଯେବେ ଖାଇବା ଶାଗ
ସଜନା, କୋଶଳା, ଖଡ଼ା, ପାଳଙ୍ଗ,
ଅମତଭଣ୍ଡା, ଗାଜର, ଆମ୍ବ,
ଆଖି ରୋଗ ଆଉ କେବେ ନୋହିବ ।
ବୁଢ଼ାକାଳେ ଆମେ ପାରିବା ଦେଖି,
ଆଖି ଭଲଥିଲେ ପାରିବା ଦେଖି ।

ମେଘ ବରଷିଲା ଟୁପୁରୁ ଟୁପୁରୁ
ମେଘ ବରଷିଲା ଟୁପୁରୁ ଟୁପୁରୁ
କେଶର ମାଇଲା ଗଜା,
ସାରୁ ଗଛମୂଳେ ବେଙ୍ଗଟିଏ ବସି
ଆପେ ବୋଲାଉଛି ରଜା ।
ମେଘ ବରଷିଲା ଝପର ଝପର
ଚାରିଆଡ଼େ ହେଲା ପାଣି
କୁଳି ବେଙ୍ଗଟିଏ କାହୁଁ ଉଠିଆସି
କହିଲା ମୁଁ ହେଲି ରାଣୀ ।
ବିଜୁଳି ରୋଷଣୀ ଘଡ଼ଘଡ଼ି ବାଜା
ବେଙ୍ଗ ରାଇଜର ମଜା,
ଖୁପୁରୁ ଖୁପୁରୁ ଡେଇଁ ଚାଲିଲେ ସେ
ଦେଖିବାକୁ ରାଣୀ ରାଜା ।

କଁ କାଁ କଁ କାଁ କରର୍ କରର୍, କଟର୍ କଟର୍
ଦେଲେ ବେଙ୍ଗ କେତେ ରଡ଼ି,
ଗଡ଼ିଆ କୂଳରୁ ସାରୁଗଛ ଯାଏଁ
ମାରିଦେଲେ ଲମ୍ଫାଧାଡ଼ି ।
ଏତିକିବେଳକୁ ସାପ ଗୋଟେ କାହୁଁ
ଗଛରୁ ଯେ ଗଲା ପଡ଼ି,
ଧପ୍‌ଧାପ୍, ଖପ୍‌ଖାପ୍, ଟପ୍‌ଟାପ୍
ଡେଇଁଡେଇଁ ବେଙ୍ଗ
ହେଲେ କେତେ ଗଡ଼ାଗଡ଼ି ।
ହେଲେ କେତେ ଗଡ଼ାଗଡ଼ି ।

ହାତୀ ନେ ଘୋଡ଼ା ନେ

ହାତୀ ନେ, ଘୋଡ଼ା ନେ
ମୋ ପେଁକାଳୀ ବଜେଇ ଦେ,
ହୀରା ନେ, ମୋତି ନେ,
ମୋ କଣ୍ଢେଇଟି ସଜେଇ ଦେ ।
ହାତୀ ନେ....
ସୁବର୍ଣ୍ଣର ଥାଳି ନେ, ମାଣିକର ମାଳି ନେ,
ମୋ ଗୁଡ଼ିଟିକୁ ଉଡ଼େଇ ଦେ,
ମୋ' ଛବି ବହି ପଢ଼େଇ ଦେ ।
ହାତୀ ନେ...
ଜାମା ନେ, ଯୋତା ନେ,
ଜରିପାଟ ଛତା ନେ,
ମୋ' ବରକୋଳି ଝଡ଼େଇ ଦେ,
ମୋ' ଖେଳଘର ଗଢ଼େଇ ଦେ ।
ହାତୀ ନେ...
ଶାରୀ ନେ, ଶୁଆ ନେ,
ଧଳା ଭାଲୁଛୁଆ ନେ,
ମୋ' ଚକଟିକୁ ବୁଲେଇ ଦେ,
ମୋ' ବେଲୁନ୍‌କୁ ଫୁଲେଇ ଦେ ।

ହାତୀ ନେ...
କ୍ଷୀରୀ ପୁରି ଖଜା ନେ,
ବଡ଼ ମାଛଭଜା ନେ,
ମୋ' ଦୋଳିଟିକୁ ହଲେଇ ଦେ,
ମୋ' ସାଇକେଲ୍ ଚଳେଇ ଦେ ।
ହାତୀ ନେ...

**ଚଢ଼େଇ ଉଡ଼ିଲେ ଧାଡ଼ିକି ଧାଡ଼ି**

କାଲି ସଞ୍ଜବେଳେ ଭାଇ, ଅନେକ ଚଢ଼େଇ,
ଯାଉଥିଲେ ଆକାଶରେ, ଗୀତ ଗାଇଗାଇ ।
କଁ କାଁ କୁକୁ, ଗୀତ ଗାଉଥିଲେ
କି ସୁନ୍ଦର ଧାଡ଼ିକରି ଉଡ଼ି ଯାଉଥିଲେ ।
ଉଡ଼ିଉଡ଼ି କରୁଥିଲେ ପୁଣି ଅଧା ଗୋଅଲ
ତଳୁ ଚାହିଁ ଦେଖିଲି ମୁଁ ଆହା କି ସୁନ୍ଦର !
ଭାବିଲି ସେମାନେ ଡ୍ରିଲ୍, ଶିଖିଲେ କେଉଁଠି ?
ସ୍କୁଲଟି, ତାଙ୍କର କି' ଆକାଶରେ ଅଛି ?

**ଚଢ଼େଇ ଉଡ଼ିଲେ ଧାଡ଼ିକି ଧାଡ଼ି**

କାଲି ସଞ୍ଜବେଳେ ଭାଇ, ଅନେକ ଚଢ଼େଇ
ଯାଉଥିଲେ ଆକାଶରେ, ଗୀତ ଗାଇଗାଇ ।
କଁ କାଁ କୁକୁ, ଗୀତ ଗାଉଥିଲେ
କି ସୁନ୍ଦର ଧାଡ଼ିକରି ଉଡ଼ି ଯାଉଥିଲେ ।
ଉଡ଼ି ଉଡ଼ି କରୁଥିଲେ ପୁଣି ଅଧା ଗୋଅଲ
ତଳୁ ଚାହିଁ ଦେଖିଲି ମୁଁ ଆହା କି ସୁନ୍ଦର !
ଭାବିଲି ସେମାନେ ଡ୍ରିଲ୍, ଶିଖିଲେ କେଉଁଠି ?
ସ୍କୁଲଟିଏ ତାଙ୍କ କି, ଆକାଶରେ ଅଛି ?

**ଶୀତ ଛାଡ଼ିଗଲା**

ଛାଡ଼ିଗଲା ଶୀତ ଛାଡ଼ ତୁ ଚାଦର
ହେଲାଣି ଦିନରେ ଗରମ

ସୁଲୁସୁଲୁ ହୋଇ ବହିଲା ପବନ,
ଦେହକୁ ଲାଗିଲା ଆରାମ ।
ଫୁଲପତ୍ର ସବୁ ଦିଶିଲା ସୁନ୍ଦର.
ଆମ୍ବଗଛେ ଦେଖ ବଉଳ ।
ଦୂର ତୋଟାମାଳୁ ଶୁଭିଲା ସଂଗୀତ
କୋଇଲିର ସ୍ୱର ମଧୁର ।
ଚତୁର୍ଦ୍ଦିଗ ଆହା କେଡ଼େ ମନୋହର
ଆସ ବୁଲିଯିବା ବାହାରେ
ଗଛପତ୍ର ବଣ ସଭିଏଁ ନାଚନ୍ତି,
ନାଚିବା ତାଙ୍କରି ସାଥୀରେ

**ଧରି କୋଦାଳ ହାତେ**

ଧରି କୋଦାଳ ହାତେ
ହାଣ ମାଟିର ଖେତେ
ଭୁଲି ତୁଚ୍ଛା ଗୁମାନ୍
ଚାଲ ସ୍ୱାଧୀନ ପଥେ
ରୋଗ ଭୂତ ଯେତେ
ଯେବେ ଯେଝା ବାଟେ
ଭୋକେ ଖିରି ପିଠା
ଖାଅ ଇଛା ଯେତେ ।
(ଗୁରୁ-ସଦୟ ଦତ୍ତଙ୍କ ବ୍ରତାଚାରୀ ଗୀତର ଅନୁସରଣରେ)

**ଆମ ଉତ୍କଳର ମାଟି**

ଆମ ଉତ୍କଳର ମାଟି
ଟିକିଟିକି ଘର ତା'ର
ଛୋଟଛୋଟ ଗାଁଟି
ଆମ ଉତ୍କଳର ମାଟି
ଆହା ଯତନରେ ଘରେ ଘରେ
ଦେବାରେ ଚିତା ଝୋଟି ।
ଆମ ଉତ୍କଳର ମାଟି ।

ଆମେ ଦାଣ୍ଡବାଡ଼ି ରଖିବା ନିରିମଳ
ମଇଳା ପାଣି, ବରଷାପାଣି ଋଲିବ ଖଳଖଳ
ହାଃ-ହାଇ, ଋଲିବ ଖଳଖଳ
ହାଃ-ହାଇ, ଋଲିବ ଖଳଖଳ
ଆମେ, ଗାଁ ପୋଖରୀ ରାସ୍ତାଘାଟ
ରଖିବା ପରିଷ୍କାର( ୨ଥର)
ଏଇ ମାଟିକି କରିବା ସୁନା
କୋଦାଳ ହାତେ ଖାଟି( ୨ଥର)
ଆମେ କୋଦାଳ ହାତେ ଖାଟି,
ଆମେ କୋଦାଳ ହାତେ ଖାଟି ।
ଆମ ଉତ୍କଳର ମାଟି.... ।
(ଗୁରୁ-ସଦୟ ଦରଙ୍କ ବ୍ରତଋରୀ ଗୀତ ଅନୁସରଣରେ)

କୁନା ମୁନା
ଥରେ କୁନା ମୁନା, ପାଞ୍ଚିଲେ ମନେ,
କରିବେ କାମ,
ସାବାସ୍ କହିବେ, ବାପା ଆଉ ମା',
ରହିବ ନାମ ।
ଦଉଡ଼ି ବାଲ୍‌ଟି ଧରି ହାତରେ,
କୂଅକୁ ଗଲେ,
ପାଣି କାଢ଼ିଲେ, ପାଣି କାଢ଼ିଲେ,
କାଢ଼ିଲେ ପାଣି, ପାଣି କାଢ଼ିଲେ ।
ବୋହିଲେ ସେ ପାଣି ରୋଷେଇ ଘରେ,
ଗାଧୁଆ ଘରେ,
ରଖିଲେ ସେ ପାଣି, ପାଣି କୁଣ୍ଡରେ
ରଖିଲେ ସେ ପାଣି, ପାଣି କୁଣ୍ଡରେ ।
ଘର ଗୋଟାଯାକ ଭାସିଲା ପାଣି,
ଓଦା ହେଲା ଋରିଆଡ଼,
ବାପାମାଆ ଯେବେ ଆସିଲେ ଘର

ଖସିଗଲା ତାଙ୍କ ଦିହିଁଙ୍କ ଗୋଡ଼,
ପଡ଼ିଗଲେ ତଳେ, ଘିଡ଼ଘାଡ଼ ।
କହିଲେରେ କୁନା ମୁନା
ଭଲ କାମଟିଏ କରିଲ ସିନା
କାଲିଠାରୁ ଏଇ, କୂଅର ପାଣି
ଫୁଲଗଛେ ତୁମେ ଦବରେ ଆଣି
ପନିପରିବାରେ ଦବରେ ଆଣି ।
କୁନାମୁନା ଦିହେଁ କଲେ ବଗିଚ୍ଚ,
ଢାଳିଲେ ପାଣି,
ହସିଲା ବଗିଚ୍ଚ, ଫୁଲ ଆଉ ଫଳ,
ନାଚିଲେ, ସେ ଦୁହେଁ, ତା ଧିନାଧିନି,
ନାଚିଲେ ସେ ଦୁହେଁ ତା ଧିନାଧିନି ।
(ଶିକ୍ଷୟିତ୍ରୀ ଆବୃତ୍ତି କରିବେ, ପିଲାମାନେ ଅଭିନୟ କରିବେ ।)

## କୁନିମୁନି

ଥରେ କୁନିମୁନି ରୋଷେଇଘରେ
କଅଣ କଲେ ?
କାଟିଲେ ପରିବା ଚକ୍‌ଚକ୍
ବାଟିଲେ ମସଲା ମସ୍‌ମାସ୍ ମସ୍‌ମାସ୍ ।
ତିଅଣ ରାନ୍ଧିଲେ ବଡ଼ ବଢ଼ିଆ,
ବଡ଼ ବଢ଼ିଆ,
ପକାଇଲେ ତହିଁ ଖଣ୍ଡି ନଡ଼ିଆ,
ପକାଇଲେ ତହିଁ ଖଣ୍ଡି ନଡ଼ିଆ ।
ବାପା ମା' କହିଲେ
ସାବାସ୍ କୁନି ସାବାସ୍ ମୁନି
ହେଲେ, ତିଅଣ କାହିଁକି ଲାଗିଲା ଲୁଣି ?
କୁନିମୁନି ଦୁହେଁ ଉହାଁଚୁହିଁ ହେଲେ
ପୋତିଲେ ମୁଣ୍ଡ ପୋତିଲେ ମୁଣ୍ଡ
ଲାଜରେ ଫିଟିଲା ନାହିଁ ତୁଣ୍ଡ ।

ବାପା ମାଆ ଦୁହେଁ ହୋଇଲେ ଖୁସି
ଦେଲେ ସେ ହସି
କହିଲେ ସାବାସ୍ ତୁମର ଗୁଣ,
ଲୁଣିଆ ପଛକେ ହେଉ ତିଅଣ ।
କୁନିମୁନି ଦୁହେଁ ହେଲେ ଆନନ୍ଦ,
ଆନନ୍ଦ ହେଲେ
ତାଳି ମାରିମାରି କେତେ ନାଚିଲେ,
ତାଳି ମାରିମାରି କେତେ ନାଚିଲେ ।
(ଶିକ୍ଷୟିତ୍ରୀ ଆବୃତ୍ତି କରିବେ, ପିଲାମାନେ ଅଭିନୟ କରିବେ ।)

**ଇଂରେଜୀ ମାସ**

ଆଗ ଆସେ ଜାନୁଆରୀ
ଫେବୃଆରୀ ତା'ପରେ
ଆମ୍ବ ବଉଳେ ଫୁଟଇ ଚଣା,
ପଣସ କଷି ଧରେ ।

ମାର୍ଚ୍ଚ ମାସ ଏପ୍ରିଲ୍ ମାସ,
ଆସନ୍ତି ପଛକୁ ପଛ
ସୁଲୁସୁଲିଆ ପବନ ବହେ,
ସୁନ୍ଦର ଲଟା ଗଛ ।

ମେ' ଆଉ ଜୁନ୍ ମାସରେ
ଅସଲ ଖରା କାଳ
ଝାଳ ବୁହଇ ଗମ୍‌ଗମ୍
ତାତିଯାଏ କାନ୍ଥବାଡ଼ ।

ଜୁଲାଇ ଅଗଷ୍ଟ ଦିଇଟି ମାସ,
ଆସିଯାଆନ୍ତି ଯେବେ
ଚଉଦିଗରେ ଭରଇ ପାଣି
ନଈବଢ଼ି ହୁଏ ତେବେ ।

ସେପ୍ଟେମ୍ବର ଅକ୍ଟୋବର,
ଘରିଆଡ଼ ନିରିମଳ
ଆଳୁ ଟମାଟୋ କୋବି ଗାଜର
ଲଗାଇବାର ବେଳ ।

ନଭେମ୍ବର ଡିସେମ୍ବର
ରାତି ଯାଏ ବଢ଼ି
ସକାଳ ଶୀତେ ନହୁଏ ଉଠି
ଦିହଟା ଯାଏ ଥରି ।

(ଇଂରେଜୀ ମାସ ଗୁଡ଼ିକର ସମୟ ସୂଚକ ଧାରଣା ଦେବାପାଇଁ ଋତୁଲକ୍ଷଣର ଆଶ୍ରୟ ନିଆଯାଇଛି ।)

**ମଶା (ନାଟକ)**

(ତିନି ଚାରିଟି ପିଲା ମଶାର ମୁଖାପିନ୍ଧି ବାହାରିବେ)

ମଶାମାନେ - (ଗୀତ)

ଆମେ ସବୁ ମଶା,
ଆମେ ସବୁ ମଶା
ଯେଉଁଠି ପାଣି ଜମିରହେ
ସେଇଠି ଆମ ବସା
ଆମେ ସବୁ ମଶା ।
ଯେଉଁ ଗାଆଁରେ ଦଳ ଗଡ଼ିଆ,
ସେଇଠି ଆମ ବସା
ଆମେ ସବୁ ମଶା ।
ସଞ୍ଜହେଲେ ଗୁଣୁଗୁଣୁ କରି
ମଣିଷଙ୍କୁ ଦେଉ ଶୁଣ୍ଢରେ ଫୋଡ଼ି
ମଣିଷଙ୍କୁ ଦେଉ ଶୁଣ୍ଢରେ ଫୋଡ଼ି ।
ତାପରେ କଣ ହୁଏ ?
(ସବୁ ମଶା ଏକସ୍ୱରରେ କହିବେ)
ମେଲେରିଆ ପୁଣି ବାତଜ୍ୱର,

କମ୍ପୁଥାଇ ଦିହ ଥରଥର
ମଣିଷଙ୍କୁ କରୁ କଲବଲ
ଆମର ଏଇ ଗୁଣ ଅସଲ ।

(ହାତରେ ସ୍ପ୍ରେୟର, ପ୍ଲାକାର୍ଡ ଓ ପୋଷ୍ଟର ଧରି ପିଲାଙ୍କର ପ୍ରବେଶ । ପିଲାଙ୍କୁ ଦେଖି ମଶାମାନେ ଛାଟିପିଟି ହୋଇ ପଳେଇ ଯିବେ ।)

ପିଲାମାନେ (ଗୀତ ମାର୍ଚ୍ଚିଂ ସହ)
ଆସରେ ଆସରେ ଜଲଦି ଜଲଦି
ମାରିବା ମଶାମାନଙ୍କୁ (୨ଥର)
ଛିଞ୍ଚିବା ଯେବେ ଔଷଧମାନ,
ମଶାମାନଙ୍କ ହେବ ମରଣ
ଘର ବାହାର ରଖିବା ସଫା,
କହିବା ଏହା ସଭିଙ୍କୁ ଆସରେ.....

ଆଲୁଅ ପବନ ଘରେ ବାହାରେ,
ମଶାରି ଟାଙ୍ଗି ଶୋଇବା ଘରେ
ମଶାଟି ଆମର ବଇରୀ ଜାଣ,
କହିବା ଏହା ସଭିଙ୍କୁ ଆସରେ....

(ପ୍ଲାକାର୍ଡରେ ଲେଖାଥିବ 'ମଶାମାନଙ୍କୁ ନିପାତ କର ।' ପିଲାଏ ସ୍ପ୍ରେୟର ବ୍ୟବହାର କରିବାର ଅଭିନୟ କରିବେ ।

ଶିକ୍ଷୟିତ୍ରୀ ମଶାମାନଙ୍କ ରହିବା ଓ ଅଣ୍ଡାଦେବା ସ୍ଥାନ, ମଶାକାମୁଡ଼ାରୁ ହେଉଥିବା ବେମାରି ଓ ମଶାମାନଙ୍କ ଦାଉରୁ ରକ୍ଷା ପାଇବାପାଇଁ ଉପାୟମାନ ସମ୍ବନ୍ଧରେ ପିଲାମାନଙ୍କୁ ବୁଝାଇବେ ।)

ରଖିବୁ ଗାଆଁର ନାଆଁ
ଏଇ ଆମରି ଗାଆଁ,
ଏଇ ଆମରି ଗାଆଁ
ଏଇ ଗାଆଁର ମଣିଷ ଆମେ
ରଖିବୁ ତାଆରି ନାଆଁ ।

ଏଇ ଆମରି ଗାଆଁ.....
ଏଠି ଫସଲ ଖେତେ
ମାଟିର ହସ ଫୁଟେ,
ତୋଟାମାଳର ପତ୍ର ଗହଳେ
କୋଇଲି ଡାକି ଉଠେ,
ସଞ୍ଜ ସକାଳେ ଫୁଟଇ ଫୁଲ
ବହଇ ଶୀତଳ ବାଆ ।( ୨ଥର)
ଏଇ ଆମରି ଗାଁ....
ଆମ ଗାଆଁର, ଘରୁ ହାଳି ଘର,
ହସଇ ଦିନରାତି,
ଦିନରେ ପିଲେ ରାତିରେ ବଡ଼
ପାଠ ପଢ଼ନ୍ତି ନିତି ।
ସଭିଏଁ ଆମେ ସାକ୍ଷର ହେବୁ
ରଖିବୁ ଗାଆଁର ନାଆଁ( ୨ଥର)
ଏଇ ଆମରି ଗାଆଁ.... ।

**ସାଙ୍ଗ ପଦନ**
କହିଲା ଶିଶିର, ଭାଇମାନେ ଶୁଣ,
ହେଲାଣି ଆଜିକି ପାଞ୍ଚଦିନ
ଦେଖାନାହିଁ ସାଂଗ ପଦନ ।
କହିଲା ସୁରେଶ; ଚାଲ ଭାଇମାନେ
ପଦନ ଘରକୁ ଯିବା
ଭଲମନ୍ଦ ପଚାରିବା ।
ସବୁ ସାଂଗମାନେ ଯାଇ ପହଞ୍ଚିଲେ
ପଦନର କୁଡ଼ିଆରେ,
ଉଚ୍ଚ ସ୍ୱରରେ ଡାକଦେଲେ ।
ଦେଖିଲେ ପଦନ ମଳିନ ବଦନ,
ବସିଅଛି ବାରିଆଡ଼େ
ଦେଇ ହାତ କପାଳରେ ।

ପୁଚ୍ଛନ୍ତେ ତାହାକୁ ନ ଯିବା କାରଣ
ବହିଲା ନୟନୁ ନୀର
ହେଲେ ବନ୍ଧୁମାନେ ଅଧୀର ।
କହିଲା ପଦନ ମୋର ନାହିଁ ବସ୍ତ୍ର
ନାହିଁ ମୋ ଖାତା ପୁସ୍ତକ
ଲାଗେ ମୋତେ ବଡ଼ ଦୁଃଖ ।
କେମନ୍ତେ ଯିବି ମୁଁ ପଢ଼ିବାକୁ ପାଠ
ଲାଗୁଅଛି ମୋତେ ଲାଜ,
ଜାଣୁଛ ଆମେ ଗରିବ ।
ବନ୍ଧୁମାନେ ତାର ହୋଇଲେ ଏକତ୍ର
ଆଣିଦେଲେ ବହିପତ୍ର
ଦେଲେ ଯେ ପୋଷାକପତ୍ର
ତାର ହାତଧରି ନେଲେ ବିଦ୍ୟାଳୟ
ସଭିଏଁ ହେଲେ ହରଷ
ଗୁରୁଜୀ କଲେ ସାବାସ ।

**ତାଳିମାର**

(ପିଲାମାନେ ଯୋଡ଼ିଯୋଡ଼ି ହୋଇ ପରସ୍ପରକୁ ମୁହଁକରି ଠିଆହେବେ । ତାପରେ ସେମାନେ ଏହିପରି ୪ଟି ତାଳି ମାରିବେ । ପ୍ରଥମରେ ୨ଜଣ ଯାକ ତଳକୁ ନଇଁ ନିଜର ଦୁଇହାତରେ ତାଳି ମାରିବେ । ଦ୍ୱିତୀୟରେ ଠିଆହୋଇ ନିଜର ଓ ଅପରର ଦୁଇହାତ ସାହାଯ୍ୟରେ ତାଳିମାରିବେ । ତୃତୀୟରେ ଦୁହିଁଙ୍କର ଡାହାଣ ହାତରେ ଓ ଚତୁର୍ଥରେ ଦୁହିଁଙ୍କର ବାମହାତରେ ତାଳିମାରିବେ । ଶିକ୍ଷକ ଗୋଟିଏ ଛାତ୍ରର ସାହାଯ୍ୟ ନେଇ ୪ଟି ତାଳି ମାରିବାର ଢଙ୍ଗ ଦେଖାଇ ଦେବେ । ତାଳିମାରିବା ଅଭ୍ୟାସ ହୋଇଗଲେ ନିମ୍ନଲିଖିତ ଗୀତଟି ବୋଲି ତାଳରେ ପିଲାଏ ତାଳି ମାରିବେ ।)

ବାଇଚଢ଼େଇରେ ବାଇଚଢ଼େଇ,
ତୋ ମା' ଯାଇଛି ଗାଈ ଚରେଇ ।

ଆଣିବ କଙ୍କଡ଼ା କୋଡ଼ିଏ ଗୋଟି
ତୁ ମୁଁ ଦୁହେଁ ଖାଇବା ବାଣ୍ଟି ।

ଅଧକ ଖାଇବା ବେସର କରି,
ଅଧକ ଖାଇବା ନିଆଁରେ ପୋଡ଼ି ।

କଙ୍କଡ଼ା ବେସର ସଅଡ଼ ସାଡ଼
କଙ୍କଡ଼ା ପୋଡ଼ାଟି କଅଡ଼ କାଡ଼ ।

**ପାହାଡ଼ରେ ଲଗାଅ ଗଛ**

ଲଣ୍ଡା ପାହାଡ଼ରେ, ଲଣ୍ଡା ପାହାଡ଼
ଦେହରେ ତୋହର ମାଉଁସ ନାହିଁ
ଦିଶୁଅଛି ଖାଲି ହାଡ଼ ।

ଲଣ୍ଡା ପାହାଡ଼ରେ ଲଣ୍ଡା ପାହାଡ଼
ରୋଗଣା ଦେହରେ କେତେ ତୁ ସହିବୁ
ଖରା ବରଷାର ମାଡ଼ ?
ଚାଲ ପିଲାମାନେ ଆଣିବା ଚାରା
ରୋପିଦେବା ଆମେ ପାହାଡ଼ସାରା
ଶାଳ ପିଆଶାଳ ଆମ୍ବପଣସ,
ତେନ୍ତୁଳି ରକୁଣ୍ଡା ପୁଣି ବାଉଁଶ
ପାଣିଦେଇ ଗଛ ଜଗିବା ଯେବେ,
ପାହାଡ଼ ହୋଇବ ଜଂଗଲ ତେବେ ।
ଶୁଆଶାରୀ ପୁଣି କଜଳପାତି,
କୁଆ କୋଇଲି ଯେ ମୟୂର ପକ୍ଷୀ
ଜଂଗଲରେ ବସା ବାନ୍ଧି ରହିବେ ।
ମନ ଆନନ୍ଦରେ ଗୀତ ଗାଇବେ, ଗୀତ ଗାଇବେ ।

ମାଙ୍କଡ଼, ଗୁଣ୍ଡୁଚି ପୁଣି ନେଉଳ,
ଠେକୁଆ ସଂଗତେ ହୋଇବେ ମେଳ
ଡେଉଥିବେ ଖାଲି ଡେଉଁଥିବେ ।

## folk mediumର ଉପଯୋଗ

*ଆଗରୁ କୁହାଯାଇଛି ଇନ୍ଦୁସାର୍ ଗୀତଗାଇ ପାରୁଥିଲେ, ନାଚି ପାରୁଥିଲେ ଓ ଅଭିନୟ କରିପାରୁଥିଲେ । ଓଡ଼ିଶାର ଲୋକଗୀତ ଏବଂ ଲୋକନାଚ ଉପରେ ତାଙ୍କର ଭଲ ପ୍ରବେଶ ଏବଂ ଦକ୍ଷତା ଥିଲା । ସେ folk medium ମାଧ୍ୟମରେ ଲୋକମାନଙ୍କୁ ଶିକ୍ଷାଦେବା, ଲୋକମାନଙ୍କ ମଧ୍ୟରୁ ଅନ୍ଧବିଶ୍ୱାସ ଦୂରକରିବା, ନିଜନିଜ ହକ୍‌ଦାବି ସମ୍ବନ୍ଧରେ ସଚେତନ କରାଇବା ଉଦ୍ଦେଶ୍ୟ ରଖି ଅନେକ ଗୀତ, ଗପ, ନାଟକ, ପ୍ରବନ୍ଧ ଲେଖିଥିଲେ । ସେ ସମ୍ବନ୍ଧରେ ସେ ନିଜେ କ'ଣ କହିଛନ୍ତି, ଜାଣିବା ତାଙ୍କର ସେ ପ୍ରକାର ବହିର ମୁଖବନ୍ଧରୁ -*

**ବହି ସଂପର୍କରେ**

"ଜନସାଧାରଣଙ୍କ ମଧ୍ୟରେ ସ୍ୱାସ୍ଥ୍ୟ ଓ ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧରେ ଗୋଟିଏ ବୈଜ୍ଞାନିକ ଦୃଷ୍ଟିକୋଣ ସୃଷ୍ଟିକରିବାପାଇଁ ଏ ପୁସ୍ତକଟି ଲିଖିତ ।

ପାନୀୟଜଳ, ମଳରୁ ବ୍ୟାପୁଥିବା ରୋଗ, ଗର୍ଭବତୀ ନାରୀ ଓ ଶିଶୁମାନଙ୍କର ଯତ୍ନ, ପୁଷ୍ଟିକର ଖାଦ୍ୟ, ପର୍ଯ୍ୟାବରଣର ସୁରକ୍ଷା, ଜନସଂଖ୍ୟା ବୃଦ୍ଧି ଦ୍ୱାରା ସୃଷ୍ଟି ହେଉଥିବା ବିପଦ ଆଦି ବିଷୟବସ୍ତୁ ଏ ପୁସ୍ତକରେ ସ୍ଥାନ ପାଇଛି ।

କଥାହେଲା, ସାଧାରଣ ଲୋକଙ୍କ ଭିତରେ ସ୍ୱାସ୍ଥ୍ୟଚେତନା ଜାଗ୍ରତ କରିବାପାଇଁ ଲେଖାର ଶୈଳୀକୁ ମନଛୁଆଁ କରିବାକୁ ଶବର ଶବରୀ ଗୀତ, ଦାସକାଠିଆ ଓ ସୁଆଙ୍ଗ ଆଦି ସରଳ ଓ ସହଜ ଢଙ୍ଗରେ ଲେଖାଯାଇଛି ।

ଆଶାକରେ ଏସବୁ ଦେଖି, ଶୁଣି ଓ ପଢ଼ି ଲୋକମାନେ ଆନନ୍ଦଲାଭ କରିବା ସଂଗେସଂଗେ ତାଙ୍କର ଦୈନନ୍ଦିନ ଚଳଣିରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟିତ ହେବେ ।"

ସେଇ ବହିରୁ ଦୁଇଟି ଉଦାହରଣ । ପ୍ରଥମଟି ଶବର ଶବରୀ ଗୀତ ଏବଂ ଦ୍ୱିତୀୟଟି ଦାସକାଠିଆ ।

**"ଶୁଣ ମୋର ହିତବାଣୀ"**
**(ଶବର ଶବରୀ ଗୀତ)**

ଶବର - କଳିଯୁଗ ଗଲା ସତ୍ୟ ପ୍ରବେଶିଲା, ଶୁଣ ଲୋ ଶବରୀ କଥା,
ଆଲୋ, ଶୁଣ ଲୋ ଶବରୀ କଥା,
ନୂଆନୂଆ କଥା ଘଟିଲା ଜଗତେ ଶବରୀ ଲୋ
ସତ୍ୟଯୁଗ ନୁହେଁ ମିଥ୍ୟା ।

ଶବରୀ - ନୂଆଯୁଗ ହେଲା କାଳ ବଦଳିଲା, ଦୁଃଖ ତ ନ ଗଲା ତିଳେ,
ଶବରରେ, ଦୁଃଖ ତ ନ ଗଲା ତିଳେ,
ଗାଁ ଗାଁ ଲୋକେ ସଢ଼ନ୍ତି ରୋଗରେ - ଶବରରେ,
ଖାଲି ଦୁଃଖ କପାଳରେ ।

ଶବର - ରୋଗ କଥା ଆଉ କହନା ଶବରୀ, ଏ ତ ନିଜ କରମର ଫଳ
ଶବରୀଲୋ, ନିଜ କରମର ଫଳ
ଗଡ଼ିଆ, ପୋଖରୀ ପାଣି ପିଇପିଇ - ଶବରୀ ଲୋ,
ଲୋକେ ହେଲେ ହୀନବଳ ।

ଶବରୀ - କାଳକାଳ ଧରି ପିଉଛନ୍ତି ଲୋକେ, ଗଡ଼ିଆ, ପୋଖରୀ ପାଣି
ଶବରରେ, ଗଡ଼ିଆ, ପୋଖରୀ ପାଣି
ନୂଆକରି ପଦେ କହିଦେଲୁ କଥା - ଶବରରେ
ମିଛଟାରେ ଜାଣିଜାଣି ।

ଶବର - ଆଲୋ, ପିଇବା ପାଣିରେ ରୋଗ ଛପିଅଛି, ସଭିଏଁ ଜାଣନ୍ତି ଏଥି,
ଶବରୀ ଲୋ, ସଭିଏଁ ଜାଣନ୍ତି ଏଥି
ଦାଣ୍ଡ, ବାଡ଼ି, ପୁଣି ପୋଖରୀହୁଡ଼ାରେ - ଶବରୀ ଲୋ
ସବୁଠି ଝାଡ଼ା ଫେରନ୍ତି ।

ଶବରୀ - ମଳରେ ବସନ୍ତି ମାଛିମାନେ ପୁଣି, ଖାଇବା ପତ୍ରେ ବସନ୍ତି
ଶବରରେ, ଖାଇବା ପତ୍ରେ ବସନ୍ତି
ରୋଗର ବିହନ ଆଣି ଯେ ମଳରୁ - ଶବରରେ
ଖାଦ୍ୟ ଦରବେ ଛାଡ଼ନ୍ତି ।

ଶବର - ଗୁଡ଼ିଆ ଦୋକାନ ଯାନିଯାତରାରେ, ମାଛି ଖାଲି ଭଣଭଣ
ଶବରୀ ଲୋ, ମାଛି ଖାଲି ଭଣଭଣ
ମିଠେଇ ଦୋକାନ ଖଜା ପସରାଟି - ଶବରୀ ଲୋ
ରୋଗର ଭଣ୍ଡାର ଜାଣ ।

ଶବରୀ - ଯେତେ କୃମିରୋଗ ଝାଡ଼ା ଆଉ ବାନ୍ତି, ମଳରୁ ହୁଅଇ ଜାତ
ଶବରରେ, ମଳରୁ ହୁଅଇ ଜାତ,
ପାଇଖାନା କର, ପିଅ କୂଅ ପାଣି - ଶବରରେ
ପରିଷ୍କାର ରଖ ହାତ ।

ଶବର - ଯେତେ ନରନାରୀ ଗାଈଗୋରୁଙ୍କର ପୋଖରୀ ଗାଧୁଆଘର
ଶବରୀଲୋ, ପୋଖରୀ ଗାଧୁଆ ଘର
ଦାନ୍ତଘଷା, ଲୁଗାସଫା, ହଗାମୂତା - ଶବରୀଲୋ
ସବୁ ପୋଖରୀ ଭିତର ।
ଶବରୀ - ବରଷାପାଣିରେ ପୁଣି ପବନରେ ଯେତେକ ମଇଳା ଭାସେ,
ଶବରରେ, ଯେତେକ ମଇଳା ଭାସେ,
ସବୁ ଗଡ଼ିଗଡ଼ି ଯାଏ ପୋଖରୀକୁ - ଶବରରେ
ପୋଖରୀ ପାଣିରେ ମିଶେ ।
ଶବର - ଗୁହ ପଡ଼ିଆଟା, ପୋଖରୀ କୂଳଟା ମାଇପିଙ୍କ କ୍ଲବ୍‌ଘର
ଶବରୀଲୋ, ମାଇପିଙ୍କ କ୍ଲବ୍‌ଘର
ଚୁଗୁଲି ବିଚର, ଯେତେ ହେଁ ହେଁ ଫେଁ ଫେଁ ଶବରୀଲୋ,
ସେଇଠାରୁ ଗଣ୍ଡଗୋଳ ।
ଶବରୀ - ତୁମ ପୁରୁଷ ଜାତିଟା ଭାରି ଭଲଲୋକ ବହୁକଥା ବଢ଼ିବଢ଼ି
ଶବରରେ, କୁହ କଥା ବଢ଼ିବଢ଼ି,
ଯିମିତି ମାଇପେ ସିମିତି ମଣିପେ ଶବରରେ
ପୋଖରୀରେ ଧାଡ଼ିଧାଡ଼ି ।
ଶବର - ଚଲଲୋ ଶବରୀ ଗାଁ ଗାଁ ବୁଲି କରିବା ପ୍ରଚର ଖାଲି
ଶବରୀ ଲୋ, କରିବା ପ୍ରଚର ଖାଲି
ପୋଖରୀତୁଠରୁ ମରଦ ମାଇପେ - ଶବରୀ ଲୋ
କୂଅମୂଳେ ଦବା ତଡ଼ି ।
ଶବର ଶବରୀ - ଶୁଣ ହେ ମାଇପେ, ଶୁଣ ହେ ମରଦେ, ନ ପିଅ ପୋଖରୀ ପାଣି
ଆଉ, ନ ପିଅ ପୋଖରୀ ପାଣି
ପଥମ ଲଗାଇ କୂଅପାଣି ପିଅ - ସହି ସଙ୍ଗାତେ
ଶୁଣ ମୋର ହିତବାଣୀ ।
ସରବେ ଲଗାଅ ଘରେଘରେ ଏବେ ବରପାଲି ପାଇଖାନା
ଆହେ, ବରପାଲି ପାଇଖାନା
ବାହାରକୁ ଯାଇ ଝାଡ଼ାଫେରି ବସି ଭାଇ ଭଉଣୀଏ
ମାନ ମହତ ସାରନା
ଆଉ ମନ ମହତ ସାରନା ।

# "ନୀରୋଗ ହୁଅନ୍ତୁ ସରବେ"
## (ଦାସକାଠିଆ)

ଦାସକାଠିଆ ଗାୟକ ଓ ପାଳିଆ କିଛି ସମୟ କାଠିପିଟିଲେ । ତା'ପରେ ପାଳିଆ କହିଲେ - ହଇକିଏ ଭାଇନା, ଆଜି କେଉଁ ବିଷୟରେ ଭାଷିବ ? ସେ ବିଷୟଟି ଆଗ କହିଦିଅ । ଗାୟକ କହିଲେ, 'ଆରେ ଓଲୁ, ଆଗେ ବନ୍ଦନା ସରୁ, ତାପରେ ଯେଉଁକଥା ।'

ପାଳିଆ - ତାହେଲେ ଆରମ୍ଭ କର ।

ଗାୟକ - କବି ଉପଇନ୍ଦ୍ର ପୁଣି କବି ସୂର୍ଯ୍ୟ ଜାଣ
ଏ ଅଧମ କରେ ତବ ଚରଣେ ପ୍ରଣାମ ।
ଆହେ ରାଧାନାଥ ପୁଣି ଶ୍ରୀ ମଧୁସୂଦନ
କରଇ ବିନତି ତୁମ୍ଭେ ହୁଅ ସୁପ୍ରସନ୍ନ ।
ଫକୀରମୋହନ ପୁଣି ଆହେ ଗଙ୍ଗାଧର
ଆମ୍ଭପ୍ରତି ଆଜି ବାରେ ଦୁହେଁ କୃପାକର ।
କୁନ୍ତଳା କୁମାରୀ ପୁଣି ହେ' ନନ୍ଦକିଶୋର
ଖଞ୍ଜିଖଞ୍ଜି ଦିଅ ପଦ ଏ ସଭା ମଧର ।
ବୈଷ୍ଣବ ପାଣି ଏବେ ଶୁଣ ମୋ ଗୁହାରି
ତବକୃପା ହେଲେ ଉଣା (ଆମେ) ଖାଇବୁଟି ଗାଳି ।

ପାଳିଆ - ଇୟେ ତ ହେଲା କବିଙ୍କ ବନ୍ଦନା, ହେଲେ ଦେବୀଙ୍କ ବନ୍ଦନା ନକଲେ ଆରମ୍ଭ କରିବା କେମିତି ହେ ?

ଗାୟକ - ଆଚ୍ଛା ତାହେଲେ ଦେବୀଙ୍କ ବନ୍ଦନା ବୋଲିବା ।
ଆଗୋ ବୀଣାପାଣି ମୋର କଣ୍ଠରେ ତୁ ବସ
ବତାଇ ଦିଅ ଯେ ମୁହିଁ ଗାଇବି ଟି କିସ ।
ଏ ସଭା ମଧ୍ୟରେ ତୁହି ନକର ନିରାଶ
ଗୀତକୁ ମୋହର ମାଗୋ କରାଅ ସରସ

ପାଳିଆ - ବୁଝିଲ ଭାଇନା, ଏବେ ଅସଲ ବିଷୟକୁ ଆସ ।

ଗାୟକ - ଦେଖ ମୁଁ ଆଉଥରେ ଦେବୀଙ୍କୁ ସ୍ମରଣ କରୁଛି । ସେ ଯେଉଁ ବିଷୟରେ କହିବେ, ଗାଇବି ।

(ଗାୟକ ଗୁଣୁଗୁଣୁ ହୋଇ ଗାଇବା)

"ଯା କୁନ୍ଦେନ୍ଦୁ ତୁଷାରହାର ଧବଳା ଯା ଶ୍ୱେତପଦ୍ମାସନା" (ଧ୍ୟାନ କରିବା ପରେ)

ବୁଝିଲୁରେ ପାଳିଆଭାଇ, ଦେବୀଙ୍କର ବାଣୀବିହାରରେ ମିଟିଂ ଥିବାରୁ ସେ ତରତରରେ ଚାଲିଗଲେ । ଦେବୀ କହିଲେ, "ଧନ୍ୱନ୍ତରୀଙ୍କୁ ସ୍ମରଣ କର । ଧନ୍ୱନ୍ତରୀ ହେଲେ ସ୍ୱର୍ଗପୁରୀର ହେଲ୍‌ଥ ଡିରେକ୍ଟର । ସେ ସବୁ ବତାଇ ଦେବେ ।" ଏବେ ତାଙ୍କୁ ଡାକିବା ।

ଆହେ ଧନ୍ୱନ୍ତରୀ ଆସ

ଛାଡ଼ି ବଇଦ ବେଶ - ଧରି ଡାକ୍ତର ବେଶ

ଆହେ ଧନ୍ୱନ୍ତରୀ ଆସ ।

ଭାରତ ଦେଶରେ, ସହରେ, ମଫସଲେ

ଲାଗିଅଛି ରୋଗ ଅନବରତ

ବରଷଯାକ, ସେ ଜୀବନଯାକ,

ଏ ଜାତିଟା କ'ଣ ପାଇବ ନାଶ -

ଆହେ ଧନ୍ୱନ୍ତରୀ ଆସ ।

ବଟୁଆକୁ ଛାଡ଼ି ଖଲକୁ ଫୋପାଡ଼ି ଛୁରୀକା ହସ୍ତରେ କର ପ୍ରବେଶ

ଗଳାରେ ଲମ୍ୱାଇ ଷ୍ଟେଥିସ୍କୋପ ପୁଣି କାନ୍ଧେ ବହି

ସେ ଯେ ମାଇକ୍ରୋସ୍କୋପ, ବେଇଗି ଆସ

ଆତୁରେ ଡାକଇ ଓଡ଼ିଶା ଦେଶ ଜମ୍ବୁଦ୍ୱୀପ ଏ ଯେ

ଭାରତବର୍ଷ - ଆହେ ଧନ୍ୱନ୍ତରୀ ଆସ ।

ପାଳିଆ - ହଇହେ ଭାଇନା, କ'ଣ ଇମିତି ବାଇଆଙ୍କ ପରି ଇୟାଡୁ ସିଆଡୁ ବୋଲୁଛ ହେ, ଅସଲ ଗୀତକୁ ଆସୁନ କାହିଁକି ?

ଗାୟକ ଅସଲ ଗୀତ ପରା ଆରମ୍ଭ କରିଦେଲି । ଆରେ ଓଲୁ ଏତିକି ବୁଝିକି ପାରୁନୁ ? ଯୁଗ ବଦଳିଲାଣି । ଏବେ ଆଉ କବିରାଜଙ୍କ ବଟୁଆ ଆଉ ଖଲଯୁଗ ନାହିଁ । ଏଇଥିପାଇଁ ମନେ ପକେଇଦେଲି । ଧନ୍ୱନ୍ତରୀ ମଳମୂତ୍ର ଦେଖିବା ଯନ୍ତ୍ର ଆଉ ପେଟ ମୁଣ୍ଡ କାଟିବା ଯନ୍ତ୍ରପାତି ନେଇ ଆସିବେ ବୁଲି ବୁଝିଲୁ ?

ଜୟ ରାମ ଜୟରାମ ଜୟ ରାମରାମ

ଜୟ ଗୋବିନ୍ଦ ଜୟ ଜୟ ନାରାୟଣ ।

ଜାଣୁକିରେ ପାଳିଆ ଭାଇ ଶରୀରଟି ତୋର

ଅଟଇ ଗୋଟିଏ ଘର ସକଳ ରୋଗର ।

ଜାଣିଥିଲେ କହିଦେବୁ ରୋଗର କାରଣ

ପୁଣି କିପରି ହେବ ରୋଗ ନିବାରଣ ।

ପାଳିଆ - ଆହେ ମୁଁ କ'ଣ ଜାଣିଛି । ତେବେ ଏତିକି ଜାଣିଛି, ଗୁଡ଼େଗୁଡ଼େ ଗିଳିଦେଲେ କେତେ ଲୋକଙ୍କୁ ଅଜୀର୍ଣ୍ଣ ଧରୁଛି । ଆଉ ଖାଇବାକୁ ନପାଇ ପୁଣି ଅନେକ ଲୋକ ରୋଗରେ ମରୁଛନ୍ତି, ଆଉ କ'ଣ ? ଏଇକଥା ତ ଆମେ ସମସ୍ତେ ଜାଣିଛୁ । ଆଉ ତୁମେ କ'ଣ ଜାଣିଛ ବୋଲି ଜାଣିବା ।

ଗାୟକ - ଜୟରାମ ଜୟରାମ ଜୟ ଜୟ ରାମ
ଜୟ ଗୋବିନ୍ଦ ରାମ ଜୟ ନାରାୟଣ
ଶୁଣ ହେ ସୁଜନେ ଏବେ ଦେଇ ମନ କର୍ଣ୍ଣ
ରୋଗର କାରଣ ଆମ୍ଭେ କରୁଛୁ ବର୍ଣ୍ଣନ ।
ମଳରୁ ହୁଅଇ ଜାତ ରୋଗମାନ ଯେତେ
ଲୋକଙ୍କୁ କହିଲେ ଯେତେ ନ ଯାନ୍ତି ପରତେ ।

ପାଳିଆ - ଏପରି ହସିବା କଥା ନ କହ ଭାଇନା
ହସିବେଟି ସଭାଜନେ ନ କରିବେ ଘେନା ।
ଫିଟାଇ କହ ତୁ ଏବେ ରୋଗର କାରଣ
ବିନ୍ଧିଲାଣି ମୁଣ୍ଡ ମୋର ଦିଅ ଅମୃତ ଅଞ୍ଜନ ।

ଗାୟକ - ଶୁଣ ତାହେଲେ -
ଧନ୍ୱନ୍ତରୀ ଏବେ ମୋର କାନରେ କହିଲେ
ଏ ଦେଶରେ ଯେତେ ରୋଗ ନାହିଁ ଅନ୍ୟଠାରେ ।
ଏଇଠାରେ ନରନାରୀ ପଦାକୁ ଯାଆନ୍ତି
ରାସ୍ତାଘାଟ ଘରିଆଡ଼ ମଇଳା କରନ୍ତି ।
ନଈପୋଖରୀ ପାଣିରେ ଶଉଚ ହୁଅନ୍ତି ।
ଗରା, ଢାଳ, ମାଠିଆରେ ସେ ପାଣି ଆଣନ୍ତି ।
ରନ୍ଧାବଢ଼ା ଦିଅଁପୂଜା ସବୁ ସେ କରନ୍ତି
ସେ ପାଣି ପିଅନ୍ତି ପୁଣି ବାସନ ମାଜନ୍ତି ।
ତହିଁରେ ସେ ରୋଗମାନ ରହିଥାଏ ଲୁଚି
କହ ଭାଇ ଏକଥା କି କାହାକୁ ଦିଶୁଚି ?
ଜୟରାମ ଜୟରାମ ଜୟ ଜୟ ରାମ
ଜୟ ଗୋବିନ୍ଦ ରାମ ଜୟ ନାରାୟଣ ।

ପାଳିଆ - ହଇହେ ଭାଇନା, ଆମେ ବୋପାଅଜା କାଳରୁ ପଦାକୁ ଯାଉଛୁ । ନଈପୋଖରୀର ପାଣି ପିଉଛୁ । ଆଉ ଆଜି ଗୋଟେ ନୂଆକଥା କହିଦେଇ, ବାହାଦୁରୀ ଦେଖେଇଲ ।

ଗାୟକ - ହଁରେ ପୁଅ । ପୋଖରୀରେ ମଣିଷ ଶୌଚହେଲେ, ଗାଈ ମଇଁଷି ଗାଧୋଇଲେ, ଅଳିଆ ଝାଟିଆ ତାଳପତ୍ର ପଡ଼ି ଗୋଟେ ପାଗ ହୋଇଗଲା ନା ? ସେଇ ପାଣିଟି ମିଠା ଲାଗିବନି ତ ଆଉ କ'ଣ ? ମାତ୍ର ଆଉ ସେକଥା ଚଳିବନି । ଶୁଣ କହୁଛି ।

ଧନ୍ୱନ୍ତରୀ ଗୋସାଇଁ ଯେ କହିଗଲେ ମୋତେ
ଶହେକେ ପଇଁଶ ରୋଗ ମଳରୁ ଯେ ବ୍ୟାପେ ।
କେମିତି ବ୍ୟାପୁଛି ରୋଗ ଅଛି ତା ସୁତର
ମନେରଖ ସଭାଜନେ ଅସଲ ମନ୍ତର ।
ମା ଖା ପା ପା ପା ବୋଲି ଯେ ପାଞ୍ଚଟି ଅକ୍ଷର
ଜପାମାଳି କର ସର୍ବେ କେବେହେଁ ନ ଭୁଲ ।

ପାଳିଆ - ହଇହେ ଭାଇନା, ଏ ମା ଖା ପା ପା ପା କ'ଣ ହେ ? କଣ ଯେ ସୂତ୍ର ମୁଁ କିଛି ବୁଝିପାରୁନି । ଟିକିଏ ଫିଟାଇ କରି କହିଲେ ସିନା ଲୋକେ ବୁଝିବେ ।

ଗାୟକ - ରୋଗ କେମିତି ବ୍ୟାପୁଛି ଏକଥା ଧନ୍ୱନ୍ତରୀ ଗୋସେଇଁ ଆମ ଦେଶର ଡାକ୍ତରମାନଙ୍କୁ କହିବାର ମୁଁ ଶୁଣିଛି । ଏବେ ସମସ୍ତେ ଶୁଣ । ମା' ବୋଇଲେ ମାଛି, ଖା ବୋଇଲେ ଖାଦ୍ୟ, ପା ବୋଇଲେ ପାଣି ବା ପିଇବା ଜିନିଷ, ପା ବୋଇଲେ ପାଦ, ଆଉ ଗୋଟିଏ ପା' ବୋଇଲେ ପାଣି, ମାନେ ହାତ । ଏଇମାନଙ୍କ ଦ୍ୱାରା ମଳରୁ ରୋଗ ବ୍ୟାପେ ।

ଜୟରାମ ଜୟରାମ ଜୟ ରାମ ରାମ
ଜୟ ଗୋବିନ୍ଦ ରାମ ଜୟ ନାରାୟଣ ।
ଶୁଣ ଶୁଣ ସଭାଜନେ ଦେଇ ମନକର୍ଣ୍ଣ
ମଳରୁ କିପରି ରୋଗ ହୁଏ ଉତପନ୍ନ ।
ପଛବାଟେ ଯେଉଁ ମଳ ଦେଲୁ ଆମେ ଛାଡ଼ି
ଏ ଦେହ କେମିତି ତାହା ଆସୁଅଛି ଗଳି ।
ଖାଇବା ପଦାର୍ଥେ କେତେ ପଡ଼େ ଧୂଳିମଳି
ନ ଜାଣିଲାପରି ଆମେ ଦେଉ ତାକୁ ଗିଳି ।

ଘରେ ବଜାରେ ଅବା ଗୁଡ଼ିଆ ଦୋକାନ
ଖାଇବା ଦରବେ ମାଛି ବସିଥାନ୍ତି ଜାଣ ।
ମାଛିମାନେ ଅଟନ୍ତି ଯେ ଯମଙ୍କର ଦୂତ
ମଳେ ବସି ଖାଦ୍ୟଦ୍ରବ୍ୟେ ବସିବା ଅଭ୍ୟାସ ।
ଏହିପରି ମାଛିମାନେ ବାଣ୍ଟୁଛନ୍ତି ମଳ
ସେହି ମଳ ଖାଇ ଆମେ ପଡୁଛୁ ବେମାର ।
ଏହିପରି ମାଛିମାନେ ବାଣ୍ଟୁଛନ୍ତି ରୋଗ
ଜାଣିଶୁଣି ଆମେ ସବୁ ରୋଗ କରୁ ଭୋଗ ।
ଜୟରାମ ଜୟରାମ......

ପାଳିଅ - ଭାଇନା, ଇୟେ ତ ଗଲା ମା ବୋଇଲେ ମାଛି । ଆଉ ଖା ବୋଇଲେ ଖାଦ୍ୟ କଥା । ଆଉ ପା ପା ପା କ'ଣ ?

ଗାୟକ - ଶୁଣରେ ପାଳିଆ ଭାଇ ଦେଇ ମନ ପ୍ରାଣ
ପା ବୋଇଲେ ପାଣି ସେ ଯେ ଜୀବନଟି ଜାଣ ।
ବାହାରକୁ ଯାଇ ପୁଣି ନଈ ପୋଖରୀରେ
ଶୌଚକରି ଗ୍ରାମବାସୀ ଫେରନ୍ତିଟି ଘରେ ।
ବରଷାରେ ଧୋଇହୋଇ ପବନରେ ଉଡ଼ି
କୂଅ ପୋଖରୀ ପାଣିରେ ମଳ ଯାଏ ପଡ଼ି ।
ସେହି ପାଣି ପିଇବାରୁ ଧରେ ଝାଡ଼ାବାନ୍ତି
ରୋଗେ ପଡ଼ି ବହୁ ଲୋକ ଯମପୁରେ ଯାଆନ୍ତି ।
ଜୟରାମ ଜୟରାମ.....

ପାଳିଆ - ହଇହେ ଭାଇନା, କେଡ଼େ ଅସଲ କଥାଟେ କହିଦେଲ ହେ । ହେଇଟି ମୋ ପିଲାଦିନେ ପୁରଷ୍ତମରେ ରଥାଯାତ୍ରାକୁ ଶହଶହ ଲୋକ ଗୁଣ୍ଡିଋବାଡ଼ି ବୋଇଲେ ହଇଜାରେ ମରି ଯାଉଥିଲେ ହେ । ହେଲେ ଏବେ ତ ଜଣେ ହେଲେ ହଇଜାରେ ମରିଯାଉ ନାହାଁନ୍ତି । ଗୁଣ୍ଡିଋଯାତ୍ରା ଅଛି, ହେଲେ ଝାଡ଼ାବାନ୍ତି ଆଉ ନାହିଁ ।

ଗାୟକ - କାହିଁକି ଏପରି ହେଲା, କହିଲୁ ଦେଖି ।

ପାଳିଆ - ଆହେ ତୁମେ କହିଲା ପରି, ଯେଉଁଦିନ ପୁଟାଏ ପାଣିକି ଜଗିଦେଲେ, ବୋଇଲେ ନଳପାଣି ଯୋଗାଇ ଦେଲେ, ମାଛିକୁ ଦମନ କରିବାକୁ ଔଷଧ ବିଞ୍ଚିଲେ, ଆଉ ଝାଡ଼ାବାନ୍ତି ରୋଗ ଆସିବ କୁଆଡୁ ? ହେଲେ ଆଉ ଗୋଟେ ପା କ'ଣ ହେ ଭାଇନା ?

ଗାୟକ  ଠିକ୍ କହିଲୁ ପୁଅ । ଇମିତି ସମସ୍ତେ ବୁଝିଗଲେ ହେଲା । ହଁ ଆଉ ପା ହେଲା ପାଣି, ମାନେ ହାତକୁ ପାଣି ବୋଲି କହନ୍ତି ।

ପାଳିଆ  ହଁ ସେଇଥିପାଇଁ ମହାପୁରୁଷଙ୍କୁ ଚକ୍ରପାଣି ମୁରଲିପାଣି ବୋଲି କହୁଛନ୍ତି । ହେଲା ବୁଝିଗଲି ଏବେ ।

ଗାୟକ -  ଏବେ ଆରମ୍ଭ କଲି

ଅଛି ଆମ ଦୁଇହାତ  ବାଁ ଆଉ ଡାହାଣ
ଡାହାଣ ଖୁଆଏ ଭାତ  ମାଛି ତଡ଼େ ବାମ ।
ଦୁଇ ହାତ ମିଳି କେତେ  କରନ୍ତିଟି କାମ
ଦଶଟି ଆଙ୍ଗୁଠିଙ୍କର  ନଥାଏ ବିଶ୍ରାମ ।
କରନ୍ତି ସେ କେତେ କାମ  ବିଲ ପଡ଼ିଆରେ
କରନ୍ତି ସେ କେତେ କାମ  ପୁଣି ଗୁହାଳରେ ।
ମା'ର କୋଳରେ ଅବା  ଘର ଅଗଣାରେ
ପିଲାଏ ଫେରିଲେ ଝାଡ଼ା  ମା' ସଫା କରେ ।
ଝାଡ଼ାବାନ୍ତି ରୋଗୀଟିଏ  ପଡ଼ିଥିଲେ ଘରେ
ସଫାକରି ଦେଉ ଆମେ  ନିଜର ହାତରେ ।
ମଇଳାଟି ଲାଗେ ହାତେ  (ପୁଣି) ନଖର ଭିତରେ
ଖାଇବା ଦରବ ଧରୁ  ପୁଣି ସେ ହାତରେ ।
ସେଇ ହାତେ ଖାଇ ପୁଣି  ଖୁଆଉ ପିଲାଙ୍କୁ
ଏହିପରି ରୋଗ ଡିଏଁ  ଜଣରୁ ଜଣଙ୍କୁ ।
ଜୟରାମ ଜୟରାମ.....

ପାଳିଆ -  ବୁଝିଗଲି, ମଇଳାହାତରେ ଖାଇଲେ ନହେଲେ, ଖାଇବା ଦରବ ଧରିଲେ, ଆଉଜଣଙ୍କୁ ଖାଇବାକୁ ଦେଲେ ରୋଗ ଡେଇଁବ । ହେଲେ ଭାଇନା ଆଉ ଗୋଟେ ପା ରହିଗଲା ସେଇଟା କଣ ହେ ।

ଗାୟକ -  ଆରେ ବୁଝିପାରିଲୁନି ଏଇଟା ହେଲା ପାଦ ।

ପାଳିଆ -  ପାଦ କ'ଣ କଲା ମୁଁ ତ ବୁଝିପାରୁନି ।

ଗାୟକ -  ଶୁଣ ତେବେ ।

ଶୁଣ ଶୁଣ ସଭାଜନେ  ଦେଇ ମନକର୍ଣ୍ଣ
ଅଙ୍କୁଶ କୃମିର କଥା  ଶୁଣ ବର୍ତ୍ତମାନ ।
ଗୁହ ପଡ଼ିଆକୁ ଯେହୁ  ଖାଲି ପାଦେ ଯାଇ
ଓଦା ବା ଶୁଖିଲା ମଳ  ନିଶ୍ଚୟ ମାଡ଼ଇ ।

ଅଙ୍କୁଶ କୃମି ଯଦି	ଥାଆନ୍ତି ମଳରେ
ଅଜାଣତେ ମାଡ଼ିଦେଲେ	ଲାଗନ୍ତି ପାଦରେ ।
ତଳିପାରେ ଲାଗି ପୁଣି	ଆଙ୍ଗୁଠି ସନ୍ଧିରେ
ପ୍ରବେଶ କରନ୍ତି ଆମ	ଶରୀର ମଧ୍ୟରେ ।
ଆମ ଶରୀରେ ବଢ଼ନ୍ତି	ଲକ୍ଷଲକ୍ଷ ହୋଇ
ବସାବାନ୍ଧି ରହିଯାନ୍ତି	ଆମ ରକ୍ତ ପିଇ ।
ଶରୀରଟି ଆମର ଯେ	ହୁଏ ରକ୍ତହୀନ
ନାନା ରୋଗ ମାଡ଼ିବସେ	ଆମେ ହଇରାଣ ।

ଗାୟକ - ବୁଝିଲୁ ପାଳିଆ ଭାଇ, ଏ ଅଙ୍କୁଶ କୃମି ପାଦବାଟେ ଯାଇ ଆମ ରକ୍ତ ଶୋଷି ନିଅନ୍ତି । ଆମେ ଦୁର୍ବଳ ହୋଇପଡୁ । ତା'ପରେ ଯେକୌଣସି ରୋଗ ଆମକୁ ମାଡ଼ିବସେ, ଆଉ କ'ଣ ।

ପାଳିଆ - ବଡ଼ ବିଷମ କଥାଟେ କହିଲ ହେ । ତା'ହେଲେ ଆମେ କ'ଣ କରିବା ଯେ ?

ଗାୟକ - ପଦାକୁ ଗଲେ ଚପଲ କି କଠଉ ମାଡ଼ିଯିବା । ତା'ହେଲେ ପାଦବାଟେ ଆଉ କୃମି ପଶିପାରିବ ନାହିଁ । ତମେ ଦି' ପ୍ରାଣୀ ପଦାକୁ ଯାଉଛଟି ?

ପାଳିଆ - ଆହେ, ତୁମଠାରୁ ଏତେ ପାଠଶିଖି ଆମେ ଆଉ ପଦାକୁ ଯିବୁଟି । ଯଦି ଯିବୁ ଚପଲ ମାଡ଼ିକରି ଯିବୁ ଆମ ପାଞ୍ଚପ୍ରାଣୀଙ୍କର ପାଞ୍ଚହଳ ଚପଲ ?

ଗାୟକ - ଜୟରାମ ଜୟରାମ....

ବସିଛନ୍ତି ଯେତେ ଲୋକ	ଏ ସଭା ମଧ୍ୟରେ
ଚାଲ ପରଖିବା ମଳ	ଡାକ୍ତର ପାଖରେ ।
ଅଧେ ଲୋକଙ୍କର ଥିବ	ଅଙ୍କୁଶ କୃମି
ତେଣୁ ଆମ ଦେଶ	ଲୋକ ଅଟନ୍ତି ଅକାମି ।

ପାଳିଆ - ଅଙ୍କୁଶ କୃମି କଥା ବୁଝିଗଲି । ଆଚ୍ଛା କହିଲ ଭାଇନା, ମାଛି, ହାତ ପାଣି, ଖାଦ୍ୟବାଟରେ ମଳତ ପେଟକୁ ଗଲା । ହେଲେ ଏଥିରୁ କି ରୋଗ ହେଲା, ଏକଥା ତ କହିଲା ନାହିଁ ।

`ଗାୟକ - ଆହେ ଧନ୍ୱନ୍ତରୀ ମୋର	କଣ୍ଠରେ ତୁ ବସ
ବତାଇ ଦିଅ ହେ ମୁହିଁ	କହିବିଟି କିସ ।
ଶୁଣ ଆଉ ମନେରଖ	ଆହେ ସଭାଜନେ
ରୋଗୀର ମଳରୁ କେଉଁ	ରୋଗ ସବୁ ଜନ୍ମେ ।

ପଶିଯାଏ ହୁକ୍‌ୱାର୍ମ ଖାଲିପାଦ ବାଟେ
ମାଛି, ଖାଦ୍ୟ, ହାତ, ପାଣି ବାଟେ କୃମି ଯେତେ ।
ଢିଆନାଡ଼ ଥିବ ଦେଖି କେଞ୍ଚୁଆ ତା ନାମ
ମଣିଷ ପେଟରେ ହୁଏ ଏହାର ଜନମ ।
କେଞ୍ଚୁଆର ଡିମ୍ବ ଯଦି ଥାଏଟି ମଳରେ
ଅନ୍ୟର ପେଟରେ ପଶେ ଖାଦ୍ୟ ଓ ଜଳରେ ।
ଅଣ୍ଡାମାନ ଫଟି ପେଟେ କେଞ୍ଚୁଆ ହୁଅନ୍ତି
ଆମ ଖାଦ୍ୟ ଖାଇ ସେ ଯେ ବଂଶ ବଢ଼ାନ୍ତି ।
ବେଶିକରି ପିଲାଙ୍କର ପେଟେ ହୁଏ ଜିଆ
ପେଟେ ଖାଇଯାଆନ୍ତି ଖାଦ୍ୟ ପିଲା ବେମାରିଆ ।
ଝଡ଼ାଫୁଙ୍କା ଭୋଗରାଗ ସବୁ ଗଲେ ସରି
ଡାକ୍ତର ପାଖରେ ଲୋକେ କରନ୍ତି ଗୁହାରି ।
ଡାକରୀ ଅଉଷଧ ପଲା ଖାଏ ଯେବେ
ଜିଆ ପୁଣି ତାର ଅଣ୍ଡା ପଡ଼ଇଟି ତେବେ ।
ପିଲା ଯଦି ମରିଯାଏ କହନ୍ତି ଗାଁରେ
ଡାହାଣୀ ଶୋଷିଣ ଦେଲା ଅତି କୋପଭରେ ।

ପାଳିଆ - ବୁଝିଲ ଭାଇନା, ମୋତେ ସତ ଟମକୁ ମିଛ, ଥରେ ମୋର ଗୋଟେ ନାତି, କ'ଣ କହିବି ପାଟିବାଟେ ଓ ନାଟବାଟେ ଖାଲି ଏଡ଼ିକିଟାମାନ ଜିଆ ହେ ପଟପାଟ, ଭଟଭାଟ ପାଞ୍ଚଟା କି ସାତଟା ଖସିପଡ଼ିଲେ । ଡାକ୍ତରଖାନା ଗଲାରୁ ଖାଲି ତ କାଟାକାଟା ଜିଆ ପଡ଼ିଲେ । ମାତ୍ର ପିଲାଟି ବଞ୍ଚିଗଲା ।

ଗାୟକ - ସେହିପରି ଜିଆଡ଼ିଆ ବୋଲି ଗୋଟିଏ ପ୍ରକାର କୃମି । ପେଟକୁ ଗଲେ ଗୁଡ଼େଗୁଡ଼େ ଝାଡ଼ାହୁଏ । ଲୋକ ଦୁର୍ବଳ ହେଇଯାଏ । ସେମିତି ଦଶିପୋକର ଅଣ୍ଡା ଯଦି ଆମ ପେଟକୁ ଗଲା, ପେଟରେ ଗୁଡ଼େ ଦଶିପୋକ ହୋଇ ଆମକୁ ଦୁର୍ବଳ କରିଦିଅନ୍ତି । ବୁଝିଲୁ ?

ପାଳିଆ - ଆଚ୍ଛା ଭାଇନା, ମଳରୁ ଆଉ କ'ଣ ସବୁ ରୋଗ ହୁଏ କହିଲ ?

ଗାୟକ - ହଇଜା କଥଟା ମୁହିଁ ଆଗରୁ କହିଛି
କଲେରା ଏହାର ନାମ ସଭିଏଁ ଜାଣନ୍ତି ।

ରୋଗୀର ମଳ ଓ ବାନ୍ତି — ଯାର ପେଟେ ଯାଏ
ଧରଇ କଲେରା ତାକୁ — ଜାଣ ଯେ ନିଶ୍ଚୟ ।
ଆମାଶୟ ଝାଡ଼ା ଯଦି — କାହାକୁ ଧରଇ
ବଡ଼ କଷ୍ଟପାଏ ସେହୁ — ଝାଡ଼ା ଯାଇ ଯାଇ ।
ନାଳରକ୍ତ ପଡ଼େ ଯେବେ — ହୁଅଇ ବିଷମ
ଏ ରୋଗୀର ମଳକୁ ଯେ — ଥିବ ସାବଧାନ ।
ଡାଇରିଆ ପୁଣି ଯେବେ — ଝାଡ଼ା ଯେ ତରଳ
କୁନିଛୁଆ ପାଇଁ ଏହା — ଅତି ଭୟଙ୍କର ।
ଟାଇଫଡ଼ ଜର ଯେବେ — କାହାକୁ ହୋଇବ
ତାର ଝାଡ଼ାବାନ୍ତି ପ୍ରତି — ସାବଧାନ ଥିବ
ସେହିପରି କାମଳ ଯେ — ରୋଗ ଭୟଙ୍କର
ଏ ଦୁଇ ରୋଗରୁ ମୁକ୍ତି — ବଡ଼ କଷ୍ଟକର ।
ଏଇ ରୋଗ ସବୁ ଯେତେ — ମଳରୁ ଯେ ଜାତ
ଆରୋଗ୍ୟ ହେବାକୁ ଲାଗେ — କାଳ ଯେ ବହୁତ
ବହୁତ ପଇସା ପୁଣି — ହୁଅଇ ଖରଚ ।

ପାଳିଆ - ଭାଇନା, ଏଇ ଯୋଉ ଟାଇଫଡ଼ ଜ୍ୱର ବୋଇଲେ ଆନ୍ତ୍ରିକଜ୍ୱର, ଆଉ କାମଳ ବୋଇଲେ ଜଣ୍ଡିସ ଭଲ ହେବା ତ କଷ୍ଟକର । ଆଉ ଟଙ୍କା ପଇସା କ'ଣ କମ୍ ଖର୍ଚ୍ଚ କିଏ ? ଭଲ ହୋଇଗଲେ ମଧ ମଣିଷ ମାସମାସ ଧରି ପରା ଦୁର୍ବଳ ହୋଇପଡ଼ିବ । ଜଣ୍ଡିସ୍ ହେଲେ ଲିଭର ବୋଇଲେ ପେଟର ଯକୃତ ଯନ୍ତ୍ରଟା ବିଲକୁଲ୍ କଣ୍ଡମ୍ । ଆଚ୍ଛା, ଭାଇନା ଆଉ ଗୋଟେ ରୋଗକଥା ଛାଡ଼ିଗଲା ପରି ଲାଗୁଛି, ଲିଷ୍ଟ ଦେଖିଲ ।

ଗାୟକ - (ଲିଷ୍ଟଦେଖି) ହଁରେ ଅସଲ ରୋଗଟା ତ ରହିଗଲା ବଡ଼ ଭୟଙ୍କର, ସାଂଘାତିକ । ସେଇଟା ହେଲା ପୋଲିଓ । ଦେଖୁନୁ କେତେ ଲୋକଙ୍କର ଗୋଟେ ଗୋଡ଼ ନହେଲେ ଦୁଇଗୋଡ଼ ସରୁସରୁ ନଳୀନଳୀ ହୋଇ ଯାଇଥାଏ । ସେମାନେ ଘୁଷୁରି ନହେଲେ ଆଶାବାଡ଼ି ଧରି ଚାଲନ୍ତି । ପିଲାଟି ବେଳରୁ ଏ ରୋଗ ଧରିପାରେ ।

ପାଳିଆ - କେମିତି ଏ ରୋଗ ତିଏଁ ହେ ।

ଗାୟକ - ପୋଲିଓ ରୋଗର ଆରମ୍ଭ ରୋଗୀର ମଳ, ଛେପ ଓ ଖଙ୍କାର କୋଉବାଟେ ହେଲେ ଆଉ ଗୋଟିଏ ପିଲାର ପେଟକୁ ଗଲେ ଏଇ ରୋଗ ହୋଇଥାଏ । ଶୁଣ କହୁଛି -

ପୋଲିଓ ରୋଗୀର ମଳ ଛେପ ଓ ଖଙ୍କାର
ଯାଏ ଯଦି କେଉଁବାଟେ ଅନ୍ୟର ପେଟର ।
ଅନ୍ୟକୁ ପୋଲିଓ ରୋଗ ହୋଇପାରେ ଜାଣ
ଭୟଙ୍କର ଏ ରୋଗକୁ ଥିବ ସାବଧାନ ।
ଛୁଆବେଳୁ ପିଲାଙ୍କୁ ଯେ ଖୋଇବ ଔଷଧ
ତାହେଲେ ପଛକୁ ଆଉ ନଥିବ ବିପଦ ।

ପାଳିଆ - ଭାଇନା ଅସଲ କଥାଟି ତ ଛାଡ଼ିଗଲ । ରୋଗୀର, ମଳ, ବାନ୍ତି, ଛେପ, ଖଙ୍କାର ଜଣଙ୍କ ପେଟକୁ ଗଲେ ରୋଗ ସିନା ଧରୁଛି, ହେଲେ ମୂଳୁ ମାରିଲେ ଯଦି ସରି କଥାଟି ତ କହିଲ ନି ।

(ରାଗ ରେଖୀ)

ଗାୟକ - କହୁଛି ମୁଁ ଶୁଣ ନରେ ମଳଠାରୁ ରହ ଦୂରେ
ପାଇଖାନା କରି ଘରେ ହୁଅ ନିରୋଗ
ବରପାଲି ପାଇଖାନା ଅଛଦାମେ ହେବ କିଣା
ମାଛି ନ ବସିବେ ମଳେ ଗନ୍ଧ ନୋହିବ
ଘରେଘରେ ଲଗାଅ ତାକୁ ଭୟ ନ ରହିବ ଆଉ
ଏତେ ରୋଗକୁ ।

ପାଳିଆ - ଅସଲ ମଞ୍ଜି କଥାଟେ କହିଦେଲ ହେ । ପାଇଖାନା କଲେ ମଳ ତ ରହିଲା ପାତାଳରେ । ମଳ ଆଉ ଖାଦ୍ୟ, ପାଣି ନା ହାତ, ପାଦ କୋଉ ବାଟେ ହେଲେ ପେଟକୁ ପଶିପାରିବ କେମିତି ? ହେଲେ ଭାଇନା, ଖାଲି କ'ଣ ବରପାଲି ପାଇଖାନା ହେଲେ ଚଳିବ । ଆଉ କୌଣସି ପାଇଖାନା କଲେ ହବନି ?

ଗାୟକ - ଖର୍ଚ୍ଚକୁ ଦେଖି ଆଉ ଘରେ କି ବାଡ଼ିରେ କେତେ ଜାଗା ଅଛି ତାକୁ ଦେଖି ଭିନ୍ନଭିନ୍ନ ପ୍ରକାର ପାଇଖାନା ହେବ । ଯାହାର ଯେମିତି ସୁବିଧା ସେ ସେମିତି କରିବ ଆଉ କ'ଣ ?

ପାଳିଆ - ଗୋଟେ କଥା ମନେପଡ଼ିଲା । ତୁମେ ଭରସା ଦେଲେ କହିବି ।

ଗାୟକ - ହଁ ଭରସା ଦେଲି । କ'ଣ କହୁଛ କୁହ, ସମସ୍ତେ ଶୁଣନ୍ତୁ ।

ପାଳିଆ - ନ ଧରିବ ମୋର ଦୋଷ କହିବାକୁ ଏବେ କଲି ସାହସ
ନ ଧରିବ ଦୋଷ,
ରାସ୍ତାଘାଟ ବନ୍ଦକରି ମଳତ୍ୟାଗ ଦୂଷିତ ନକର ଏ ପରିବେଶ

ଅପରିଷ୍କୃତ ଯେ ଦୁର୍ଗନ୍ଧଯୁକ୍ତ  ବ୍ୟାପିବ ଯେତେକ ବିଷମ ରୋଗ
ନ ଧରିବ ମୋର ଦୋଷ ।
ମଳ ପଡ଼ିଆଟା ମହିଳାମାନଙ୍କ  ଅଟଇ ଯେ କ୍ଲବ୍‌ଘର
ଯେହେ ହେଁ ହେଁ ଫେଁ ଫେଁ ଚୁଗୁଲି ବିଚାର  ସେଇଠାରୁ ସବୁ ଯେ ଗଣ୍ଡଗୋଳ
ନ ଧରିବ ମୋର ଦୋଷ କହିବାକୁ....
ଘରେ ଘରେ ଏବେ ଲଗାଅ ସରବେ  ନିଜପାଇଁ ପାଇଖାନା
ବାହାରକୁ ଯାଇ ଝାଡ଼ା ଫେରିବସି  କୁଳକୁଟୁମ୍ବ ମହତ ସାରନା
ମୋ ସାନ କଥାଟି ମାନ  ରଖ ଏ ଦେଶର ମାନ ସମ୍ମାନ
ନ ଧରିବ ମୋର ଦୋଷ... ।

ଗାୟକ - ବଢ଼ିଆ କଥାଟେ କହିଦେଲୁ । ବାହାରେ ରାସ୍ତାଘାଟରେ ବସିଲେ ମାନମହତ ପଦାରେ ପଡୁନି ଯେ ଆଉ କ'ଣ ?

ପାଳିଆ - ଆଉ ଗୋଟେ ଗୁରୁତର କଥା ସମସ୍ତଙ୍କୁ କହିଦେବା ଦରକାର । ତା'ହେଲେ ଲୋକେ ସାବଧାନ ହେବେ । ତୁମେ ଯେତେ ଏଇ କୁରୁମି ରୋଗ ଆଉ ଯେତେଯେତେ ରୋଗ କହିଲ, ସେସବୁ ଯଦି ଗର୍ଭବତୀ ଆଉ ଶିଶୁମାନଙ୍କୁ ଧରେ ତାହେଲେ ଗର୍ଭବତୀ ଆଉ ଶିଶୁମାନେ ରକ୍ତହୀନ ହୋଇଯାଆନ୍ତି । ନାଇଁ ଯଦି ଡାଇରିଆ, ଡିସେଣ୍ଟ୍ରି, ଟାଇଫଏଡ୍ କି ଜଣ୍ଡିସ୍ ଧଇଲା, ମା' ପିଲେ ଦିହେଁ କଣ୍ଡମ୍ । ମା'ର ଦିହ ଭଲ ନ ରହିଲେ ଛୁଆ ଜନମ ହେଲାବେଳକୁ ବଙ୍କା, ତେଡ଼ା ନ ହେଲେ ଓଜନ କିଲେ କି ଦେଢ଼କିଲୋ ମାତ୍ର । ହେଲେ ମାଇପେ ପଦାକୁ ନଗଲେ କ୍ଲବ୍‌ଘର କଥା କ'ଣ ହେବ ?

ଗାୟକ - ଯୁବକ ସଂଘ ପୁଣି  ମହିଳା ସମିତି
ଗଢ଼ିବେଟି ଗ୍ରାମବାସୀ  ହୋଇ ଏକମତି ।
ଭଲମନ୍ଦ ହାନିଲାଭ  ଗାଁଟି ଯାକର
ମହିଳାମାନେ ଯେ ବସି  କରିବେ ବିଚାର ।
ଗାଁକୁ ଗାଁ ଲୋକେ  ବିଚାର କରିବେ
ଗାଁଗଣ୍ଡା ଘରଦ୍ୱାର  ସଫା ଯେ ରଖିବେ ।
ଘରେଘରେ ପାଇଖାନା  ଯେବେ ଲାଗିଯିବ
ରାଇଜଯାକର ଲୋକେ  ହୋଇବେ ନିରୋଗ ।

ପାଳିଆ - ହଉ ଭାଇନା, ଏବେ ଆମକଥା ସରିଲା । ଏଥର ଯିବା ନା ଆଉ କ'ଣ କହିବାକୁ ଅଛି ?

ଗାୟକ - ଆରେ ବିଦାୟ ନେବା ଆଗରୁ ଆଉଥରେ ଲୋକଙ୍କୁ ଚେତେଇ ଦେବା ଭଲ ହେବ ବୋଲି ଭାବୁଛି । ରୋଗ ନ ହେବା ପାଇଁ ଆମେ କ'ଣ ନ କରିବା ମୁଁ କହୁଛି । କ'ଣ କଲେ ଏସବୁ ରୋଗ ନହବ ସେ କଥା ତୁ କହିବୁ । କଣ ବୁଝିଲୁ ତ । ଏବେ ଶୁଣ ।

ଗାୟକ - ବାହାରକୁ ଝାଡ଼ା ଫେରି କେବେ ହେଁ ନଯିବା କି

ପାଳିଆ - ଯଦି ଯିବା ଗୋଡ଼ରେ ଲଗାଇବା ଚଟିକି ।

ଗାୟକ - ପିଲାମାନେ ନ ଖେଳିବେ ମଇଳା ଜାଗାରେକି

ପାଳିଆ - ଯଦି ଖେଳିବେ ଖେଳନ୍ତୁ ଦାଣ୍ଡ ପଡ଼ିଆରେ କି ।

ଗାୟକ - ଖାଇବା ଦରବ ପାଶେ (ପିଲେ) ନ ବସିବେ ଝାଡ଼ା କି

ପାଳିଆ - ଯଦି ବସିଯିବେ ଝାଡ଼ା ମାଟି ଘୋଡ଼ାଇବା କି ।

ଗାୟକ - ମଇଳା ହାତରେ ନ ଖାଇବା ନଖୋଇବା କି

ପାଳିଆ - ସାବୁନ ବା ପାଉଁଶରେ ହାତ ସଫା କରିବା କି ।

ଗାୟକ - ନଈ ପୋଖରୀର ପାଣି କେବେ ନ ପିଇବ କି

ପାଳିଆ - ପିଇବାକୁ ପଡ଼େ ଯଦି ପାଣି ଫୁଟାଇ ଦେବାକି ।

ଗାୟକ - ଖୋଲା କୂଅ ପାଣି ଆମେ କେବେ ନ ପିଇବା କି

ପାଳିଆ - କୂଅରେ ଢାଙ୍କୁଣି ଦେଇ ପମ୍ପ ଲଗାଇବା କି
ସବୁଠାରୁ ଭଲ ହେବ ଟିଉବୱେଲ ପାଣି କି ।

ଗାୟକ - ମାଛିବସା ଦରବକୁ କେବେ ନ ଛୁଇଁବାକି

ପାଳିଆ - ଖାଇବା ପଦାର୍ଥ ଆମେ ଘୋଡ଼ାଇ ରଖିବାକି ।

ଗାୟକ - ଥଣ୍ଡା ହୋଇଥିବା ଖାଦ୍ୟ କେବେ ନ ଖାଇବାକି

ଗାୟକ - ଖାଦ୍ୟ କେବେ ନ ଖାଇବା ବଜାରେ ସହରେକି ।

ପାଳିଆ - ଖାଇବା ତଟକା ଖାଦ୍ୟ ଘୋଡ଼ିଆ ହୋଇଥିଲେ କି
ହଇହେ ଭାଇନା, କେତେ ଏମିତି ବୋଲୁଥିବ ହେ । ଏଥର ମେଲାଣି ମାଗିବା, ଯିବା ।

ଗାୟକ - ହଉ ତେବେ ବୋଲ ।
ଶୁଣ ଆହେ ସଭାଜନେ ହେଲାଣି ଉଛୁର
ଗାଁ ଗାଁ ଯିବୁ ଆମେ କରିବୁ ପ୍ରଚାର ।

ଘରେଘରେ ପାଇଖାନା ଯେବେ ଲାଗିଯିବ
ରାଇଜଯାକର ଲୋକେ ହୋଇବେ ନିରୋଗ ।
ହାତଗୋଡ଼ ମୁହଁ ପାଟି ରଖ ପରିଷ୍କାର
ଘରଦ୍ୱାର ଗାଁଗଣ୍ଡା ପୁଣି ଯେ ସହର ।
ରୁହନ୍ତୁ ଆପଣମାନେ ସୁସ୍ଥ ଓ ସବଳ
ଦିଅ ସର୍ବେ ହୁଳହୁଳି ଦିଅ ହରିବୋଲ ।

*ଇନ୍ଦୁସାରଙ୍କ ରଚନାବଳୀର ଯେଉଁ ତାଲିକା ପୂର୍ବରୁ ଦିଆଯାଇଛି, ସେଥିରୁ ଅଶୀ ପ୍ରତିଶତରୁ ଅଧିକ ବହି ଏବେ ଅମିଳକ । ଆମେ ଋହୁଁଛୁ ଇନ୍ଦୁସାରଙ୍କ ଲେଖାସବୁ ସଂଗ୍ରହକରି ତାଙ୍କର ଗୋଟିଏ ଗ୍ରନ୍ଥାବଳୀ ପ୍ରକାଶ କରିବାକୁ । ତେଣୁ ଆମ ପାଠକ ବନ୍ଧୁମାନଙ୍କୁ ଅନୁରୋଧ, ସେମାନେ ଯଦି କେହି ତାଙ୍କ ବହି ବା ବହିର ପାଣ୍ଡୁଲିପିର ସନ୍ଧାନ ପାଆନ୍ତି, ଆମକୁ ଜଣାଇବେ । ଇନ୍ଦୁସାରଙ୍କ ଲେଖା, ଦିଆଯାଇଥିବା ତାଲିକାଠାରୁ ବ୍ୟାପକ । ତାଲିକାଟି କେବଳ ଗୋଟିଏ ବଡ଼ ବରଫଖଣ୍ଡର ଅଗ୍ରଭାଗ ସଦୃଶ । ସେ ଅନେକ ଗୀତ, ନାଟକ, ପାଲା ଇତ୍ୟାଦି ଲେଖି ତାଙ୍କ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଷ୍ଟେଜ୍ କରାଇଛନ୍ତି । ଯାହାସବୁ କେବଳ ହାତଲେଖାରେ ରହିଯାଇଛି ।*



ମଣିଷ ଭଲ [illegible] ମଣିଷ ଏବଂ ଶିକ୍ଷକ ଭଲ ଶିକ୍ଷ[illegible] ଇନ୍ଦୁସାର୍ (ଇନ୍ଦୁଭୂଷଣ ମିଶ୍ର) । ଓଡ଼ିଶାରେ ଶିକ୍ଷାକୁ ତାଙ୍କ ଦାନଥିଲା ଅତୁଳନୀୟ । ସେ ଥିଲେ କେବଳ ଜଣେ ବ୍ୟକ୍ତି, ଯିଏ ଓଡ଼ିଶାର ଗାଁଗଣ୍ଡା ଆଦିବାସୀ ଅଞ୍ଚଳର ଶିକ୍ଷାକୁ ଠିକ୍‌ଭାବେ ବୁଝିଥିଲେ । ସେ ହିଁ ଏକମାତ୍ର ବ୍ୟକ୍ତି, ଯେ କି ଶିକ୍ଷାର ଉନ୍ନତିକଳ୍ପେ ସମର୍ପିତ ଥିଲେ । ସେ ଏକାଧାରରେ ଥିଲେ ଜଣେ ଭଲମଣିଷ, ଭଲ ଶିକ୍ଷକ, ସଫଳ ଶିକ୍ଷକ-ପ୍ରଶିକ୍ଷକ, ଶିକ୍ଷା-ପ୍ରଶାସକ ଏବଂ ସୁଲେଖକ । ସେ ମଧ୍ୟ ଥିଲେ ଜଣେ ସମାଜ ସଂସ୍କାରକ । ତାଙ୍କ ସଂସ୍କାରର ମୂଳ ଆୟୁଧ ଥିଲା, ଶିକ୍ଷା । ଅଳ୍ପ ଖର୍ଚ୍ଚରେ ପାଠ୍ୟସାମଗ୍ରୀ ଏବଂ ଶିକ୍ଷାପଦ୍ଧତି ପ୍ରସ୍ତୁତି କ୍ଷେତ୍ରରେ ତାଙ୍କର ବିଶେଷ ଅବଦାନ ଥିଲା । ତାଙ୍କୁ ଆଦର୍ଶ ହିସାବରେ ନେଇ ଓଡ଼ିଶାର ଶିକ୍ଷା ଉନ୍ନତି ପାଇଁ ସେ ଦେଇଥିବା ପ୍ର[illegible] ଅନୁସରଣ କଲେ ଆଜିର ଶିକ୍ଷାର ଅନେକ ସମସ୍ୟା ସମାଧାନ ହୋଇପାରିବ । ସେଇଥିପାଇଁ ଇନ୍ଦୁସାର୍‌ଙ୍କ ଆତ୍ମଜୀବନୀ ଏବଂ ଅନ୍ୟାନ୍ୟ ଆଲେଖ୍ୟ ବହିଟି ଆମ ସମସ୍ତଙ୍କର ପଢ଼ିବା ଦରକାର । ବିଶେଷ[illegible] ଶିକ୍ଷକ, ଶିକ୍ଷକ-ପ୍ରଶିକ୍ଷକ, ଶିକ୍ଷା-ପ୍ରଶାସକ ଏବଂ ଯେଉଁମାନେ ଗାଁଗଣ୍ଡା ଶିକ୍ଷା ସହ ସଂପୃକ୍ତ, ଏ ବହିଟି ପଢ଼ିବା ନିହାତି ଜରୁରି । ବହିଟିର ପ୍ରଥମ ଭାଗରେ ଅଛି ତାଙ୍କ ଆତ୍ମଜୀବନୀ, ଦ୍ୱିତୀୟଭାଗରେ ଅଛି ଅନ୍ୟମାନେ ତାଙ୍କ ସମ୍ବନ୍ଧରେ ଯାହା କହିଛନ୍ତି । ଏହି ଦୁଇଟିଭାଗ ପରସ୍ପର ପରିପୂରକ । ତୃତୀୟଭାଗରେ ଅଛି ଇନ୍ଦୁସାର୍‌ଙ୍କ ଜୀବନ ଓ ଶିକ୍ଷାଦର୍ଶନ, ମୁଖ୍ୟତଃ ତାଙ୍କ ନିଜଲେଖା ମାଧ୍ୟମରେ । ଶେଷଭାଗରେ ତାଙ୍କ ଲେଖାଲେଖି ସଂପର୍କ[illegible]

- ପ୍ରକାଶକ

ସ୍ୱର୍ଣ୍ଣଶ୍ରୀ ପ୍ରକାଶନୀ